# ସାହିତ୍ୟ
# ଓ
# ସମାଲୋଚନା

ଦ୍ୱିତୀୟ ଭାଗ




ଉତ୍କଳ ବିଶ୍ୱବିଦ୍ୟାଳୟ

# ସାହିତ୍ୟ ଓ ସମାଲୋଚନା

## ଦ୍ୱିତୀୟ ଭାଗ

ଲେଖକ—
ଜୟନ୍ତୀ, ବୈଜୟନ୍ତୀ, ମାଧୁରୀ ଓ ମାଧୁକରୀ ପ୍ରଭୃତିର କବି
ଏବଂ
ଅବସରପ୍ରାପ୍ତ କାବ୍ୟାଚାର୍ଯ୍ୟ
ଶ୍ରୀ ନାରାୟଣମୋହନ ଦେ, ଏମ୍. ଏ.

---

ଯୁଗ୍ମ ପ୍ରକାଶକ—
ଉତ୍କଳ ବିଶ୍ୱବିଦ୍ୟାଳୟ ଓ ଗ୍ରନ୍ଥକାର

ପ୍ରଥମ ସଂସ୍କରଣ



ମୂଲ୍ୟ ଟ ୨ (ଦୁଇଟଙ୍କା ମାତ୍ର)

# ସୂଚୀ





# ପରିଚୟ

ତିନିବର୍ଷ ତଳେ ଉତ୍କଳ ବିଶ୍ୱବିଦ୍ୟାଳୟର ତାତ୍କାଳିକ ସଦସ୍ୟ ରାୟବାହାଦୁର ଶ୍ରୀ ଅକ୍ଷିବଲ୍ଲଭ ମହାନ୍ତି ଏମ୍. ଏ. ମହୋଦୟଙ୍କ ଅନୁରୋଧ-କ୍ରମେ ମୁଁ ଯେଉଁ ତିନିଖଣ୍ଡି ସମାଲୋଚନାମୂଳକ ପ୍ରବନ୍ଧପୁସ୍ତକ ପ୍ରଣୟନ କରିଥିଲି, ଏହି ପୁସ୍ତକଟି ତାହାର ଅନ୍ୟତମ । ରାୟ ବାହାଦୁର ମହୋଦୟ ମୋର 'ବୈଜୟନ୍ତୀ' ନାମକ କାବ୍ୟପୁସ୍ତକଟି ପ୍ରକାଶିତ କରାଇ ପାଟଣା ବିଶ୍ୱବିଦ୍ୟାଳୟର ନିର୍ବାଚନମଣ୍ଡଳୀର ସଦସ୍ୟରୂପେ ଉକ୍ତ କାବ୍ୟଗ୍ରନ୍ଥଟିକୁ ଉକ୍ତ ବିଶ୍ୱବିଦ୍ୟାଳୟର ୧୯୪୦ ର ପାଠ୍ୟପୁସ୍ତକରୂପେ ଗ୍ରହଣ କରାଇବାକୁ ପ୍ରଭୂତ ଚେଷ୍ଟା କରିଥିଲେ, କିନ୍ତୁ ମୋର ଦୁର୍ଭାଗ୍ୟକୁ ସେ ବିଫଳମନୋରଥ ହେବାରୁ ପୁସ୍ତକଟି କୀଟଦଷ୍ଟ ଅବସ୍ଥା ବରଣ କରି କାଳହରଣ କରିବାକୁ ଲାଗିଲା । ପୁଣି ତତ୍ସତ୍ୟ ନିର୍ବାଚନମଣ୍ଡଳୀରେ ନ୍ୟାୟପରାୟଣତାର ବ୍ୟପଦେଶରେ ଯେଉଁ ଅହୈତୁକୀ କୃପାବାଦର ଅଭିନୟ ହେଲା, ତାହା ଯେ କୌଣସି ଲେଖକର ଲେଖନକଣ୍ଡୂ ପ୍ରଶ-ଅବ୍ୟର୍ଥ କଣ୍ଡୂଦାବାନଳ ପରି କାର୍ଯ୍ୟକାରୀ ହୁଅନ୍ତା । କିନ୍ତୁ ୧୯୪୪ ମସିହାର ଶେଷ ଆଡ଼କୁ ଉତ୍କଳ ବିଶ୍ୱବିଦ୍ୟାଳୟର ସୃଷ୍ଟି ସଙ୍ଗେ ସଙ୍ଗେ ମୋର କୀଟଦଷ୍ଟ ପୁସ୍ତକଟି ଉପରେ ନବୀନ ବିଶ୍ୱବିଦ୍ୟାଳୟର ଅଯାଚିତ କୃପାଦୃଷ୍ଟି ପଡ଼ିବାରୁ ଲେଖକଙ୍କ ଅବଲମ୍ବିତ ମସ୍ତକୋପରି ଅପ୍ରତ୍ୟାଶିତ ଆଶୀର୍ବାଦ ବୃଷ୍ଟି ହେବାକୁ ଲାଗିଲା । ପୁସ୍ତକଟି ପ୍ରଥମରେ ବି.ଏ. ଅନର୍ସ ଏବଂ ପରେ ଏମ୍.ଏ. ଶ୍ରେଣୀର ପାଠ୍ୟପୁସ୍ତକରୂପେ ଗୃହୀତ ହେଲା । ତଥାପି ତାହାର ଆଦିମ କୀଟଦଷ୍ଟ ଅବସ୍ଥାର କୌଣସି ପରିବର୍ତ୍ତନ ଲକ୍ଷିତ ହେଲା ନାହିଁ ।

ପୁଣି ଦଶବର୍ଷ ପରେ ରାୟବାହାଦୁରଙ୍କ ଉତ୍ସାହ ଓ ଉଦ୍ଯୋଗର ଫଳସ୍ୱରୂପ "ସାହିତ୍ୟ ଓ ସମାଲୋଚନା"ର ପ୍ରଥମଭାଗଟି ବିଶ୍ୱବିଦ୍ୟାଳୟର ପାଣ୍ଡୁଲିପି—ନିର୍ବାଚନମଣ୍ଡଳୀ, ବିଶେଷତଃ ତାତ୍କାଳିକ କୁଳପତି ଶ୍ରୀ ଶ୍ରୀ ଚିନ୍ତାମଣି ଆଚାର୍ଯ୍ୟ ରାୟବାହାଦୁର ମହୋଦୟଙ୍କ ଭୂୟସୀ ପ୍ରଶଂସା ଅର୍ଜନ କରିଥିଲା । କିନ୍ତୁ ତାହା ପୁଣି ବି.ଏ. ଅନର୍ସର

ପାଠ୍ୟପୁସ୍ତକରୂପେ ପ୍ରଭୂତ ପ୍ରତିଷ୍ଠା ଅର୍ଜନ କଲେହେଁ ସାଧାରଣ ପାଠକ ପାଠିକାସମାଜରେ ପୁସ୍ତକଟିର ବହୁଳ ପ୍ରଚାରର ପନ୍ଥା ସୁଗମ ହେଲା ନାହିଁ । ପୁଣି ସେହି କୀଟଦଷ୍ଟ ଅବସ୍ଥାର ଆଶଙ୍କା ଘନୀଭୂତ ହେଲା । ତେଣୁ ରାୟବାହାଦୁରଙ୍କ ପାଠ୍ୟପୁସ୍ତକ—ନିର୍ବାଚନମଣ୍ଡଳୀର ଏତାଦୃଶୀ ଗୁଣଗ୍ରାହିତାରେ ଋଣୀ ହେଲେ ।

ଲେଖକ ହିସାବରେ ମୋର କଥା ସ୍ୱତନ୍ତ୍ର । ଏଥର ମୁଁ ଗୋଟିଏ ବୈଜୟନ୍ତୀମାଳା ଗୁନ୍ଥି ଲକ୍ଷ୍ମୀ ଓ ସରସ୍ୱତୀ ଉଭୟଙ୍କ ଶୁଭଦୃଷ୍ଟି ଅର୍ଜନ କରି ପାରିବି ବୋଲି ଗୋଟିଏ ଦୁର୍ବାର ଲାଳସାର ବଶବର୍ତ୍ତୀ ହୋଇ ପଡ଼ିଥିଲି । ତେଣୁ ଗୋଟାଏ ହିରଣ୍ମୟ ସ୍ୱପ୍ନର ଜଡ଼ିମାରେ ପ୍ରାଣାନ୍ତ ଚେଷ୍ଟା କରି ଏବଂ ପରିଶେଷରେ ଖୁବ୍ ଶ୍ରାନ୍ତ ହୋଇ ଯତ୍‌କିଞ୍ଚିତ୍ ଅବୈଷ୍ଣବୋଚିତ ପ୍ରତିଷ୍ଠାଲାଭ କରି ତୁଷ୍ଟ ହେବାକୁ ବାଧ୍ୟ ହେଲି ; କିନ୍ତୁ ବିଶ୍ୱବିଦ୍ୟାଳୟ ମହୋଦୟ ପୁସ୍ତକଟିର ବହୁଳ ପ୍ରଚାରପ୍ରୟାସୀ ହୋଇ ନିଜ କୋଷରୁ କେତେଗୁଡ଼ିଏ ମୁଦ୍ରାର ଅପବ୍ୟୟ କରି ବ୍ୟର୍ଥମନୋରଥ ହେଲେ । ଏ ପୁସ୍ତକଟିର ମଧ୍ୟ କୀଟଦଷ୍ଟ ଅନ୍ତିମ ସତ୍କାରହିଁ ଅବଶ୍ୟମ୍ଭାବୀ ହୋଇ ପଡ଼ିଲା ।

"ଅସମ୍ଭବଂ ହେମମୃଗସ୍ୟ ଜନ୍ମ, ତଥାପି ରାମୋ ଲୁଲୁଭେ ମୃଗାୟ" ମୋର ମଧ୍ୟ ଲୋଭ ସମ୍ବରଣ ନ ହେବାରୁ ପୁଣି ଏହି ଦ୍ୱିତୀୟ ଖଣ୍ଡଟି ପୂର୍ବପରି ଆଶାୟୀ ମାନସରେ ନିର୍ବାଚନମଣ୍ଡଳୀ ସମକ୍ଷରେ ଉପସ୍ଥାପିତ କଲି । ମୋର ଦୃଢ଼ବିଶ୍ୱାସ, ମୋର ୧ମ ଓ ୨ୟ ଭାଗ "ସାହିତ୍ୟ ଓ ସମାଲୋଚନା" ସମାଲୋଚନା ସାହିତ୍ୟକ୍ଷେତ୍ରରେ ଅପ୍ରତିଦ୍ୱନ୍ଦ୍ୱୀ । ତେଣୁ ତାହା ବାଧ୍ୟତାମୂଳକ ପାଠ୍ୟପୁସ୍ତକରୂପେ ଶ୍ରେଣୀମାନଙ୍କରେ ଗୃହୀତ ହେଲେ, ଛାତ୍ରସମାଜରେ ସମାଲୋଚନା ପ୍ରବୃତ୍ତିର ସମ୍ୟକ ଉନ୍ମେଷ ସମ୍ଭବପର ହୁଅନ୍ତା । ଇତି ।

—ଲେଖକ

# ପରିଭାଷା

ବୈଧୀ ରାଗାନୁଗା ମାର୍ଗଭେଦେନ ପରିକୀର୍ତ୍ତିତଃ
ଦ୍ୱିବିଧଃ ଖଲୁ ଭାବୋଽତ୍ର ସାଧନାଭିନିବେଶଜଃ ।
(ଶ୍ରୀ ଭକ୍ତିରସାମୃତସିନ୍ଧୁ)

**ଅର୍ଥ**—ସାଧନାରୁ ଯେଉଁ ଭାବ ଜାତ ହୁଏ, ତାହା ମାର୍ଗଭେଦରେ ଦ୍ୱିବିଧ; ଯଥା :—ବୈଧୀ ଓ ରାଗାନୁଗା । ଏହି ଦୁଇ ଶ୍ରେଣୀର ଭକ୍ତ ଶ୍ରୀ ଭକ୍ତିରସାମୃତ ସିନ୍ଧୁ ଗ୍ରନ୍ଥର ପାଠକମାନଙ୍କୁ ଅଗୋଚର ନୁହେଁ । ଉକ୍ତ ପୁସ୍ତକରେ ବୈଧୀ ଭକ୍ତିର ବର୍ଣ୍ଣନା ଏହିପରି—

ଯତ୍ର ରାଗାନବାପ୍ତତ୍ୱାତ୍ ପ୍ରବୃତ୍ତିରୁପଜାୟତେ
ଶାସନେନୈବ ଶାସ୍ତ୍ରସ୍ୟ ସା ବୈଧୀ ଭକ୍ତିରୁଚ୍ୟତେ ।

ଯହିଁରେ ଅନୁରାଗ ଜାତ ହେବା ପୂର୍ବରୁ ଶାସ୍ତ୍ର-ଶାସନଦ୍ୱାରାହିଁ ପ୍ରବୃତ୍ତି (ଅର୍ଥାତ୍ ଭକ୍ତି) ଜାତ ହୁଏ, ତାହାହିଁ ବୈଧୀ ଭକ୍ତି । ବୈଧୀ ଭକ୍ତ ଶାସ୍ତ୍ରର ବିଧିବିଧାନର ଅନୁସରଣ କରେ ମାତ୍ର, କିନ୍ତୁ ରାଗାତ୍ମିକା ଭକ୍ତିର ସ୍ୱରୂପ ଭିନ୍ନ ; ଯଥା—

ଇଷ୍ଟେ ସ୍ୱାରସିକୀ (ସ୍ୱାଭାବିକୀ) ରାଗଃ ପରମାବିଷ୍ଟତା ଭବେତ୍
ତନ୍ମୟୀ ଯା ଭବେଦ୍ ଭକ୍ତିଃ ସାତ୍ର ରାଗାତ୍ମିକୋଦିତା ।

ଅର୍ଥାତ୍ ଇଷ୍ଟଦେବଙ୍କଠାରେ ସ୍ୱାଭାବିକୀ ପରମାବିଷ୍ଟତାକୁ ରାଗ (ଅନୁରାଗ) ବୋଲିଯାଏ । ଉକ୍ତ ଅନୁରାଗମୟୀ ଭକ୍ତିକୁ ରାଗାତ୍ମିକା ବା ରାଗାନୁଗା ଭକ୍ତି ବୋଲିଯାଏ ।

ଏହା ବିଧିବିଧାନର ସଙ୍କୀର୍ଣ୍ଣ ସୀମା ମଧ୍ୟରେ ଆବଦ୍ଧ ରହେ ନାହିଁ । ଏହା ଉଦ୍ଦାମତରଙ୍ଗା ସ୍ରୋତସ୍ୱିନୀ ପରି ଦୁଇକୂଳ ଲଙ୍ଘନ ପୂର୍ବକ ଅବାଧ ଗତିରେ ପ୍ରବାହିତ ହୋଇଥାଏ । ବୈଧୀ ଭକ୍ତ କିନ୍ତୁ ପ୍ରତି ପଦକ୍ଷେପରେ ଶାସ୍ତ୍ରର ଅନୁଶାସନକୁ ଅନୁସରଣ କରେ । ନାନା ବିଧି-

ବିଧାନର ଅନୁବର୍ତ୍ତିନ କରେ । ମହାଜନମାନଙ୍କ ପଦାଙ୍କ ଅନୁସରଣ କରି ସେମାନଙ୍କ ନିର୍ଦ୍ଦେଶିତ ପ୍ରଣାଳୀ ଓ ସେମାନଙ୍କର ଆଚରିତ କ୍ରିୟା-କଳାପର ମର୍ଯ୍ୟାଦା ଲଙ୍ଘନ କରିବାକୁ ସାହସୀ ହୁଏ ନାହିଁ । ରାଗାତ୍ମିକା ଭକ୍ତି ପ୍ରବଳ ବଳୁଣାର ଅନ୍ତଃଙ୍ଗର୍ଯ୍ୟାରୁ ଇଷ୍ଟପ୍ରାପ୍ତିଲାଳସାରେ ଆତ୍ମବିସ୍ମୃତ ଓ ଅଧୀର ହୋଇପଡ଼େ ।

ସେହିପରି କବି ଯଦି ଚିରଚରିତ ପନ୍ଥାର ଅନୁସରଣ କରି ଆବହମାନ କାଳରୁ ପ୍ରଚଳିତ ରୀତିଗତ ବିଧିବିଧାନକୁ ଶିରୋଧାର୍ଯ୍ୟ କରି ନିଜର କବିପ୍ରତିଭାସୁଲଭ କଳ୍ପନାବିଳାସରେ ମାତି କବିତା ପ୍ରଣୟନରେ ମନୋନିବେଶ କରନ୍ତି, ତାହାହେଲେ ସେ ବିଧିମାର୍ଗର କବି-ପଦବାଚ୍ୟ ହୁଅନ୍ତି ଏବଂ ଯଦି ସେ ବିଧିବିଧାନର ସଙ୍କୀର୍ଣ୍ଣ ଗଣ୍ଡୀ ମଧ୍ୟରେ ରହିବାକୁ କୁଣ୍ଠିତ ହୋଇ ଓ ଗତାନୁଗତିକତାର ମୋହରେ ନ ପଡ଼ି ନିରଙ୍କୁଶ କଳ୍ପନାବିଳାସକୁ ସୁଖକର ମନେ କରନ୍ତି, ତେବେ ତାହାଙ୍କୁ 'ରାଗମାର୍ଗର କବି ବୋଲିବାହିଁ ସମୀଚୀନ ।

ଶୁଭଚକ୍ଷୁର୍ମିଳନଜନିତ ଯୁବକଯୁବତୀଙ୍କ ଉର୍ବରହୃଦୟକ୍ଷେତ୍ରରେ ଯେଉଁ ପ୍ରେମାଙ୍କୁର ଜାତ ହୁଏ, ତାହା ପରିସ୍ଥିତିବିଶେଷରେ ଅନୁକୂଳ ବାତାବରଣ ପାଇଲେ ଗୋଟିଏ ବିଶାଳ ପ୍ରେମକଳ୍ପଲତାରେ ପରିଣତ ହୋଇ ଉଭୟଙ୍କ ହୃଦୟ ଉପରେ ଯୁଗପତ୍ ଏପରି ଏକାଧିପତ୍ୟ ବିସ୍ତାର କରି ବସେ, ଯାହାର ଦୁର୍ନିବାର ପ୍ରଭାବର ପୀଡ଼ନରୁ ସେ ଦୁହେଁ ରକ୍ଷଣ-ଶୀଳ ସମାଜର ପରମ୍ପରାଗତ କୌଳିକ ପ୍ରଥା ରୀତିନୀତିକୁ ପଦଦଳିତ କରି ଏବଂ ମାନବୋଚିତ ସଭ୍ୟତା, ଭବ୍ୟତା ଏବଂ ଆଭିଜାତ୍ୟାଭିମାନ ପ୍ରତି ବଳେ ହେଲେ ଭ୍ରୂକ୍ଷେପ ନ କରି ଅବାଧ ପ୍ରଣୟବନ୍ଧନରେ ଆବଦ୍ଧ ହୁଅନ୍ତି । ଏହାକୁ Romantic Love ବା ରାଗାନୁଗା ପ୍ରୀତି ବୋଲି-ଯାଏ । ଅପରନ୍ତୁ ସାଧାରଣ ନରନାରୀମାନଙ୍କ ବୈବାହିକ ବନ୍ଧନ ସମ୍ବନ୍ଧରେ ରକ୍ଷଣଶୀଳ ସମାଜସୁଲଭ ନାନାବିଧ ବିଧିବିଧାନର ବ୍ୟବସ୍ଥା ଅବହମାନ କାଳରୁ ଚାଲି ଆସୁଛି । ଏହି ଗତାନୁଗତିକତାର ସୀମାବଦ୍ଧ ଗଣ୍ଡୀ ମଧ୍ୟରେ ଥାଇ ଯେଉଁ ପ୍ରୀତିର ବୀଜ ବପନ ହୁଏ, ସେଥିରୁ ଯେଉଁ

ପ୍ରୀତିଲତାର ସମ୍ଭବ ହୁଏ, ତାହାକୁ ବୈଧୀ ପ୍ରୀତି କୋଲଯାଇଥାଏ । ପୁଣି ମହାଜନମାନଙ୍କ ପଦାଙ୍କ ଅନୁସରଣ କରି ସେମାନଙ୍କ ନିର୍ଦ୍ଦିଷ୍ଟ ପନ୍ଥାବଲମ୍ବନପୂର୍ବକ ପରମ୍ପରାଗତ ଶାସ୍ତ୍ରନିର୍ଦ୍ଦେଶ ଅନୁସାରେ ଯେଉଁ ନବବିଧା ଭକ୍ତିର ଯାଜନର ବ୍ୟବସ୍ଥା ଅଛି, ତାହାକୁ ବୈଧୀ ଭକ୍ତି କହନ୍ତି । ପୁଣି କିନ୍ତୁ ଯେଉଁମାନେ ହୃଦୟର ଉଦ୍‌କୂଳ ଆବେଗକୁ ସଂଯତ କରି ନ ପାରି ଇଷ୍ଟଦେବଙ୍କ ପ୍ରତି ପ୍ରଗାଢ଼ ଆକର୍ଷଣ ହେତୁ କୌଣସି ବିଧିବିଧାନ ବା ବାଧାବିଘ୍ନକୁ ଭ୍ରୂକ୍ଷେପ ନ କରି ଏକରକମ ଆତ୍ମବିସ୍ମୃତ ହୋଇ ଭଳି ତାଙ୍କ ପ୍ରତି ପ୍ରଗାଢ଼ ଲୌଲ୍ୟ ବା ଲାଳସାର ଅନୁବର୍ତ୍ତନ କରନ୍ତି, ତାହାକୁ ରାଗାନୁଗା ଭକ୍ତି ଆଖ୍ୟା ଦିଆଯାଏ । ସେହିପରି କବିତାର ଉପଜୀବ୍ୟ ବିଷୟ ନିର୍ବାଚନରେ ହେଉ ବା ବାକ୍ୟବିନ୍ୟାସ ବା ରଚନାଶୈଳୀରେ ହେଉ, କିମ୍ବା ସ୍ୱର ତାଳ ମାନ ଛନ୍ଦୋନିର୍ବାଚନରେ ହେଉ, କବି ଯଦି ପରମ୍ପରାଗତ ପ୍ରାଚୀନପନ୍ଥାସୁଲଭ ବିଧିବ୍ୟବସ୍ଥାକୁ ଶିରୋଧାର୍ଯ୍ୟ କରି ନିଜର ମୌଳିକ ପ୍ରତିଭା ଅକ୍ଷୁଣ୍ଣ ରଖି କାବ୍ୟୋଚିତ କଳ୍ପନାବିଳାସରେ ନିଯୁକ୍ତ ରହନ୍ତି, ତେବେ ତାଙ୍କୁ ବିଧିମାର୍ଗର କବି କହିବାହିଁ ସମୀଚୀନ (Classical poet); କିନ୍ତୁ ଯେଉଁ କବିମାନେ ବିଷୟ-ଶୈଳୀ-ଛନ୍ଦୋନିର୍ବାଚନରେ କୌଣସି ଗୋଟିକରେ ପୂର୍ବପରମ୍ପରା ପ୍ରତି ବୀତଶ୍ରଦ୍ଧ ହୋଇ ଗୋଟିଏ ନବୀନପନ୍ଥା ଉଦ୍‌ଘାଟନପୂର୍ବକ ନିଜର ସ୍ୱାତନ୍ତ୍ର୍ୟର ପରିଚୟ ଦିଅନ୍ତି, ତାଙ୍କୁ ରାଗମାର୍ଗର କବି କୋଲିବାହିଁ ସମୀଚୀନ ହେବ (Romantic Poet) । ପୁଣି ସେହିପରି mysticism ଏବଂ mystery ଏକ ଧାତୁରୁ ଉତ୍ପନ୍ନ; ସୁତରାଂ mystery ମାନେ ରହସ୍ୟ ହେବାରୁ mysticism କୁ ରହସ୍ୟବାଦ କହିବାହିଁ ଯୁକ୍ତିଯୁକ୍ତ ହେବ ।

---

# ପରିଭାଷା (୨)

ବିଶେଷ ଦ୍ରଷ୍ଟବ୍ୟ—ପ୍ରକାଶ ଥାଉ କି, ପୂର୍ବୋଲ୍ଲିଖିତ Classic ଶବ୍ଦଟି ତିନିଗୋଟି ବିଭିନ୍ନ ଅର୍ଥରେ ବ୍ୟବହୃତ ହୋଇଥାଏ । **ପ୍ରଥମତଃ** Classic ଶବ୍ଦର ଧାତୁଗତ ଅର୍ଥ ପ୍ରଥମ ଶ୍ରେଣୀର (of the 1st class) ରଚନା । ତେଣୁ **ସର୍ବୋତ୍କୃଷ୍ଟ ରଚନାକୁହିଁ** Classic ନାମରେ ଅଭିହିତ କରି ହୋଇଥାଏ । ତେଣୁ ପାଶ୍ଚାତ୍ୟ ଜଗତରେ ହୋମର୍ ଏବଂ ଭର୍ଜିଲ ପ୍ରଭୃତି କବିଙ୍କ ପ୍ରଣୀତ ଉଚ୍ଚ କୋଟିର ସାହିତ୍ୟକୁ Classic କହନ୍ତି ।

**ଦ୍ୱିତୀୟତଃ** ଟିକିଏ ବ୍ୟାପକ ଅର୍ଥରେ Classic ଶବ୍ଦକୁ ବ୍ୟବହାର କରି ଲୋକେ ଗ୍ରୀକ୍ ଓ ଲାଟିନ୍ ଭାଷାରେ ଲିଖିତ ଯେ **କୌଣସି ରଚନା** Classic ନାମରେ ଅଭିହିତ କରନ୍ତି । ତେଣୁ ଲାଟିନ୍ ଓ ଗ୍ରୀକ୍ ଭାଷାକୁ ତଥା ସଂସ୍କୃତ ଭାଷାକୁ ଭର୍ଣ୍ଣାକ୍ୟୁଲରଠାରୁ ପୃଥକ୍ କରି ଲୋକେ Classical ଭାଷା ବୋଲନ୍ତି ।

**ତୃତୀୟତଃ** ଇଂରାଜୀ ସାହିତ୍ୟରେ Classic ଶବ୍ଦଟି ଗୋଟିଏ ସୀମାବଦ୍ଧ ଅର୍ଥରେ ବ୍ୟବହୃତ ହୁଏ । ଇଂରାଜୀ ସାହିତ୍ୟଜଗତରେ ଉତ୍କୃଷ୍ଟତର କାବ୍ୟ-ସାହିତ୍ୟ ଥିଲେହେଁ ଅଷ୍ଟାଦଶ ଶତାବ୍ଦୀର ଡ୍ରାଇଡେନ୍-ପୋପ୍-ପ୍ରମୁଖ କବିମାନଙ୍କ କବିତାକୁହିଁ Classical Poetry ବୋଲି-ଯାଏ । ତାହାର ବିଶେଷ କାରଣ ଏହି ଯେ ସେମାନେ Aristotle ଙ୍କ (ଏରିଷ୍ଟଟଲ)ଙ୍କ କାବ୍ୟସଂଜ୍ଞା ଓ କାବ୍ୟକଳା ନିୟାମକ ନିର୍ଦ୍ଧାରଣ ଗୁଡ଼ିକ ବିସ୍ତାର ସହିତ ଅନୁଶୀଳନ କରିଛନ୍ତି ବୋଲି ଅଭିମାନ କରି ନିଜକୁ Classic ନାମରେ ଅଭିହିତ କରୁଥିଲେ; କିନ୍ତୁ ଦୁଃଖର ବିଷୟ, ସେମାନେ ଏରିଷ୍ଟଟଲ (Aristotle) ଙ୍କ ନିର୍ଦ୍ଦେଶ ଗୁଡ଼ିକର ସାର ମର୍ମ ଗ୍ରହଣ କରିବାକୁ ସମ୍ପୂର୍ଣ୍ଣ ଅକ୍ଷମ ହୋଇ ଲେଖନୀ ଚାଳନ କରିଥିଲେ ।

ତେଣୁ ସେମାନେ ସେମାନଙ୍କ କବିତାର ଉପଜୀବ୍ୟ ବିଷୟ (Plot), କାବ୍ୟମୟୀ ଭାଷାବିନ୍ୟାସ (Poetic diction) ଏବଂ ଛନ୍ଦୋ-ନିର୍ବାଚନରେ (in Versifcation) ବିପଥଗାମୀ ହୋଇ ଗୋଟିଏ ନୀରସ ଗଦ୍ୟମୟୀ ରଚନାଶୈଳୀର ଅବତାରଣା କରି ବସିଲେ । ସେମାନଙ୍କ ପଦାଙ୍କ ଅନୁସରଣକାରୀ କବି-ଜ୍ୟୋତିରିଙ୍ଗଣମାନେ ପୋପଙ୍କ ରଚନାଶୈଳୀକୁ ଆଦର୍ଶରୂପେ ଶିରୋଧାର୍ଯ୍ୟ କରି ବାଗ୍‌ଦେବୀଙ୍କ ଉପାସନାରେ ନିଯୁକ୍ତ ହେଲେ । ତେଣୁ ସେମାନଙ୍କ ରଚନାରେ କାବ୍ୟକଳାର ଗୌରବ ଖଣ୍ଡିତ ହୋଇ ପଡ଼ିଲା । ତଥାପି ଲୋକେ କାବ୍ୟକଳାବିବର୍ଜିତ ଏବଂ ଭାବୋତ୍କର୍ଷବିହୀନ ଅପକବିତାକୁ Classic ନାମରେ ଅଭିହିତ କରନ୍ତି ।

ଯେପରି ହନୁ ନ ଥିବାରୁ ନାସ୍ତ୍ୟର୍ଥ ପ୍ରୟୋଗରେ ବାନରକୁ ହନୁମାନ୍ ବୋଲାଯାଏ ଏବଂ ଯେପରି ସବୁ ଅମଙ୍ଗଳଶଂସୀ ବାରବିଶେଷକୁ ମଙ୍ଗଳବାର ବୋଲାଯାଇଥାଏ ଏବଂ ଯେପରି ଅବାଣୀଭୂଷଣ କୌଣସି କୌଣସି କୃତବିଦ୍ୟ ସନ୍ତାନକୁ 'ବାଣୀଭୂଷଣ' ଉପାଧିରେ ସମ୍ମାନିତ କରିବାର ନିଦର୍ଶନ ଅଛି ଏବଂ ଯେପରି ସାହିତ୍ୟିକ-ମନୀଷା-ବିବର୍ଜିତ ନରପୁଙ୍ଗବ-ମାନେ କାବ୍ୟକଳା-ରସ-ମାଧୁର୍ଯ୍ୟ ଆସ୍ୱାଦନରେ ପରାଙ୍ମୁଖ ହୋଇ ମଧ୍ୟ କାବ୍ୟକଳା-ନିଦାନଜ୍ଞ ସାହିତ୍ୟଚୂଡ଼ାମଣିରୂପରେ କାବ୍ୟବିଶାରଦ, କାବ୍ୟକଣ୍ଠ ଏବଂ କାବ୍ୟତୀର୍ଥ ପ୍ରଭୃତି ମହାମହୋପାଧ୍ୟାୟସୁଲଭ ଉପାଧି-ମାନଙ୍କରେ ବିମଣ୍ଡିତ ହୋଇ ଧରାକୁ ସରା ଜ୍ଞାନ କରନ୍ତି, ଅବିକଳ ସେହିପରି ଅଷ୍ଟାଦଶ ଶତାବ୍ଦୀର କାବ୍ୟକଳାରେ Classic କବିତାର କୌଣସି ସଦ୍‌ଗୁଣ ବା ଉତ୍କର୍ଷ ନ ଥିଲେହେଁ ଉକ୍ତ ଅପକବିତାହିଁ ଶ୍ୱେତଦ୍ୱୀପର ସାହିତ୍ୟରେ Classic କବିତା ନାମରେ ଅଭିହିତ ହୋଇ ଆସୁଅଛି । ଏତାଦୃଶୀ ଅପକବିତାରେ ପରମ୍ପରାଗତ ବିଧିବିଧାନର ମର୍ଯ୍ୟାଦା ସଂରକ୍ଷଣହିଁ ଏକମାତ୍ର ଆଦର୍ଶ । ଏହି ପରମ୍ପରାଗତ ବିଧି ବିଧାନଗୁଡ଼ିକ ପୁଣି ପୋପ ପ୍ରଭୃତି ବିପଥଗାମୀ କବି ତାଙ୍କ ଭ୍ରାନ୍ତଧାରଣା ଉପରେ ପ୍ରତିଷ୍ଠିତ ହୋଇଥିବାରୁ ସେମାନଙ୍କ ଅନୁସରଣକାରୀ ଉକ୍ତ

ସମ୍ପ୍ରଦାୟର କବିମାନେ ଗତାନୁଗତିକତାର ଅନ୍ଧକୂପରେ ପଡ଼ି କାବ୍ୟୋଚିତ କଳ୍ପନାବିଳାସକୁ ପ୍ରାୟ ଭୁଲି ଯାଇଥିଲେ । ତେଣୁ Wordsworth ଏବଂ Coleridge ଉକ୍ତ ବୈଧୀ କବିତାର ଅଧୋଗତି ଦର୍ଶନରେ କ୍ଷୁବ୍ଧ ହୋଇ ଗୋଟିଏ ରାଗାନୁଗା ଶୈଳୀର ଅବତାରଣା କଲେ । ଉକ୍ତ ରାଗାନୁଗା ଶୈଳୀ (Romantic Style) ପ୍ରବର୍ତ୍ତନ କରି ସେମାନେ ସେହି ବୈଧୀ କବିତାର ବିରୁଦ୍ଧରେ ଅଭିଯାନ ଚଳାଇଥିଲେ ; ତେଣୁ ବିଧିବିଧାନର ପ୍ରାଧାନ୍ୟ ଦୃଷ୍ଟିରୁ ଏହି ଅପକବିତାକୁ ବୈଧୀ କବିତା ବୋଲିବା ଉଚିତ ଏବଂ ବିଧିବିଧାନର ଶୃଙ୍ଖଳରୁ କାବ୍ୟକଳାକୁ ପୂର୍ଣ୍ଣରୂପେ ମୁକ୍ତ କରି ନିରଙ୍କୁଶ କଳ୍ପନାବିଳାସ ଏବଂ ସଳୀଳ-ସ୍ୱଚ୍ଛନ୍ଦ ବିହାରର ଅବତାରଣା କରି ଯେଉଁ ଅଭିନବ ଶୈଳୀର ପ୍ରବର୍ତ୍ତନ ହେଲା ତାହାକୁ ରାଗାନୁଗା (Romantic) ବୋଲିବାହିଁ ସମୀଚୀନ ।

ଅଷ୍ଟାଦଶ ଶତାବ୍ଦୀର ତଥାକଥିତ Classical କବିତା ନିରତିଶୟ ଗତାନୁଗତିକ ହୋଇ ପଡ଼ିଥିବାରୁ ତାହାକୁ ବୈଧୀ କବିତା ବୋଲିବା ଯୁକ୍ତିଯୁକ୍ତ ଏବଂ ତାହା ବିରୁଦ୍ଧରେ ଅଭିଯାନ ଚଳାଇ ଯେଉଁ ନବଶୈଳୀର ଅବତାରଣା କରାଗଲା, ତାହାର ସ୍ୱଚ୍ଛନ୍ଦ ବିହାର ଓ ନିରଙ୍କୁଶ କଳ୍ପନାବିଳାସ ଏବଂ ଭାବପ୍ରବଣତା ଦୃଷ୍ଟିରେ ତାହାକୁ ରାଗାନୁଗା ବୋଲିବାହିଁ ସମୀଚୀନ ।

ପୁଣି ୧ମ ଓ ୨ୟ ଅର୍ଥରେ ବ୍ୟବହୃତ ଖାଣ୍ଟି Classic କବିତାରେ ମଧ୍ୟ ବିଧିମାର୍ଗର ପ୍ରାଧାନ୍ୟ ପ୍ରଣିଧାନଯୋଗ୍ୟ । ସେଥିରେ କଳ୍ପନାବିଳାସ ପ୍ରତିଭାର ପରିପୃଷ୍ଟକ ହେଲେହେଁ ନିରଙ୍କୁଶ ଉଚ୍ଛୃଙ୍ଖଳତା ବା ଭାବପ୍ରବଣତାର ସୂଚନା ନାହିଁ । ତେଣୁ ରାଗାନୁଗା ଶୈଳୀର ପରିପୃଷ୍ଟକ ନିରଙ୍କୁଶ ଭାବପ୍ରବଣତା ସେଥିରେ ସଂଯମର ଶାସନକୁ ଶିରୋଧାର୍ଯ୍ୟ କରିଥାଏ । ତେଣୁ ସାଧାରଣ ଦୃଷ୍ଟିରେ ଉତ୍କୃଷ୍ଟ Classic କବିତାକୁ ବୈଧୀ କବିତା କହିଲେ ତାହାର ମର୍ଯ୍ୟାଦା ହାନି ହେବାର ଆଶଙ୍କା ଅତି ଅଳୀକ ବୋଲି ମନେ ହୁଏ । ଏପରି ବିଚାରର ବଶବର୍ତ୍ତୀ ହୋଇ Classicalକୁ ବୈଧୀ ଏବଂ Romantic କୁ ରାଗାନୁଗା ନାମରେ ଅଭିହିତ କଲି ।

---

# ପ୍ରାସଙ୍ଗିକା

ପାଶ୍ଚାତ୍ୟଖଣ୍ଡରେ ବିଶେଷତଃ ଶ୍ୱେତଦ୍ୱୀପର ବାଣୀପୀଠରେ ସ୍ୱଗାନୁଗା ଶୈଳୀ ( Romantic style ) ର ପ୍ରବନ୍ଧ ଲେଖକମାନେ ଗୋଟିଏ ଯୁଗାନ୍ତର ଆନୟନ କରିଅଛନ୍ତି । Charles Lamb ଏହି ସ୍ୱଗାନୁଗା ଶୈଳୀର ପ୍ରଥମ ପ୍ରବର୍ତ୍ତିକରୂପେ ଅଭିନନ୍ଦନ ସ୍ୱୀକାର କରିଅଛନ୍ତି । ତାହାଙ୍କ ପରେ ଉକ୍ତ ଶୈଳୀରେ Stevenson ଓ Chesteston ପ୍ରମୁଖ ଲବ୍ଧପ୍ରତିଷ୍ଠ ସାହିତ୍ୟିକମାନେ ଯେଉଁ ସବୁ ସନ୍ଦର୍ଭମାନ ରଚନା କରିଅଛନ୍ତି ସେଥିରେ କଳାସୌଷ୍ଠବର ପରିକାଷ୍ଠା ହିସି ଉପାଦେୟ ଓ ଉପଭୋଗ୍ୟ ହୋଇଅଛି । ସେମାନେ ଗତାନୁଗତିକତାର ମୋହରେ ନ ପଡ଼ି ଓ ଚିରାଚରିତ ପ୍ରଣାଳୀର ଯୁକ୍ତିପ୍ରାଚୁର୍ଯ୍ୟ ଏବଂ ବିଶ୍ଳେଷଣଗାମ୍ଭୀର୍ଯ୍ୟକୁ ଗୌଣ କରି ଗୋଟିଏ ଅଭିନବ ରସର ସୃଷ୍ଟି, ପୁଷ୍ଟି ଓ ପରିବେଷଣରେ କଳାନୁମୋଦିତ ପନ୍ଥାର ଅନୁସରଣ କରିଅଛନ୍ତି । ପ୍ରାଚୀନପନ୍ଥୀମାନେ ବିଧିମାର୍ଗ ସୁଲଭ ( Classical style ) ଗତାନୁଗତିକତାର ଆବର୍ତ୍ତରେ ପଡ଼ି ବକ୍ଷ୍ୟମାଣ ବିଷୟଟିକୁ ନାନା ଦୃଷ୍ଟିକୋଣରୁ ପର୍ଯ୍ୟବେକ୍ଷଣ ପୂର୍ବକ ଗବେଷଣାମୂଳକ ନାନା ଯୁକ୍ତିତର୍କର ପରିବେଷଣଦ୍ୱାରା ପ୍ରାସଙ୍ଗିକ ସର୍ବବିଧ ତଥ୍ୟାତଥ୍ୟର ସଙ୍କଳନ କରି ବସନ୍ତି । ଏପରି ଯୁକ୍ତିପ୍ରଧାନ ଆଲୋଚନାରେ ବକ୍ଷ୍ୟମାଣ ବିଷୟଟିର ନାନା ଜ୍ଞାତବ୍ୟ ଓ ପରୀକ୍ଷିତବ୍ୟ ସତ୍ୟ ଏବଂ ସତ୍ୟାସତ୍ୟର ସନ୍ଧାନ ମିଳେ । ତଦ୍ୱାରା ପାଠକର ବୋଧଭୂମି କ୍ରମଶଃ ଉର୍ବର ହେବାରୁ ତାହାର ସଙ୍କୀର୍ଣ୍ଣ ସୀମାବଦ୍ଧ ଦୃଷ୍ଟି ପ୍ରସାରଲାଭ କରି ଜ୍ଞାନାର୍ଜନକ୍ଷମ ହୁଏ । ଏହିପରି ପୁନଃ ପୁନଃ ଅନୁଶୀଳନ ଦ୍ୱାରା ପାଠକର ଚିତ୍ତ ଉତ୍ତରୋତ୍ତର ବିକାଶୋନ୍ମୁଖ ହୁଏ । ଏପରି ବିଶୁଦ୍ଧ ଜ୍ଞାନମୟ ସାହିତ୍ୟାନୁଶୀଳନରେ ପାଠକର ବୋଧଭୂମିର ଉର୍ବରତା ବିଧାନ ହେଲେହେଁ ତାହା କ୍ୱଚିତ୍ ତାହାର ହୃଦୟଭୂମିକୁ ସ୍ପର୍ଶ କରେ, ତେଣୁ ତାହାର ଆତ୍ମୋନ୍ନତି ବା ଆତ୍ମୋତ୍କର୍ଷରେ ବିଶେଷ ସହାୟତା କରେ ନାହିଁ । ଏହା ସମ୍ପୂର୍ଣ୍ଣ ହୃଦୟଙ୍ଗମ କରି ଉକ୍ତ ପ୍ରବନ୍ଧ ଲେଖକ-

ମାନେ ଶୁଷ୍କ ଜୀବନଚର୍ଚ୍ଚାକୁ କଳାନୁମୋଦିତ ପ୍ରକାଶଭଙ୍ଗୀରେ ସରସ, ମଧୁର ଓ ହୃଦୟସ୍ପର୍ଶୀ କରିବାର କଳାସୁଲଭ ପ୍ରଚେଷ୍ଟା କରିଅଛନ୍ତି ଏବଂ ସେମାନଙ୍କର ପ୍ରଚେଷ୍ଟା ପ୍ରକୃତ ସାଫଲ୍ୟମଣ୍ଡିତ ହୋଇଅଛି । ସେମାନେ କ୍ଷୁଦ୍ରାଦପି କ୍ଷୁଦ୍ର ଅତି ଅକିଞ୍ଚିତ୍କର ବିଷୟର ଅନ୍ତର୍ନିହିତ ମାଧୁର୍ଯ୍ୟ ଓ ସୌନ୍ଦର୍ଯ୍ୟର ରହସ୍ୟ ଉଦ୍‌ଘାଟନ କରି ସରସ ପ୍ରକାଶଭଙ୍ଗୀ ସାହାଯ୍ୟରେ ପାଠକର ହୃଦୟକୁ ଆନନ୍ଦରସରେ ଆପ୍ଲୁତ କରି ଦିଅନ୍ତି । ସୌନ୍ଦର୍ଯ୍ୟ-ସୃଷ୍ଟି ଓ ମାଧୁର୍ଯ୍ୟ-ସୃଷ୍ଟି ସଙ୍ଗେ ସଙ୍ଗେ ଆନନ୍ଦରସ ପରିବେଶନହିଁ ଏମାନଙ୍କର ଲକ୍ଷ୍ୟ ; ତେଣୁ ବକ୍ଷ୍ୟମାଣ ବିଷୟର ସାରବତ୍ତା ତାହାର ପ୍ରକାଶଭଙ୍ଗୀ ଉପରେହିଁ ସମ୍ପୂର୍ଣ୍ଣ ନିର୍ଭର କରେ । ଏହି ପ୍ରକାଶଭଙ୍ଗୀର ସମ୍ୟକ୍ ଅନୁଶୀଳନ ଉପରେହିଁ ରାଗାନୁଗା ଶୈଳୀର ପ୍ରାଣ-ପ୍ରତିଷ୍ଠା ।

ରାଗାନୁଗା ଶୈଳୀର ଲେଖକମାନେ (Romantic Writers) ଗୋଟାଏ ଅତି ଅକିଞ୍ଚିତ୍କର ନଗଣ୍ୟ ବିଷୟକୁ ଅବଲମ୍ବନ କରି ତାହାର ଅନ୍ତର୍ନିହିତ ରହସ୍ୟ ଉଦ୍‌ଘାଟନପୂର୍ବକ ତାହାକୁ ସଭ୍ୟ ଭବ୍ୟ-ପରିଚ୍ଛଦ ପରିଧାନ କରାଇ ଗୋଟାଏ ସୁଷମାମଣ୍ଡିତ ମନୋଜ୍ଞ ତଥ୍ୟରୂପରେ ଉପସ୍ଥାପିତ କରନ୍ତି, (elegant trifle) । ଏମାନେ ରୁକ୍ଷ ଚରିତ୍ରବୃତ୍ତର ଛଦ୍ମବେଶକୁ ଭେଦ କରି ତାହାର ନଗ୍ନମୂର୍ତ୍ତିକୁ ପ୍ରକଟ କରି ଦିଅନ୍ତି । ଚିରପ୍ରଚଳିତ ରୀତି ନୀତି, ଆଚାର ବ୍ୟବହାର, ସଂସ୍କାର, ଅର୍ଦ୍ଧସତ୍ୟ ବା ସତ୍ୟାଭାସକୁ ସିଂହାସନଚ୍ୟୁତ କରିବାରେ ବଦ୍ଧପରିକର ହୋଇ ଥାନ୍ତି । ହାସ୍ୟରସ ବା ବ୍ୟଙ୍ଗ କୌତୁକର ଅବଲମ୍ବନରେ ଗୁରୁ ଭାବଗର୍ଭିକ ବିଷୟକୁ ମଧ୍ୟ ଲଘୁସାହିତ୍ୟ ପରି ସହଜ ବୋଧଗମ୍ୟ ଏବଂ ପ୍ରାଣସ୍ପର୍ଶୀ କରିଦିଅନ୍ତି । କୌଣସି ଗୋଟିଏ ସାମାନ୍ୟ ବିଷୟ ସଙ୍ଗରେ ଖେଳି ଖେଳି ବ୍ୟଙ୍ଗ ବିନୋଦନର ବ୍ୟପଦେଶରେ ନୈତିକ, ସାମାଜିକ ରାଜନୈତିକ, ଆଧ୍ୟାତ୍ମିକ ପ୍ରଭୃତି ନାନାବିଧ ଗମ୍ଭୀର ତଥ୍ୟାବଳୀର ଅବତାର କରି ବସନ୍ତି । ପ୍ରାତରୁତ୍ଥାନ ଭଲ କି ମନ୍ଦ, ସ୍ୱାସ୍ଥ୍ୟକର କି ଅସ୍ୱାସ୍ଥ୍ୟକର ଏହି କୌତୂହଳର ଚରିତାର୍ଥ କରିବାକୁ ଯାଇ ଚେଷ୍ଟରଟନ୍ (Chesterton) ଇଂରେଜ ଜାତିର ଜାତୀୟ ଚରିତ୍ରର ଅଶେଷବିଧ

ଦୃଷ୍ଟି ପ୍ରତି ତୀବ୍ର କଟାକ୍ଷପାତ କରିଅଛନ୍ତି ଏବଂ ତାଙ୍କର ଏତାଦୃଶ କଟାକ୍ଷପାତ ଭାରି ଭାବଗର୍ଭକ ଓ ଉପଭୋଗ୍ୟ ହୋଇଅଛି । ସେହିପରି ପ୍ରତିଭାଶାଳୀ ସାହିତ୍ୟିକ Stevenson (ଷ୍ଟୀଭେନସନ୍) ଆଳସ୍ୟର ପକ୍ଷ ସମର୍ଥନ କରି ତାଙ୍କର ନିପୁଣ ଲେଖନୀଚାଳନ ଦ୍ୱାରା ଗୋଟିଏ ଅତି ସରସ ଓ ଉପାଦେୟ ବାକ୍ୟକଳାର ପରିବେଷନ କରିଅଛନ୍ତି । ସେଥିରେ ସେ ଯେଉଁ ପ୍ରତିଭାର ପରିଚୟ ଦେଇଅଛନ୍ତି, ତାହାର ପଟାନ୍ତର ଅନ୍ୟତ୍ର ଖୋଜିବା ପଣ୍ଡଶ୍ରମ ମାତ୍ର । ଏପରି ମୌଳିକ ଚିନ୍ତା ସଙ୍ଗେ ଏପରି ଅଭିବ୍ୟକ୍ତି ନୈପୁଣ୍ୟର ସୁଷ୍ଠୁ ସମାବେଶ ଅନ୍ୟତ୍ର ବିରଳ ଲକ୍ଷିତ ହୁଏ । ସେ ସ୍ୱଗାନୁଗା ଶୈଳୀର ଗୁଣେ ପଙ୍କପୁଷ୍ପୋଦ୍ଭବରୂପେ ଗଦ୍ୟକୁ ଭାରି ସୁନ୍ଦର ପଦ୍ୟମୟ କରିଦେଇ ଅଛନ୍ତି । ତାଙ୍କର ପ୍ରତ୍ୟେକ ପ୍ରବନ୍ଧରେ ବ୍ୟଙ୍ଗବିନୋଦନର ବ୍ୟପଦେଶରେ ମାଧୁର୍ଯ୍ୟ ଓ ଗାମ୍ଭୀର୍ଯ୍ୟର ଏକତ୍ର ସମାବେଶଦ୍ୱାରା ରସପରିବେଷଣ କିପରି ସହଜ ହୁଏ, ତାହାହିଁ ଲକ୍ଷ୍ୟ କରିବାର କଥା । ସେ ପରିଶ୍ରମଠାରୁ ଆଳସ୍ୟକୁ ଏବଂ କର୍ତ୍ତବ୍ୟବୋଧଠାରୁ ପ୍ରଫୁଲ୍ଲତାକୁ ଜୀବନଯାତ୍ରା ପକ୍ଷରେ ଭାରି ଶୁଭପ୍ରଦ ବୋଲି ପ୍ରମାଣିତ କରିଅଛନ୍ତି । ତାଙ୍କର ଯୁକ୍ତିତର୍କର ଅନ୍ତରାଳରେ ଯେଉଁ ସରସ ହୃଦୟବତ୍ତାର ପରିଚୟ ମିଳେ, ତାହା ତାହାଙ୍କର କଳାକୃତିକୁ ଭାରି ସୁଖପାଠ୍ୟ କରି ଦେଇଅଛି । ତାଙ୍କର ପ୍ରବନ୍ଧାବଳୀର (Verginibus Puerisque) ପ୍ରତ୍ୟେକ ପ୍ରବନ୍ଧକୁ ଗୋଟିଏ ଗୋଟିଏ ମନୋଜ୍ଞ ଗୀତିକାବ୍ୟ ଆଖ୍ୟା ଦେଲେ ମଧ୍ୟ ଦିଆଯାଇ ପାରେ । ଏହି ଶ୍ରେଣୀର ପ୍ରବନ୍ଧର ପ୍ରବର୍ତ୍ତନ ଆମ୍ଭମାନଙ୍କର ସାହିତ୍ୟଜଗତରେ ଏପର୍ଯ୍ୟନ୍ତ ହୋଇ ନାହିଁ । କେହି ଲେଖିଲେ ଦର୍ଶନଶାସ୍ତ୍ରସୁଲଭ ଯୁକ୍ତିତର୍କସମ୍ବଳିତ ପ୍ରବନ୍ଧମାଳା, କେହି ଲେଖିଲେ ରାଜନୀତିପ୍ରଣୋଦିତ ତଥ୍ୟାବଳୀ, କେହି ବା ଇତିହାସ-ଭୂଗୋଳ ବିଷୟକ ଗବେଷଣାମୂଳକ ସନ୍ଦର୍ଭମାନ, କେହି ବା ଜଡ଼ବିଜ୍ଞାନର ଦୁରୂହ ବିଷୟମାଳାରେ ଗ୍ରଥିତ ରଚନାବଳୀ, କେହି ବା ମନସ୍ତତ୍ତ୍ୱ, କେହି ବା ଭୂତତ୍ତ୍ୱ, କେହି ପୁଣି ଅଧ୍ୟାତ୍ମତତ୍ତ୍ୱକୁ ଆଶ୍ରୟ କରି ସାହିତ୍ୟ-ଚର୍ଚ୍ଚାର ଚେଷ୍ଟା କରିଅଛନ୍ତି । ସେଗୁଡ଼ିକ ଭାରି ଉତ୍କୃଷ୍ଟ ଧରଣର

ହେଲେହେଁ ସେମାନଙ୍କୁ ସତ୍‌ସାହିତ୍ୟର ଅଙ୍ଗୀଭୁତ କରିବା ପୂର୍ବରୁ ବିଚାର କରି ଦେଖିବା ଉଚିତ, ସେମାନଙ୍କ ଅଭିବ୍ୟକ୍ତିଭଙ୍ଗୀରେ ସାହିତ୍ୟସୁଲଭ କଳାନୁମୋଦିତ ରସପରିବେଶନର କୌଣସି ଚେଷ୍ଟା ହୋଇଅଛି କି ନା ଏବଂ ହୋଇଥିଲେ ସେଗୁଡ଼ିକ ସେ ଦିଗରେ କେତେଦୂର ସାଫଲ୍ୟମଣ୍ଡିତ ହୋଇଅଛି । ସାହିତ୍ୟ-ରସ-ସମ୍ପର୍କ-ବିବର୍ଜିତ କେବଳ ଶୁଷ୍କ ଜ୍ଞାନଚର୍ଚ୍ଚାକୁ ସାହିତ୍ୟର ଆଖ୍ୟା ଦେବା ସମୀଚୀନ ନୁହେ । କେବଳ ତଥ୍ୟାବଳୀ ସଙ୍କଳନରେ ସାହିତ୍ୟସୃଷ୍ଟି ଅସମ୍ଭବ । କେତେଗୁଡ଼ିଏ ଜ୍ଞାତବ୍ୟ ବିଷୟର ସମାବେଶକୁ ସାହିତ୍ୟ ବୋଲିବା ଉଚିତ ନୁହେଁ । ସାହିତ୍ୟର ପ୍ରକାଶଭଙ୍ଗୀ ସରସ ଓ କଳାନୁମୋଦିତ ନ ହେଲେ ତାହା ସାହିତ୍ୟ-ପଦବାଚ୍ୟ ହେବ କିପରି ?

ସୁତରାଂ ଆମ ଦେଶରେ ପ୍ରବନ୍ଧଲେଖକମାନଙ୍କୁ ଯୁଗାନୁଗ ଶୈଳୀର ଲେଖକ କହିବ କିପରି ? ଗୋପାଳଚନ୍ଦ୍ରଙ୍କ ଶୈଳୀ ମାର୍କିନ ଦେଶର ଯୁଗାନୁଗ ଶୈଳୀର ଦେଶୀୟ ସଂସ୍କରଣରୂପେ ପ୍ରତିଷ୍ଠାଲାଭ କରିଅଛି । ତାଙ୍କ ଲେଖାବଳୀ ଖୁବ୍ ସରସ ହେଲେହେଁ ସେ ବ୍ୟଙ୍ଗ-ରସର ପରିବେଶନରେ ମାତ୍ରା ଅତିକ୍ରମ କରି ସ୍ଥଳବିଶେଷରେ ଭାବଗାମ୍ଭୀର୍ଯ୍ୟକୁ ଖଣ୍ଡିତ କରି ପକାନ୍ତି ; ସୁତରାଂ ମାଧୁର୍ଯ୍ୟହାନି ଅବଶ୍ୟମ୍ଭାବୀ ହୋଇପଡ଼େ । ତଥାପି ସେ ଯୁଗାନୁଗ ଶୈଳୀର ପ୍ରଥମ ପଥପ୍ରଦର୍ଶକ ଅଟନ୍ତି । "ସାହିତ୍ୟ ସମାଚାର" କିନ୍ତୁ ଶ୍ୱେତ-ଦ୍ୱୀପର ଯୁଗାନୁଗ ଶୈଳୀର ଶୁଭ ସମାଚାର ବିତରଣପୂର୍ବକ ଉତ୍କଳ ସାହିତ୍ୟରେ ନବଯୁଗର କ୍ଷୀଣ ସୂଚନା ଦେଇଥିଲେହେଁ ଉକ୍ତ ଶୈଳୀର ଅନୁବର୍ତ୍ତନ ବ୍ୟାପକଭାବରେ ସାହିତ୍ୟକ୍ଷେତ୍ରରେ ପ୍ରସାରଲାଭ କରି ନାହିଁ । କ୍ଷେତ୍ର ଉର୍ବର ଥିଲେ ବିନା ବୀଜବପନରୁ ଆଶୁ ଅଙ୍କୁରୋଦ୍‌ଗମର ଆଶା କରାଯାଏ । ପୁଣି ବୀଜବପନର ଅନୁକୂଳ କ୍ଷେତ୍ର ପ୍ରସ୍ତୁତ କରିବାହିଁ ସୁସମାଲୋଚନାର ମୁଖ୍ୟ ଉଦ୍ଦେଶ୍ୟ । ଏ କଥା ଆମ ଦେଶର ପଲ୍ଲବଗ୍ରାହୀ ପଣ୍ଡିତଂମନ୍ୟ ସାହିତ୍ୟରଥୀମାନଙ୍କୁ ଜଣା ନାହିଁ ; ତେଣୁ ଏ ଦେଶରେ ସମାଲୋଚନାର ମାନେ ଛିଦ୍ରାନ୍ୱେଷଣପଟୁତା

ବା ବୋଧପ୍ରଦର୍ଶନର ପ୍ରଗଲ୍‌ଭତା । ସମାଲୋଚନାରେ ସୌନ୍ଦର୍ଯ୍ୟବୋଧ ନାହିଁ କି ରସବୋଧ ନାହିଁ; ରସ ପରିବେଶନ ତ ବହୁ ଦୂରର କଥା । ଜଣେ ପ୍ରବୀଣ ସାହିତ୍ୟରଥୀଙ୍କ ମତରେ ସମାଲୋଚନା ତର୍କୈକନିଷ୍ଠ ନ ହେଲେ ସୁନ୍ଦର ହୋଇ ନ ପାରେ । କାବ୍ୟକଳା ସଙ୍ଗରେ ତର୍କ ବା ଯୁକ୍ତିର କି ଘନିଷ୍ଠ ସମ୍ବନ୍ଧ ଅଛି ଯେ କାବ୍ୟକଳାର ରସାସ୍ୱାଦନ ପାଇଁ ସମାଲୋଚକଙ୍କୁ ତର୍କୈକନିଷ୍ଠ ହେବାକୁ ପଡ଼ିବ ? ଯୁକ୍ତି ବା ତର୍କର ସାହାଯ୍ୟରେ କିପରି ବା ସେ କାବ୍ୟର ଅନ୍ତର୍ଗତ ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟକୁ ନିଜେ ଆସ୍ୱାଦନ କରି ପାଠକଙ୍କୁ ଆସ୍ୱାଦନ କରାଇ ପାରିବେ; ମୁଁ ମୋର ସ୍ଥୂଳବୁଦ୍ଧିରେ ଧାରଣା କରି ପାରୁ ନାହିଁ । କବିତା ଯଦି ସୌନ୍ଦର୍ଯ୍ୟସୃଷ୍ଟି ହୋଇଥାଏ, କାବ୍ୟକଳା ଯଦି ରସପରିବେଷଣର ପ୍ରଚେଷ୍ଟା ହୋଇଥାଏ, ସମାଲୋଚକ ତର୍କନିଷ୍ଠ ହୋଇ କିପରି ସେହି ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟର ସମ୍ବାଦ ବର୍ଦ୍ଧନ କରି ପାରିବେ ଏହା ବୁଝିବା ଦୁଷ୍କର । ତାଳ ବା ଖର୍ଜୁରବୃକ୍ଷରେ ମଧୁର ରସର ସନ୍ଧାନ ପାଇ ଶିଅଳ ସାମାନ୍ୟ ଅସ୍ତ୍ରପ୍ରୟୋଗ ଦ୍ୱାରା ରସ-ନିର୍ଝରଣର ଅନୁକୂଳ ଗୋଟିଏ ମୁଖ ବା ପ୍ରଣାଳୀ କରିଦିଏ । ଉକ୍ତ ପ୍ରଣାଳୀକୁ ଆଶ୍ରୟ କରି ବୃକ୍ଷସ୍ଥିତ ରସ ନିଃସୃତ ହୁଏ । କାବ୍ୟକଲ୍ପତରୁ ପ୍ରତି ସମାଲୋଚକର କର୍ତ୍ତବ୍ୟ ଅନେକଟା ତଦ୍ରୂପ । ସେ କାବ୍ୟକଲ୍ପତରୁର ଅନ୍ତର୍ନିହିତ ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟ-ନିଷ୍ୟନ୍ଦନର ପଥ ଉନ୍ମୁକ୍ତ କରି ତୃଷିତ ସାହିତ୍ୟପିପାସୁଙ୍କ ଶୁଷ୍କକଣ୍ଠରେ କାବ୍ୟାମୃତ-ରସାବଳୀର ମଧୁରରସ ସିଞ୍ଚନ କରେ । କେଉଁ ଯୁକ୍ତିବଳରେ ବା କେଉଁ ତର୍କର ସାହାଯ୍ୟରେ ଅମୃତ ରସାବଳୀର ମାଧୁର୍ଯ୍ୟ ଲୋକଙ୍କୁ ହୃଦୟଙ୍ଗମ କରାଇ ହେବ ? ଏହା କଣ ଯୁକ୍ତିତର୍କର ବିଷୟ ନା ରସପରିବେଶନର ବା ରସାସ୍ୱାଦନର ବିଷୟ ? ଏପରି ରସବୋଧହୀନ ସମାଲୋଚନାର ବହୁଳ ପ୍ରଚାରହିଁ ସୁକାବ୍ୟକଳାର ଗଙ୍ଗାମବୁଡ଼ର ସୂଚନା ଦିଏ ସିନା ।

ସମାଲୋଚନାର ପ୍ରକୃତ ସ୍ୱରୂପ ଆମ୍ଭମାନଙ୍କ ଦେଶରେ ଅଜ୍ଞାତ ବା ଅବଜ୍ଞାତ ଥିବାରୁ ସମାଲୋଚନା-ବିଭ୍ରାଟର ସୂତ୍ରପାତ ହୋଇଅଛି ଏବଂ ଏବଂବିଧ ରାଗାନୁଗା ଶୈଳୀର ପ୍ରବନ୍ଧ ରଚନା ସମ୍ଭବପର ହୋଇ ନାହିଁ ।

ଟିକିଏ ଧୀରସ୍ଥିରଚିତ୍ତରେ ବିଚାର କଲେ ଭାରତବର୍ଷର ସାହିତ୍ୟ-କ୍ଷେତ୍ରରେ ବିଶେଷତଃ ଅସ୍ମମାନଙ୍କ ଉତ୍କଳ-ସାହିତ୍ୟପୀଠରେ ଅନେକ କିଛିର ଅଭାବ ପରିଦୃଷ୍ଟ ହୋଇ ପଡ଼ିବ । ପ୍ରଥମତଃ ରାମାୟଣ, ମହାଭାରତ ପ୍ରଭୃତି ପ୍ରାଚୀନ ପଦ୍ଧତିର ମହାକାବ୍ୟକୁ ଛାଡ଼ିଦେଲେ ମଧ୍ୟ ମିଲ୍ଟନଙ୍କ ପେରେଡାଇସ୍ ଲଷ୍ଟ (Paradise Lost) ଏବଂ ଦାନ୍ତେଙ୍କ (Divine Comedia) ଏମନ୍ତ କି ମାଇକେଲଙ୍କ ମେଘନାଦବଧ ପରି ଅପେକ୍ଷାକୃତ ଆଧୁନିକ ଧରଣର ମହାକାବ୍ୟ ଉତ୍କଳର ବାଣୀକୁଞ୍ଜରେ ନାହିଁ ; ଆଲେକ୍‌ଜାଣ୍ଡ୍ରାର ଡୁମା (Alexander Dumas) ଏବଂ ଭିକ୍ଟର ହ୍ୟୁଗୋ, ଟଲଷ୍ଟୟ ପ୍ରଭୃତି ବିଶ୍ୱବିଖ୍ୟାତ ଔପନ୍ୟାସିକ ଚୂଡ଼ାମଣିଙ୍କ ପରି ଔପନ୍ୟାସିକ ଆମ ଦେଶରେ ନାହାନ୍ତି ; ଟଲଷ୍ଟୟ, ମୋପାଁସା (Maupassant) ପ୍ରଭୃତି କ୍ଷୁଦ୍ରଗଳ୍ପ ଲେଖକମାନଙ୍କ ପରି ସିଦ୍ଧହସ୍ତ ନିପୁଣ ବିଜ୍ଞାନୀ ଆମ ଦେଶରେ ନାହାନ୍ତି । ତେବେ ଫକୀରମୋହନ ଏ ଦିଗରେ ଗୋଟିଏ ବରେଣ୍ୟ ପନ୍ଥାର ଅନୁସରଣ କରି ଯାହା ଯାହା କରିଗଲେ, ତାହାଙ୍କ ପଦାଙ୍କ ଅନୁବର୍ତ୍ତିନ କରି କେହ ଉକ୍ତ ଶୈଳୀର ଅନୁଶୀଳନ କରି ପାରିଲେ କି ? ଏବଂ ଗୀତିକାବ୍ୟରେ ବିଶ୍ୱକବି ରବୀନ୍ଦ୍ରନାଥ ଯେଉଁ ସମ୍ମାନ ଲାଭ କଲେ, ତାହାର ପଟାନ୍ତର ଉତ୍କଳ ସାହିତ୍ୟରେ ଲୋଡ଼ିବା ବିଡ଼ମ୍ବନା ମାତ୍ର । ନାଟକ ବା ଦୃଶ୍ୟକାବ୍ୟ ରଚନାରେ ସେକ୍‌ସପିଅର ଓ କାଳିଦାସ ତ ଅନନୁକରଣୀୟ ଆଦର୍ଶ । ଏମନ୍ତ କି ଗିରୀଶ ଘୋଷଙ୍କ "ପ୍ରଫୁଲ୍ଲ" ଏବଂ "ସିରାଜଉଦ୍ଦୌଲ୍ଲା" ପ୍ରଭୃତିରେ ଯେଉଁ ପ୍ରତିଭାର ପରିଚୟ ମିଳେ ଏବଂ ଦ୍ୱିଜେନ୍ଦ୍ରଲାଲଙ୍କ ଶାହାଜାହାନ ପ୍ରଭୃତିରେ ଯେଉଁ କଳାକୌଶଳର ସୂଚନା ମିଳେ, ଉତ୍କଳ ବାଣୀ-କୁଞ୍ଜର କେତେଜଣ କଳକଣ୍ଠକୋକିଳଙ୍କ କଳକାକଳୀରେ ତାହାର ପ୍ରତିଧ୍ୱନି ଶୁଣିବାକୁ ମିଳେ ? ଆମ ଦେଶରେ କ୍ଷୁଦ୍ର ଗଳ୍ପ, ଉପନ୍ୟାସ ଏବଂ ଦୃଶ୍ୟକାବ୍ୟ ରଚନାରେ ଲେଖକମାନଙ୍କର ଲେଖନୀର ବିଶ୍ରାମ ନାହିଁ । ହାଁ ଅନ୍ନ, ଭାତ, ତରକାରୀ ଠାରୁ ଆରମ୍ଭ କରି ଜୟଦେବ ଓ ଜଗନ୍ନାଥଙ୍କ ମହାପ୍ରସାଦ ପର୍ଯ୍ୟନ୍ତ ସେବା କରି ଜନତା ଆଜି ସରଗରମ ।

ଏଗୁଡ଼ିକରୁ କେତେଖଣ୍ଡ ବିଶ୍ୱ ସାହିତ୍ୟ ପ୍ରତିଯୋଗିତାରେ ସ୍ଥାନ ପାଇ ପାରିବେ, ଏହାହିଁ ଭାବି ଦେଖିବାର କଥା । ସାମୟିକ ଉନ୍ମାଦନା ବା ରାଜନୈତିକ ଉତ୍ତେଜନା ଉପରେ ପ୍ରତିଷ୍ଠିତ ସାହିତ୍ୟର ପ୍ରଭାବ ଯେ କ୍ଷଣସ୍ଥାୟୀ, ତାହା ନ ଜାଣେ କିଏ ? ସତ୍ୟର ଶାଶ୍ୱତ, ସନାତନ ସାର୍ବଭୌମ ଭୂମିକା ଉପରେ କେତେଖଣ୍ଡ ଉପନ୍ୟାସ, ଗଳ୍ପ ବା ଦୃଶ୍ୟକାବ୍ୟ ରଚିତ ହୋଇ ଆମ ଦେଶର ବାଣୀକୁଞ୍ଜକୁ ଅବିନଶ୍ୱର ଗୀତିଗନ୍ଧମୟ କରୁଛି, କେହି କହି ପାରିବେ କି ?

ଆମ୍ଭମାନଙ୍କର ଆଧୁନିକ ସାହିତ୍ୟର ଏପରି ଶୋଚନୀୟ ଦୁର୍ଦ୍ଦଶା ସତ୍ତ୍ୱେ, ଆଧୁନିକ ଯୁଗର ଉଦୀୟମାନ ସାହିତ୍ୟିକମାନଙ୍କ ଭାଗ୍ୟବିଧାତାରୂପୀ ସାହିତ୍ୟବିଶାରଦମାନେ ସେଦିନ ମୁକ୍ତକଣ୍ଠରେ କହିବସିଲେ, "ଆମ୍ଭମାନଙ୍କର ପ୍ରଭୂତ ସାହିତ୍ୟଚର୍ଚ୍ଚା ହେଉଛି, ଏମନ୍ତ କି କାବ୍ୟାମୃତରସର ସେବନାତିଶଯ୍ୟରୁ ମା ସାରଳାଙ୍କୁ ଉଦରାମୟର ଲକ୍ଷଣ ଦେଖା ଦେଉଛି ; ତେଣୁ ସାହିତ୍ୟାନୁଶୀଳନ ବିଶେଷତଃ କାବ୍ୟଚର୍ଚ୍ଚାରୁ ବିଶ୍ରାମଲାଭ କରିବାହିଁ ଯୁଗୋଚିତ ଧର୍ମ ହେବ ବରଂ ବିଶ୍ୱବିଦ୍ୟାଳୟୋପଯୋଗୀ ପାଠ୍ୟପୁସ୍ତକର ଅଭାବ ଦୃଷ୍ଟିରେ ନବଦ୍ୱାର ରୁଦ୍ଧ କରି ପରାବିଦ୍ୟା, ଅପରାବିଦ୍ୟା, ପଦାର୍ଥବିଦ୍ୟା, ଅପଦାର୍ଥବିଦ୍ୟା, ମନୋରଞ୍ଜନ, ବନରଞ୍ଜନ, ହୃଦୟକର୍ଣ୍ଣରସାୟନ ରସାୟନବିଦ୍ୟା ପ୍ରଭୃତି ଦଶ ମହାବିଦ୍ୟାର ଅନୁଶୀଳନହିଁ ଏକାନ୍ତ ବାଞ୍ଛନୀୟ । ତେଣୁ କାବ୍ୟ ସାହିତ୍ୟ ପ୍ରଭୃତି କଳାବିଦ୍ୟାର ଆଲୋଚନା କାଳୋଚିତ ଯୋଜନାର ଅନୁକୂଳ ନୁହେ । ସୁତରାଂ ପାଠ୍ୟପୁସ୍ତକ ପ୍ରଣୟିତାମାନଙ୍କ ଉପରେ ଅଜସ୍ର କୃପାବୃଷ୍ଟି ସତ୍ତ୍ୱେ ଅପାଠ୍ୟପୁସ୍ତକ ରଚୟିତା କବି ସାହିତ୍ୟିକମାନଙ୍କ ଭାଗ୍ୟରୁ ଖଣ୍ଡପାଳକର ମଧ୍ୟ ଅଭାବ । ଅପାଳକ ଦେଶରେ ଆକସ୍ମିକ ବିଦ୍ୟୁତ୍‌ଚମକ ପରି କେହି କେହି ଭାଗ୍ୟବାନ୍ ସେହି ଲୁଣ୍ଠାକୁଣ୍ଠି ବଦାନ୍ୟତା ଲାଭ କରି ନିଜକୁ ଧନ୍ୟ ମଣୁଥିବାର ଶୁଣାଯାଏ । ତାହା କିନ୍ତୁ ନିପାତନସିଦ୍ଧ ଏବଂ ସାଧାରଣ ନିୟମର ବ୍ୟତିକ୍ରମ ମାତ୍ର । ପ୍ରକାଶ ଥାଉ କି, କବିପ୍ରତିଭା ଈଶ୍ୱରଦତ୍ତ—ସ୍ୱୋପାର୍ଜିତ ନୁହେଁ; ଏହା ଔପାଧିକୀ—ଆଗନ୍ତୁକୀ ନୁହେଁ

ତେଣୁ ଯେ ବିମୂଢ଼ ଦୁର୍ଭାଗ୍ୟବଶତଃ କବିପ୍ରତିଭା-ରୂପ ଅନୁଜ୍ଞାପତ୍ର (Permit) ଯେନ ଅନୁକୂଳ ଭାବ ବାହାର ପଡ଼ୁଛି, ସେ କଅଣ ପୁଣି ତାଙ୍କର ଅନୁଜ୍ଞାପତ୍ରଟି (Permit) ବଦଳାଇବାକୁ ଫେରିଯିବ ? କାରଣ ସେ ତ ଆଉ ଲଳିତ କଳାକର୍ଷଣରୁ ଛାଡ଼ି ଯୁଗୋଚିତ ଲଳିତା ବୃତ୍ତିର ଲାଳିତ୍ୟରେ ଭୁଲି ପାରିବ ନାହିଁ କିମ୍ବା ଘଣ୍ଟାଟୋପଟି ବଦଳାଇ ଅନ୍ୟ କୌଣସି ଭୂମିକାରେ ଅନ୍ୱେଷଣ କରି ଅଭିନୟ କରି ପାରିବ ନାହିଁ । ତାହାର ଦୁର୍ଲ୍ଲଭ କବିଜନ୍ମ ଏକାବେଳକେ ମାଟି ହୋଇଯିବ । ସତ୍ତ୍ୱାନୁଭୂତି-ସୁଧାସିଞ୍ଚନର ଅଭାବରୁ ବିଶେଷତଃ ଉତ୍ସାହରୂପ ସାରପ୍ରୟୋଗର ସ୍ୱଳ୍ପତାନିବନ୍ଧନ ଶଂସିତ କବିପ୍ରତିଭାର ଗଳାମରୁଡ଼ି ଅବଶ୍ୟମ୍ଭାବୀ । ତାହାହେଲେ କବି-ସାହିତ୍ୟିକମାନଙ୍କର ବାହୁଲ୍ୟ ତଥା ତାଚ୍ଛଲ୍ୟ ବୃଦ୍ଧିରେ ଏବଂ ଆଧୁନିକ ସାହିତ୍ୟକ୍ଷେତ୍ରରେ କାବ୍ୟ-ସାହିତ୍ୟର ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟର ପ୍ରାଚୁର୍ଯ୍ୟାବଲୋକନରେ କବିପ୍ରତିଭାରୂପ-ଅନୁଜ୍ଞାପତ୍ର-ବିତରଣ କେନ୍ଦ୍ରଟି କିଛିଦିନ ବନ୍ଦ ରଖିବାହିଁ ସମୀଚୀନ ହେବ । ତେବେ ସ୍ୱର୍ଗର ପାର୍ଶ୍ୱସୃଷ୍ଟିର ଅବାଞ୍ଛନୀୟ ଫଳସ୍ୱରୂପ ତେଣେ ସ୍ୱର୍ଗକୁ ନିଶୁଣି (ନିଃଶ୍ରେଣୀ) ନାହିଁ ଏବଂ ଏଣେ ବଡ଼ ଲୋକଙ୍କୁ ଖାତିର ନାହିଁ । ତେଣୁ କବିଙ୍କର ହେଲା ଅବିକଳ ତ୍ରିଶଙ୍କୁର (ମହା)ଦଶା—ନ ଯଯୌ ନ ତସ୍ଥୌ ।

ଆଦର୍ଶ ମନୀଷୀମାନଙ୍କର ଜୀବନଚରିତ ସାହିତ୍ୟର ଗୋଟିଏ ବିଶିଷ୍ଟ ଅଙ୍ଗ । ଲେଖି ଜାଣିଲେ ଜୀବନୀ ଦୃଶ୍ୟକାବ୍ୟ ପରି ପ୍ରାଣସ୍ପର୍ଶୀ ହୋଇ ପାରେ । ମାଇକେଲଙ୍କ ସୁଲିଖିତ ଜୀବନୀ ସେକ୍ସପିଅରଙ୍କ ଉତ୍କୃଷ୍ଟ ବିରହାତ୍ମକ ନାଟକ ପରି ଖୁବ୍ ଉପଭୋଗ୍ୟ ହୋଇଅଛି । ଏହା ବଙ୍ଗ-ସାହିତ୍ୟରେ ସ୍ଥାନ ପାଇବାର ଯୋଗ୍ୟ । ସେଥିରେ କବିବରଙ୍କ ସହଧର୍ମିଣୀ ହେନ୍‌ରିଏଟଙ୍କ ଚରିତ୍ରଚିତ୍ରଣରେ ଲେଖକ ପ୍ରଭୂତ ପ୍ରତିଭାର ପରିଚୟ ଦେଇଅଛନ୍ତି । ମନସ୍ୱିନୀ କବିପ୍ରେୟସୀଙ୍କ ହୃଦୟବତ୍ତା ତଥା ଉଦାରତା ସୀତା ସାବିତ୍ରୀ ପ୍ରଭୃତି ଭାରତଗୌରବ ମହିଳାଙ୍କ ଆଦର୍ଶରେ ଚିତ୍ରିତ ହୋଇଥିବାରୁ ତାହା ସ୍ୱତଃସ୍ଫୂର୍ତ୍ତି ଶ୍ରଦ୍ଧାଭକ୍ତିରେ ପାଠକର ହୃଦୟକୁ ଆପ୍ଲୁତ କରିଦିଏ । କବିବରଙ୍କ ଜୀବନର ଘଟନାପରମ୍ପରା ନାଟକୀୟ

ଛଟାରେ ପ୍ରଦର୍ଶିତ ହୋଇଥିବାରୁ ସର୍ବ ହୃଦୟସ୍ପର୍ଶୀ ହୋଇପଡ଼େ । ଏପରି ଉଚ୍ଚାଙ୍ଗର ଜୀବନଚରିତର କଳ୍ପନା ସୁଦ୍ଧା ଆମ ଦେଶରେ ହୋଇଥିବାର ମୋତେ ଜଣା ନାହିଁ । ଇଂଲଣ୍ଡର କ୍ଷୁଦ୍ରାଦପି କ୍ଷୁଦ୍ର ସାହିତ୍ୟିକମାନଙ୍କର ସୁଲିଖିତ ଜୀବନୀ ଅଛି, କିନ୍ତୁ ଆମ ଦେଶରେ ଦୁଇ ଅଢ଼ାଇଜଣ କବି-ସାହିତ୍ୟିକମାନଙ୍କ ଛଡ଼ା କାହାର ଜୀବନଚରିତ ଲେଖାଯାଇ ନାହିଁ । ଯେ କେତେଖଣ୍ଡ ମାତ୍ର ଅଛି, ତାହାର ଶୈଳୀ କଳାନୁମୋଦିତ ନୁହେଁ । ୰ ସାମନ୍ତ ଚନ୍ଦ୍ରଶେଖରଙ୍କ ଜୀବନଚରିତ କେବଳ ଘଟଣାପାରମ୍ପର୍ଯ୍ୟର ସମାବେଶ ମାତ୍ର । ସେଥିରେ ସାହିତ୍ୟିକ ରସପରିବେଶନର ଚେଷ୍ଟା ପଣ୍ଡିତ-ସୁଲଭ ପ୍ରଗଲ୍‌ଭତାର ପ୍ରାବଲ୍ୟ ତଥା ବାହୁଲ୍ୟବଶତଃ ପରିଶୁଷ୍କ ହୋଇ ଯାଇଅଛି । ତେଣୁ ମହାମାନବଙ୍କ ଜୀବନର ମାହାତ୍ମ୍ୟ ପାଠକର ହୃଦୟକୁ ସ୍ପର୍ଶ କରୁ ନାହିଁ । ଉତ୍କଳର ଦୁର୍ଭାଗ୍ୟରୁ ଉଦାତ୍ତ ମନୀଷୀ, ତ୍ୟାଗବୀର, କର୍ମୀ, ସାହିତ୍ୟିକ ପ୍ରଭୃତିଙ୍କ ଜୀବନର ଆଦର୍ଶ ଜାତୀୟ ଗୌରବର ପରିଚାୟକରୂପେ ଭାବୀବଂଶଧରମାନଙ୍କ ଉପରେ ପ୍ରଭାବ ବିସ୍ତାର କରୁ ନାହିଁ ? ଯେପରି ବହୁମୂଲ୍ୟର ପ୍ରସ୍ତର କେତେଖଣ୍ଡ ସ୍ତୂପୀକୃତ କରିଦେଲେ କୋଣାର୍କ ହୋଇ ନ ପାରେ ଓ କେତେଖଣ୍ଡମାତ୍ର ଶ୍ୱେତ, ପୀତ, ନୀଳ ପ୍ରଭୃତି ନାନାରଙ୍ଗର ପ୍ରସ୍ତର ଥୋଇଦେଲେ ତାଜମହଲ ହୋଇ ନ ପାରେ, ସେହିପରି ଆଦର୍ଶ ପୁରୁଷଙ୍କର ଘଟଣାବହୁଳ ଜୀବନର କେତୋଟି ବିଶିଷ୍ଟ ଘଟଣା ଉଲ୍ଲେଖ କଲେ ଜୀବନୀ ହୋଇ ନ ପାରେ ନବପ୍ରକାଶିତ କବିବର ରାଧାନାଥଙ୍କ ଜୀବନଚରିତ ଅପେକ୍ଷାକୃତ ଜ୍ଞାତବ୍ୟ ବିଷୟରେ ପରିପୂର୍ଣ୍ଣ ହୋଇଅଛି, କିନ୍ତୁ ସେଥିରେ କଳାନୁମୋଦିତ ପରି-ବେଷଣର କୌଣସି ପ୍ରୟାସ ହୋଇ ନାହିଁ । ଏହାକୁ ଜୀବନୀ ନ କହି ବିଶ୍ୱକୋଷର ସଂକ୍ଷିପ୍ତ ସଂସ୍କରଣ ବୋଲାଯାଇ ପାରେ । କାରୁକାର୍ଯ୍ୟସମ୍ବଳିତ ଗଠନକୌଶଳର ପ୍ରୟୋଜନୀୟତା ଉଭୟ କ୍ଷେତ୍ରରେ ଅବଶ୍ୟ ସ୍ୱୀକାର କରିବାକୁ ହେବ । ଏହି କୌଶଳକୁ ଉପେକ୍ଷା କଲେ ରସାଭାସ ଅବଶ୍ୟମ୍ଭାବୀ । ତେଣୁ ଆମ ଦେଶର ସାହିତ୍ୟକ୍ଷେତ୍ରରେ ସୁଲିଖିତ ଜୀବନଚରିତର ଏକାନ୍ତ ଅଭାବ । ନିପୁଣ ବିଜ୍ଞାଣୀ ହସ୍ତରେହିଁ କାବ୍ୟ-କଳାନୁମୋଦିତ ରସପରିବେଶନ ସମ୍ଭବପର ହୁଏ ।

ମଧୁମକ୍ଷିକା ଯେପରି ନିମ୍ବ ଓ କରଞ୍ଜ ପ୍ରଭୃତି ତିକ୍ତରସାଶ୍ରିତ ତରୁଲତାମାନଙ୍କରୁ ମଧ୍ୟ ମଧୁସଂଗ୍ରହ କରି ମଧୁଚକ୍ର ରଚନା କରେ, ସେହିପରି ଦେଶବିଶେଷରେ ପତ୍ରଲେଖା ଓ ଦିନଲିପି ( Diary ) ଲେଖାରୁ ମଧ୍ୟ କାବ୍ୟମଧୁ ସଞ୍ଚୟନର ଏକାଧିକ ଦୃଷ୍ଟାନ୍ତ ଦେଖିବାକୁ ମିଳେ । ଗୌଡ଼ୀୟ ବୈଷ୍ଣବମାନଙ୍କ ଅତିପ୍ରିୟ ଗୋବିନ୍ଦଦାସଙ୍କ ଦିନଲିପି ସ୍ଥାନୀୟ ଲେଖା । କାଉପରଙ୍କ ପତ୍ରାଳୀ ବିଶୁଦ୍ଧ ସାହିତ୍ୟରସ ପରିବେଷଣପୂର୍ବକ ବିଶ୍ୱସାହିତ୍ୟକ୍ଷେତ୍ରରେ ଗୋଟିଏ ବିଶିଷ୍ଟ ସ୍ଥାନ ଅଳଙ୍କୃତ କରିଅଛି । ଆମ ଦେଶର ଶିକ୍ଷିତ ଲୋକେ ଗତ ଅର୍ଦ୍ଧଶତାବ୍ଦୀ ହେଲା ମାତୃଭାଷାରେ ଚିଠିପତ୍ର ଲେଖିବାଟା ଅନାର୍ଯ୍ୟୋଚିତ ବର୍ବରତା ମନେ କରୁଥିବା ସ୍ଥଳେ ଆମ ସାହିତ୍ୟକ୍ଷେତ୍ରରେ କାଉପରଙ୍କ ପତ୍ରାବଳୀର କଳାକୌଶଳର ଆଶା ପୋଷଣ କଲେ ହାସ୍ୟାସ୍ପଦ ହେବାର କଥା । ଶିରେ ନାସ୍ତି ଶିରେ ବ୍ୟଥା । କିନ୍ତୁ ବ୍ୟଙ୍ଗରସପ୍ରିୟ ବିନୟ୍-ପତ୍ରିକା-ଲେଖକ ସାହିତ୍ୟରସିକମାନେ ଅନ୍ତର୍ଲିପି ଓ ବହିର୍ଲିପି ନାମକ ପ୍ରାଚୀନ ପ୍ରଣାଳୀରେ ଚିତ୍ତବିନୋଦନ କରୁଥିବାର କିମ୍ବଦନ୍ତୀ ଅଛି । ପ୍ରଣାଳୀ ଦୁଇଟି ବିସ୍ମୃତିଗର୍ଭରେ ପୋତି ପଡ଼ିଲେଣି । ପୁଣି ସାହିତ୍ୟର ଭାବଧାରା ସଙ୍ଗେ ଇତିହାସର ଭାବଧାରାର ସାମଞ୍ଜସ୍ୟ ବିଧାନ କରି ବର୍କ, କାର୍ଲାଇଲ୍, ମେକଲେ ପ୍ରଭୃତି ଲେଖକମାନେ ଇତିହାସର ମାଧ୍ୟମ ଦେଇ ବିଶୁଦ୍ଧ ସାହିତ୍ୟରସ ପରିବେଷଣରେ ବିଶେଷ କୃତକାର୍ଯ୍ୟ ହୋଇଅଛନ୍ତି । ସାହିତ୍ୟର ଆଦର୍ଶ ସୌନ୍ଦର୍ଯ୍ୟର ଉପାସନା ଏବଂ ଇତିହାସର ବୀଜମନ୍ତ୍ର ସତ୍ୟାନୁସନ୍ଧାନ, କିନ୍ତୁ ଆମ ଦେଶର ଐତିହାସିକମାନେ କାକତାଳୀୟ ନ୍ୟାୟରେ ବିଶେଷ ଆସ୍ଥାବାନ୍ ହୋଇ ପଡ଼ିଥିବାରୁ ସେମାନଙ୍କର ଐତିହାସିକ ଗବେଷଣା ସ୍ଥଳବିଶେଷରେ ଗଣବଣା ଗୋମାତୃକାର ଅନ୍ୱେଷଣ ପରି ପଣ୍ଡଶ୍ରମରେ ପର୍ଯ୍ୟବସିତ ହୋଇଥାଏ, ପୁଣି କୌଣସି କୌଣସି ସ୍ଥଳରେ କାର୍ତ୍ତିବୀର୍ଯ୍ୟାପହୃତ ନନ୍ଦିନୀର ପୁନରୁଦ୍ଧାର ଚେଷ୍ଟା ପରି ଭସ୍ମୀ ମାରାତ୍ମକ ହୋଇଥିବାର ଏକାଧିକ ନିଦର୍ଶନ ମଧ୍ୟ ଅଛି । ସତ୍ୟାନୁସନ୍ଧାନରେ ଏପରି ସ୍ଖଳିତପଦ ଐତିହାସିକମାନଙ୍କ ନିପୁଣ ଲେଖନୀରୁ କାର୍ଲାଇଲ୍, ବର୍କ ପ୍ରଭୃତି ଲେଖକସୁଲଭ ସତ୍ୟର ସୌନ୍ଦର୍ଯ୍ୟବିଗ୍ରହ ଆଶା ।

କରିବା ବିଡ଼ମ୍ବନା ମାତ୍ର ; ଏଣୁ ସତ୍ୟାଗ୍ରହ-ପରାଙ୍ମୁଖ ଏହି ଐତିହାସିକ ପ୍ରବନ୍ଧମାନଙ୍କରେ ସତ୍ୟର ସୌନ୍ଦର୍ଯ୍ୟମୂର୍ତ୍ତିର ଅନୁସନ୍ଧାନ ହନୁମାନର ବସ୍ତ୍ରହରଣ ପରି କଳ୍ପନାତୀତ ଏବଂ ଉଡ଼ୁମ୍ବରର କୁସୁମଚୟନ ପରି ଅସମ୍ଭବ । କଳାପାହାଡ଼ର ଉତ୍ପାତରେ ଭଗ୍ନାବୟବ ଦେବଦେବୀଙ୍କ ପରି ସ୍ୱୟଂ ସତ୍ୟ ଯେଉଁଠାରେ ବିକଳାଙ୍ଗ, ସେ କ୍ଷେତ୍ରରେ ସତ୍ୟର ସର୍ବାଙ୍ଗସୁନ୍ଦର ମଙ୍ଗଳମୟ-ବିଗ୍ରହର ସମ୍ଭାବନା କାହିଁ ? ଐତିହାସିକ ସତ୍ୟାନୁସନ୍ଧାନ କାକତାଳୀୟ ନ୍ୟାୟ ଉପରେ ସୁପ୍ରତିଷ୍ଠିତ ହେଲେ ସାହିତ୍ୟିକ ସୌନ୍ଦର୍ଯ୍ୟସୃଷ୍ଟି ଓ ତଦାନୁ-ଷଙ୍ଗିକ ରସସୃଷ୍ଟି ଓ ରସପରିବେଶନ ଯେ ସୁଦୂରପରାହତ, ଏହା ବୋଲିବା ବାହୁଲ୍ୟ ମାତ୍ର ।

ଅନ୍ଧ ସ୍ୱଦେଶପ୍ରୀତିର ବିଷମୟ ଫଳସ୍ୱରୂପ ଆମ୍ଭମାନଙ୍କ ସ୍ୱଦେଶ-ପ୍ରେମିକ ସାହିତ୍ୟରଥୀମାନେ ନିଜ ସାହିତ୍ୟକୁ ସର୍ବତୋଭାବେ ପୂର୍ଣ୍ଣାଙ୍ଗ ମନେ କରୁଥିବା ଅହଙ୍କାରେ ଆମ୍ଭମାନଙ୍କ ଜାତୀୟ ସାହିତ୍ୟର ଶଂସିତ ଅଭାବ ପ୍ରତି ସେମାନଙ୍କ କୃପାଦୃଷ୍ଟି ଆକର୍ଷଣ କରିବା ଅଭିପ୍ରାୟରେ ମୋର ଏହି କ୍ଷୀଣ ଚେଷ୍ଟା ମାତ୍ର । ଅଭାବବୋଧ ସମ୍ପୂର୍ଣ୍ଣ ହୃଦୟଙ୍ଗମ ହେଲେ ଅଭାବ ଦୂରୀକରଣର ଚେଷ୍ଟା ସମ୍ଭବପର ହୋଇ ପାରେ । ଏହି ଆଶା ହୃଦୟରେ ପୋଷଣ କରି କର୍ତ୍ତବ୍ୟାନୁରୋଧରେ ନାନା ଅପ୍ରିୟ ସତ୍ୟ ମଧ୍ୟ ପ୍ରସଙ୍ଗକ୍ରମେ ଉଲ୍ଲେଖ କରିବାକୁ ବାଧ୍ୟ ହେଲି । ବିଶ୍ୱସାହିତ୍ୟ ସଙ୍ଗରେ ସମକକ୍ଷତା କରିବା ଭଳି ଆମ୍ଭମାନଙ୍କର ବିଶେଷ କିଛି ଥିଲା ପରି ମୋତେ ଲାଗେ ନାହିଁ ; ତେଣୁ ଏ ଆଡ଼କୁ ଦୃଷ୍ଟି ନ ଦେଲେ ଆମ୍ଭମାନଙ୍କୁ କୂପମଣ୍ଡୂକ ପରି ଚିରତିମିରବାସୀ ହୋଇ ପଡ଼ିରହିବାକୁ ହେବ । ଏହା କିନ୍ତୁ ପ୍ରକୃତ ଦେଶହିତୈଷୀ ଚିନ୍ତାଶୀଳ କୌଣସି ସାହିତ୍ୟାନୁରାଗୀର ବାଞ୍ଛନୀୟ ନୁହେଁ ।

ଉତ୍କୃଷ୍ଟ କଳାନୁଶୀଳନରୁ ହିଁ ଆମ୍ଭମାନଙ୍କ ଦେଶର ନାମ ଉତ୍କଳ ହୋଇଅଛି । ବାସ୍ତବିକ କୋଣାର୍କ, ଭୁବନେଶ୍ୱର, ଯାଜପୁର ପ୍ରଭୃତି ଦେବାଳୟମାନଙ୍କର ସ୍ଥାପତ୍ୟ ଓ ଭାସ୍କର୍ଯ୍ୟର ଉତ୍କର୍ଷ ଦେଖିଲେ ଉତ୍କଳ ନାମର ସାର୍ଥକତା ସମ୍ୟକ୍ ଉପଲବ୍ଧ ହୁଏ । ପୁଣି କାବ୍ୟକଳା

ତଥା ସଙ୍ଗୀତକଳାରେ ମଧ୍ୟ ଉତ୍କଳର ବୈଶିଷ୍ଟ୍ୟ ପ୍ରତି ପୃଥିବୀର ଦୃଷ୍ଟି ଆକୃଷ୍ଟ ହୋଇ ନାହିଁ । ଏମନ୍ତ କି ଅଧୁନିକ ଶିକ୍ଷିତ ସମାଜ ମଧ୍ୟ ଉକ୍ତ ଗୌରବ ପ୍ରତି ଉଦାସୀନ ହୋଇ ପଡ଼ିଅଛନ୍ତି । ଉତ୍କଳର ଛନ୍ଦ, ଚୌପଦୀ ପ୍ରଭୃତିର ରଚନାଶୈଳୀ ଉତ୍କଳର ବୈଶିଷ୍ଟ୍ୟ । ଝୋଶୀ, ରସକୁଲ୍ୟା, ପାହାଡ଼ିଆ କେଦାର, ଶଙ୍କରାଭରଣ ପ୍ରଭୃତି ଛନ୍ଦ ଭାରତରେ ଅନ୍ୟତ୍ର ନାହିଁ । ବଙ୍ଗଦେଶର ରସକୀର୍ତ୍ତନର ବଡ଼ ଦଶକୋଶୀ, ମଧ୍ୟମ ଦଶକୋଷୀ, ଛୋଟ ଦଶକୋଶୀ, ଲୋଫା, ଦୋଠୁକା ପ୍ରଭୃତି ତାଳ ଲୟର ବୈଚିତ୍ର୍ୟ କେବଳ ବଙ୍ଗୀୟ ସାହିତ୍ୟ ଓ ସଙ୍ଗୀତର ବୈଶିଷ୍ଟ୍ୟ । ଯେପରି ରସକୀର୍ତ୍ତନ-ପାଲ୍ଲା ଗାୟକମାନେ ସେମାନଙ୍କର ସେହି ଚିରାଚରିତ ପ୍ରଣାଳୀରେ ବଙ୍ଗଦେଶର ରସକୀର୍ତ୍ତନମୂଳକ ତାଳ ମାନ ସାହାଯ୍ୟରେ ଶ୍ରୀ ଶ୍ରୀ ଗୌରଲୀଳା, ଶ୍ରୀ ଶ୍ରୀ କୃଷ୍ଣଲୀଳାର ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟକୁ ଜନ-ସାଧାରଣଙ୍କୁ ହୃଦୟଙ୍ଗମ କରାନ୍ତି, ସେହିପରି ଆମ୍ଭମାନଙ୍କ ଉତ୍କଳରେ ମଧ୍ୟ ତଦନୁରୂପ ଦୁଇଟି ସୁପ୍ରସିଦ୍ଧ ଅନୁଷ୍ଠାନ ପୂର୍ବକାଳରୁ ଗଢ଼ି ଉଠିଥିଲା । ତାହା ଗୋଟିପ ସଙ୍ଗୀତ ଏବଂ ପାଲ୍ଲା ଗାୟକମାନଙ୍କର ପାଲ୍ଲାଗାନ । କଳାଦୃଷ୍ଟିରେ ଏ ଦୁଇଟି ଅନୁଷ୍ଠାନର ସ୍ଥାନ ଅତି ଉଚ୍ଚ ଥିଲା । ପାଲ୍ଲା ଗାୟକମାନେ ନାନା ତାଳ ମାନ ସାହାଯ୍ୟରେ ସାହିତ୍ୟ, ସଙ୍ଗୀତ ଓ ଆଧ୍ୟାତ୍ମିକତାର ସରସ ପରିବେଶନପୂର୍ବକ ନଷ୍ପେଷିତ ଜନତାର ତୃଷିତ ହୃଦୟରେ କାବ୍ୟାମୃତରସ ସଞ୍ଚାର କରୁଥିଲେ । ଏ ଅନୁଷ୍ଠାନଟି କାଳକ୍ରମେ କ୍ଷୀଣ ହୋଇ ପଡ଼ିଅଛି । ବଙ୍ଗଦେଶର ରସକୀର୍ତ୍ତନମଣ୍ଡଳୀ କିନ୍ତୁ ପୂର୍ବାପେକ୍ଷା ଅଧିକ ସମାଦର ଓ ଅଭ୍ୟର୍ଥନା ପାଉଥିବାର ଜଣାଯାଏ । ଆଧୁନିକ ଯୁଗରେ ଶ୍ରୀ ନନ୍ଦକିଶୋର ଦାସ ଲୀଳାଗୀତଶେଖର ଏବଂ ଶ୍ରୀ ରାଧାରମଣ କର୍ମକାର ପ୍ରଭୃତି ଗାୟକମାନେ ପୂର୍ବବର୍ତ୍ତୀ ଯୁଗର ଶ୍ରୀ ଅବଧୂତ ବନ୍ଦ୍ୟୋପାଧ୍ୟାୟ, ଶ୍ରୀ ଗଣେଶ ଦାସ ଓ ଶ୍ରୀ ଗଦାଧର ଦାସ ଏବଂ ଶ୍ରୀ ରାସବିହାରୀ ମିଶ୍ର ପ୍ରଭୃତି ସ୍ୱନାମଧନ୍ୟ କୀର୍ତ୍ତନୀୟାମାନଙ୍କ ଅଯୋଗ୍ୟ ପ୍ରତିଦ୍ୱନ୍ଦ୍ୱୀ ନୁହନ୍ତି । କିନ୍ତୁ ଆମ ଦେଶରେ ଶ୍ରୀ କୃପ ଷଡ଼ଙ୍ଗୀ, ଶ୍ରୀ ଗୋପୀନାଥ ଯୋଗୀ, ଶ୍ରୀ ଶ୍ରୀରାମ ପଣ୍ଡା ଏମନ୍ତ କି ଶ୍ରୀ ଦୁର୍ଯ୍ୟୋଧନ ପଣ୍ଡା

ପ୍ରକୃତ ଖ୍ୟାତନାମା ପାଲା ଗାୟକଙ୍କ ପଦାଙ୍କ ଅନୁସରଣକାରୀ ପାଲାବାଲା ଅଧୁନିକ ପରିସ୍ଥିତିରେ ବିରଳ । ତେବେ ଶ୍ରୀ ହରିନାଥ ଓ ଶ୍ରୀ ନରନାଥ ପ୍ରମୁଖ କେତେଜଣ ପ୍ରତିଭାଶାଳୀ ଗାୟକ ଏହି ଆମ ଦେଶର ପୂର୍ବ ଗୌରବ ରକ୍ଷାପାଇଁ ବଦ୍ଧପରିକର ହୋଇ ପଡ଼ିଛନ୍ତି । ମାତ୍ର ବଙ୍ଗ ଦେଶର ରସକୀର୍ତ୍ତନର ରସପରିବେଶନ ଅତି ଅନବଦ୍ୟ ଏବଂ ବୈଷ୍ଣବ ପଦାବଳୀର ମାଧୁର୍ଯ୍ୟ ଉଦ୍‌ଘାଟନରେ ସେମାନଙ୍କ କଳାକୌଶଳ ଅତୀବ ଉପାଦେୟ ହୋଇ ରହିଛି । କିନ୍ତୁ ଆମ୍ଭମାନଙ୍କର ପାଲାଗାୟକମାନେ ରସପରିବେଶନଠାରୁ ପାଣ୍ଡିତ୍ୟାଭିମାନକୁ ବଡ଼ କରି ମନେ କରନ୍ତି ଏବଂ ସଙ୍ଗୀତର ହୃଦୟଗ୍ରାହିତ୍ୱକୁ ଗୌଣ କରି କେବଳ ଶୁଷ୍କ ଜ୍ଞାନଚର୍ଚ୍ଚାକୁ ମୁଖ୍ୟ କରି ଅମରକୋଷ ଓ ପାଣିନିର ଆସ୍ଫାଳନରେ ସନ୍ତୁଷ୍ଟ ରହନ୍ତି । ଉତ୍କଳରେ ବୈଷ୍ଣବପଦାବଳୀ ତଥା ସାଧାରଣ ପଦାବଳୀ ଓ ତସତ୍ୟ ଛନ୍ଦୋବୈଚିତ୍ର୍ୟର ଅଭାବ ନାହିଁ; କିନ୍ତୁ ପରିବେଷକମାନେ କାବ୍ୟ-ସଙ୍ଗୀତ-କଳାକୃତିକୁ ଗୌଣ କରି ପକାନ୍ତି ବୋଲି ସେମାନଙ୍କ ପରିବେଶନ ହୃଦୟସ୍ପର୍ଶୀ ହୁଏ ନାହିଁ । ଏ ଦିଗରେ ସଂସ୍କାର ପ୍ରୟୋଜନ ।

କିନ୍ତୁ ଆମ୍ଭମାନଙ୍କର ଦୁର୍ଭାଗ୍ୟରୁ ଆମ୍ଭମାନଙ୍କର ଜାତୀୟ ଗୌରବକର ପରାକାଷ୍ଠାରୂପୀ "ଗୋଟିପ ସଙ୍ଗୀତର" ମାହାତ୍ମ୍ୟ ଏକାବେଳକେ ଖର୍ବ ହୋଇ ଯାଇଅଛି । ଏଠାରେ ୰ମଥୁରାମଣ୍ଡଳର ୰ରାସଲୀଳାର କଥା ମନେ ପଡ଼େ । ପ୍ରଭୁପାଦ ୰ମୋହନସୁନ୍ଦର ଦେବ ଗୋସ୍ୱାମୀ ଏବଂ ସ୍ୱନାମଧନ୍ୟ ଶ୍ରୀଯୁକ୍ତ କାଳୀବାବୁଙ୍କ ରାସଲୀଳାର ଅଭିନୟ ଯେଉଁମାନେ ଉପଭୋଗ କରିଅଛନ୍ତି, ସେମାନେ ଶ୍ରୀବ୍ରଜଭୂମିର ୰ରାସଲୀଳାର ମାହାତ୍ମ୍ୟ କିଞ୍ଚିତ୍ ଉପଲବ୍ଧି କରି ପାରିବେ । ବ୍ରଜଭୂମିରେ ମଧ୍ୟ ପୂର୍ବର ରାସଲୀଳାଭିନୟ ଆଉ ପୂର୍ବପରି ନାହିଁ । ପାଶ୍ଚାତ୍ୟ ସଭ୍ୟତାର ରୁକ୍ଷ ସଂସ୍ପର୍ଶ ଦୋଷରୁ ତାହାର କମନୀୟତା କ୍ରମଶଃ ହ୍ରାସପ୍ରାପ୍ତ ହୋଇଅଛି । ଆମ୍ଭମାନଙ୍କର ଗୋଟିପଗାନ ଏକାଧାରରେ ସଙ୍ଗୀତ ଓ ନୃତ୍ୟକାବ୍ୟର ମନୋରମ ସମାବେଶ ଅଟେ । ସେମାନେ ସଲୀଳ ଅଙ୍ଗଭଙ୍ଗୀଦ୍ୱାରା ସଙ୍ଗୀତର ଯେପରି ଉପାଦେୟ ଅଭିବ୍ୟକ୍ତି କରି ହୃଦୟସ୍ପର୍ଶୀ କରନ୍ତି ଶ୍ରୀବ୍ରଜଭୂମିର ୰ରାସମଣ୍ଡଳୀରେ ତାହାହିଁ ହୋଇଥାଏ ।

ତେବେ ବ୍ରଜଭୂମିର ଅଧୁନିକ ମଣ୍ଡଳୀମାନଙ୍କରେ ପୂର୍ବନିଷ୍ଠାର ଅଭାବ ଦେଖାଯାଏ । ଆମ ଦେଶରେ ଗୋଟିଏ ସଙ୍ଗୀତର ଅଧୁନିକ ଦୁରବସ୍ଥା ଅବଲୋକନ କରି କିଏ ବିଶ୍ୱାସ କରିବ ଯେ ଏହା ଗୋଟିଏ ଉତ୍କୃଷ୍ଟ ଅନୁଷ୍ଠାନ, ବିଶେଷତଃ ସଙ୍ଗୀତର ରସଉଦ୍‌ବୋଧନ ବିଷୟରେ ଏପରି ମର୍ମସ୍ପର୍ଶୀ କଳାନୈପୁଣ୍ୟ ବ୍ରଜଭୂମି ଭିନ୍ନ ଅନ୍ୟତ୍ର ନାହିଁ । କିନ୍ତୁ ଆମ୍ଭେମାନେ ଏପରି ସଦନୁଷ୍ଠାନଟିର ପୁରୁଣ ମହିମାରେ ଜଳାଞ୍ଜଳି ଦେଇ ନବୀନତାର ମୋହରେ ପଡ଼ି ଇତର-ରସ ସମ୍ଭୋଗରେ ମାତି ରହିଅଛୁଁ । କେବଳ ଆମ୍ଭମାନଙ୍କ ଅଯୋଗ୍ୟତାରୁ ଏବଂ ଜନତାର ରୁଚିବିପର୍ଯ୍ୟୟରୁ ପ୍ରଭୁପାଦ ତଥା କାଳୀବାବୁଙ୍କର ଦବ୍ରସଲ୍ଲା ବେଶୀ ଦିନ ବର୍ତ୍ତି ପାରିଲେ ନାହିଁ । ସେଗୁଡ଼ିକ ତିଷ୍ଠି ରହିବାପାଇଁ ଜନସାଧାରଣର ସହଯୋଗ ଓ ସାହାଯ୍ୟ ଯେତେଟିକ ଲୋଡ଼ା, ତାହା ଭକ୍ତଜନପାଦମାନଙ୍କର ବିପର୍ଯ୍ୟସ୍ତ ରୁଚିରୁ ନ ମିଳିବାରୁ ସେମାନେ ବର୍ଷାକାଳର ବାଲିଛିଡ଼ୁ ପରି ଉଭେଇ ଗଲେ । ବର୍ତ୍ତମାନ ମଧ୍ୟ ସ୍ୱନାମଧନ୍ୟ ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚରେ ସମୟ ସମୟରେ ଉତ୍କୃଷ୍ଟ ଅଙ୍ଗର ନୃତ୍ୟଗୀତ ସାହାଯ୍ୟରେ ବିଶୁଦ୍ଧ କାବ୍ୟାମୃତ ପରିବେଶନ ହୁଏ । ତେବେ ନାଗରିକ ଉଚ୍ଛୃଙ୍ଖଳତାର ପ୍ରଶ୍ରୟଦାନ ଯେ ଲାଭଜନକ ବ୍ୟବସାୟର ବୀଜମନ୍ତ୍ର ଏହା ମନରୁ ନିର୍ବାସିତ ନ ହେବାଯାଏ ଦେଶର ସମୃଦ୍ଧକଲ୍ୟାଣ ସମ୍ପାଦିତ ହୋଇ ନ ପାରେ । ଲୋକେ ଅନ୍ଧ ଏପରି ଚଳଚ୍ଚିତ୍ର ହୋଇପଡ଼ିଛନ୍ତି ଯେ ସେମାନେ ଅନ୍ଧ ଚଳଚ୍ଚିତ୍ରର ମୋହରେ ପଡ଼ି ଇତର ରସମଦିରା-ପାନରେ ଭୋଳ । ଦୁର୍ଭାବିଷ୍ଟ ସଭ୍ୟତାର ଦୂଷିତ ବାତାବରଣରେ ଦୀର୍ଘକାଳ ରହି ଜନତାର ରୁଚି ଆଜି ବିପର୍ଯ୍ୟସ୍ତ ହୋଇ ପଡ଼ିଛି । ତେଣୁ ପଥ୍ୟାପଥ୍ୟର ବିଚାର ଲୋପ ପାଇଥିବାରୁ କୁପଥ୍ୟ ପ୍ରତି ଲୋଭ ବେଶୀ । ସୁତରାଂ ଲାଲସାର ଅତିଶଯ୍ୟରୁ ଇତରରସ ସେବନ କରି ହୀନରୁ ହୀନତର ଅବସ୍ଥାକୁ ଅଧଃପତିତ ହେଉଅଛୁ । ପୁଣି ଅମୂଢ଼ତା-ଜାତର ପ୍ରବଳ ପ୍ରରୋଚନାରେ ନିଜର ଅଧଃପତନ ନିଜେ ଉପଲବ୍ଧି କରିବାକୁ ଅକ୍ଷମ । ଏପରି ଶୋଚନୀୟ ଅବସ୍ଥାପନ୍ନ ଜନତା ପ୍ରତି ଟିକିଏ କୃପାପରବଶ ହୋଇ

ଚଳଚ୍ଚିତ୍ରଜଗତର ଅଧିନାୟକମାନେ କେବଳ ନିଜର ପୋଷ୍ଠବୃଦ୍ଧି ହେତୁ ବ୍ୟବସାୟାତ୍ମିକା ବୁଦ୍ଧି ନିବଦ୍ଧ ନ କରି ଜନତାର ବିପର୍ଯ୍ୟସ୍ତ ରୁଚିକୁ ସଂଶୋଧିତ ଓ ପରିମାର୍ଜିତ କରିବାର ସାମାନ୍ୟ ଚେଷ୍ଟା କଲେ ମଧ୍ୟ ସେମାନେ ଦେଶର ଅଶେଷ କଲ୍ୟାଣସାଧନ କରି ପାରନ୍ତେ । କାବ୍ୟାମୃତରସ ପରିବେଷଣର ଉତ୍କର୍ଷରେ ସେମାନଙ୍କର କୃତିତ୍ୱ ଥିବାରୁ ଏପରି ଆଶା ପୋଷଣ କରିବାର ମୋର ଯଥେଷ୍ଟ କାରଣ ଅଛି । ସେମାନଙ୍କ ମଧ୍ୟରୁ ଅନେକେ ଭଦ୍ର ଉଚ୍ଚମନା ଓ ହୃଦୟବତ୍ତାର ମଧ୍ୟ ଅଭାବ ନାହିଁ ଏବଂ ଅନେକେ ଏକାବେଳକେ ଅର୍ଥପିଶାଚ ନୁହନ୍ତି ଏବଂ ଦୟା-ଦାକ୍ଷିଣ୍ୟାଦି ସଦ୍‌ଗୁଣାବଳୀରେ ଭୂଷିତ ଏବଂ ସେମାନଙ୍କର ବିପୁଳଦାନରେ ଦେଶର ସର୍ବବିଧ ଶୁଭାନୁଷ୍ଠାନ ଗୁଡ଼ିକ ଗଠିତ ଓ ଚାଳିତ ହେଉଅଛି । ତେବେ ସେମାନଙ୍କର ଦୈନନ୍ଦିନ ଜୀବନର ଦୃଷ୍ଟିକୋଣରେ ସାମାନ୍ୟ ଟିକିଏ ପରିବର୍ତ୍ତନ ପରିଲକ୍ଷିତ ହେଲେ, ଦେଶର ସମୂହ କଲ୍ୟାଣ ଅନିବାର୍ଯ୍ୟ । ପରମ କାରୁଣିକ ଭବକର୍ଣ୍ଣଧାର ସେମାନଙ୍କ ଜୀବନତରୀର ମଙ୍ଗ ସଳଖେଇ ଦେଇ ଦେଶର ସର୍ବବିଧ ମଙ୍ଗଳବିଧାନ କରନ୍ତୁ, ଏହାହିଁ ମୋର ବିନୀତ ପ୍ରାର୍ଥନା ।

ପୂର୍ବରେ କହିଅଛି ଯେ, ଆମ ଦେଶରେ କାବ୍ୟ-କୈବଲ୍ୟ-କଣିକା-ବିତରଣପାଇଁ ପାଲାଗାୟକମାନଙ୍କର ଅଭିନୟ ଗୋଟିଏ ଅତି ପ୍ରାଚୀନ ଅନୁଷ୍ଠାନ ଏବଂ ଉତ୍କଳର ନିଜସ୍ୱ । ସାରସ୍ୱତପୀଠରେ ଏଭଳି ଜନରଞ୍ଜନ ଅନବଦ୍ୟ ଅବଦାନ ଭାରତର ଅନ୍ୟତ୍ର ନାହିଁ । ଉତ୍ସାହ ଓ ସହାନୁଭୂତିର ଅଭାବରୁ ଏପରି ଗୌରବମଣ୍ଡିତ ଅନୁଷ୍ଠାନଟିର ପୂର୍ବଗରିମା କାଳକ୍ରମେ ମଉଳି ପଡ଼ିବାରୁ ତାହା ଅତି ହତଶ୍ରୀ ହୋଇ ପଡ଼ିଛି । ଜନତାର ରୁଚିବିପର୍ଯ୍ୟୟର ସଙ୍ଗେ ସଙ୍ଗେ ଲୋକେ ଏହା ପ୍ରତି ବୀତଶ୍ରଦ୍ଧ ହୋଇ ରୁଚିପୂର୍ଣ୍ଣ ଗୀତାଭିନୟ ଏବଂ ଚଳଚ୍ଚିତ୍ର ପ୍ରତି ଆକୃଷ୍ଟ ହୋଇ ପଡ଼ୁଛନ୍ତି । ଏମାନଙ୍କର ପୂର୍ବ ଆଦର ଓ ଅଭ୍ୟର୍ଥନାରେ ତ୍ରୁଟି ହେବାରୁ ଏମାନେ ମଧ୍ୟ ଆଦର୍ଶଚ୍ୟୁତ ହୋଇ ପଡ଼ୁଛନ୍ତି । ତେଣୁ ଏମାନେ ରସପରିବେଷଣକୁ ଗୌଣ କରି ଶୁଷ୍କ ପାଣ୍ଡିତ୍ୟ ପ୍ରଦର୍ଶନକୁ ମୁଖ୍ୟ କରି ଲକ୍ଷ୍ୟଭ୍ରଷ୍ଟ ହେଉଛନ୍ତି । ଏହା କିନ୍ତୁ ଅଳ୍ପକେ ଶୁଧୁରିଯିବାର ଆଶା କରାଯାଏ । ବଡ଼ ଆନନ୍ଦର କଥା,

ଗତ କେତେବର୍ଷ ମଧ୍ୟରେ ଶିକ୍ଷିତ ସମ୍ପ୍ରଦାୟର ଦୃଷ୍ଟାକ୍ଷିପ୍ତ କୃପାଦୃଷ୍ଟି ଏମାନଙ୍କର ଶୋଚନୀୟ ଅବସ୍ଥା ଉପରେ ପଡ଼ିବାରୁ ଏମାନଙ୍କର ପୂର୍ବ ଗୌରବର ପୁନଃ ପ୍ରତିଷ୍ଠାର ଚେଷ୍ଟା ଚାଲିଅଛି । ଏହା ଯଦିଏ ବ୍ୟାପକ ଭାବରେ ଦେଶରେ ପ୍ରସାରଲାଭ କଲେ ଅଚିରେ ସୁଫଳ ଫଳିବାର ଆଶା । ଏମାନେ ଗୁରୁକଳାନୁଶୀଳନରେ ଦକ୍ଷତା ଅର୍ଜନ କରି ଜନତାର ତୃଷାତୁର କଣ୍ଠରେ କାବ୍ୟପୀୟୂଷ ନିଷ୍ୟନ୍ଦନୀ ପିଆଇ ଦେଶର ପ୍ରଭୂତ ମଙ୍ଗଳ-ବିଧାନ କରୁଥିଲେ । ନିରକ୍ଷର ଜନତାର ନୀରସ କର୍କଶ ହୃଦୟକୁ କାବ୍ୟାମୃତ ସିଞ୍ଚନଦ୍ୱାରା ସରସ ଓ ଉର୍ବର କରି ଏମାନେ ସମାଜର ଅଗ୍ରଣୀ ପଦବୀରେ ପ୍ରତିଷ୍ଠିତ ଥିଲେ । ଗଣ-କଲ୍ୟାଣବ୍ରତ ଏହି ଗଣତନ୍ତ୍ରଯୁଗରେ ଗଣ-ସାହିତ୍ୟାନୁଶୀଳନର ପଥ ସୁଗମ କରିବା ପୃଥୁଲୋଦର ଗଣନାୟକଙ୍କର କୃପାଦୃଷ୍ଟି ଉପରେ ସମ୍ପୂର୍ଣ୍ଣ ନିର୍ଭର କରୁଅଛି, କାରଣ ସଙ୍ଘବଦ୍ଧ ବ୍ୟାପକ ଚେଷ୍ଟା ଭିନ୍ନ ଅଗଣନ ଜନତାର ବ୍ୟକ୍ତିଗତ ନଗଣ୍ୟ ଚେଷ୍ଟାରେ କୌଣସି ଶୁଭଫଳ ଆଶା କରାଯାଇ ନ ପାରେ । ଇତି ।

—ଗ୍ରନ୍ଥକାରସ୍ୟ

# କବିତାର ଜାତିଭେଦ

## (କ) ବୈଧୀ କବିତା (Classical)

## ଏବଂ

## ରାଗାନୁଗା (Romantic) କବିତା

ବିଧିସୃଷ୍ଟ ବିଶ୍ୱ-ବ୍ରହ୍ମାଣ୍ଡ ବିଧିବିଧାନର ବଶବର୍ତ୍ତୀ । ଉକ୍ତ ବିଧି-ବିଧାନକୁ ଲଙ୍ଘନ କରିବା କଥା ଜଡ଼ଜଗତରେ କେହି କଳ୍ପନା ସୁଦ୍ଧା କରି ପାରେ ନା । ସୁତରାଂ ଜଡ଼ଜଗତର ସମସ୍ତେ ଉକ୍ତ ବିଧାନଗୁଡ଼ିକ ଶିରୋଧାର୍ଯ୍ୟ କରି ଅବହମାନ କାଳରୁ ନିଜ ନିଜ ଲକ୍ଷ୍ୟ ବା ଗନ୍ତବ୍ୟ ମାର୍ଗରେ ଅବିଶ୍ରାନ୍ତ ଧାବମାନ ହେଉଛନ୍ତି । କର୍ମର ଅନ୍ତ ନାହିଁ । ମନୁଷ୍ୟ ପ୍ରଭୃତି ଚେତନ ପ୍ରାଣିଜଗତରେ ମଧ୍ୟ ବିଧିବିଧାନ କାର୍ଯ୍ୟକାରୀ ହୋଇ ଆସୁଛି, ତେବେ ମନୁଷ୍ୟର ଶାରୀରଧର୍ମ ବା ଜୈବଧର୍ମ ଛଡ଼ା ମନ, ଆତ୍ମା ଓ ହୃଦୟର ମଧ୍ୟ ଧର୍ମ ଅଛି । ସେ ସେହି ମାନସିକ ଓ ଆଧ୍ୟାତ୍ମିକ ଜଗତର ନିୟମାନୁସରଣ କରିବାକୁ ଯାଇ ସାମାନ୍ୟ ସ୍ୱାତନ୍ତ୍ର୍ୟ ଭୋଗ କରିଥାଏ । ସେ ସେହି ସ୍ୱାତନ୍ତ୍ର୍ୟ ସମ୍ଭୋଗରେ ମାତି ନିଜର ବ୍ୟବସ୍ଥାପକ ସାଜି ନିଜର ଜୀବନର ଗତି ନିୟନ୍ତ୍ରିତ କରେ । ଶରୀରଟି ପଞ୍ଚଭୂତରେ ଗଠିତ ହୋଇଥିବାରୁ ଭୌତିକ ଜଗତର ନିୟମର ଶୃଙ୍ଖଳରେ ଆବଦ୍ଧ ଥାଏ; କିନ୍ତୁ ମନ, ଆତ୍ମା ଓ ହୃଦୟରାଜ୍ୟରେ ମନୁଷ୍ୟ ଯେଉଁ ସାମାନ୍ୟ ସ୍ୱତନ୍ତ୍ରତା ଭୋଗ କରେ ସେ ସେହି ପରିମାଣରେ ନିଜ ଜୀବନର ଗତି ନିୟନ୍ତ୍ରିତ କରେ । ପୁଣି ମାନବର ଏହି ସ୍ୱତନ୍ତ୍ରତା ଆପେକ୍ଷିକ ମାତ୍ର ଅର୍ଥାତ୍ ଜଡ଼ଜଗତର ତୁଳନାରେ ସେ ସାମାନ୍ୟ କିଛି ସ୍ୱାତନ୍ତ୍ର୍ୟ ଦାବୀ କରେ ; କିନ୍ତୁ ତାହାର ଆଧ୍ୟାତ୍ମିକ, ପାରମାର୍ଥିକ ଜୀବନର ଶେଷ ମୀମାଂସା ତାହା ହାତରେ ନ ଥିବାରୁ ତାକୁ ମଧ୍ୟ ନୈତିକ, ଆଧ୍ୟାତ୍ମିକ ଓ ପାରମାର୍ଥିକ ଜଗତର ବିଧିବିଧାନ ମାନିବାକୁ ହୁଏ । ଯେପରି ଗୋଟା-

ଗୋରୁକୁ ଖଣ୍ଡେ ରଜ୍ଜୁ ସାହାଯ୍ୟରେ ଗୋଟାଏ ଖୁଣ୍ଟରେ ବାନ୍ଧି ଦେଲେ ସେ ସେହି ଖୁଣ୍ଟଟିକୁ କେନ୍ଦ୍ର କରି ଏବଂ ରଜ୍ଜୁକୁ ବ୍ୟାସାର୍ଦ୍ଧ ନେଇ ଯେଉଁ ପରିଧି ରଚନା କରି ପାରିବ, ସେହି ବୃତ୍ତମଧ୍ୟରେ ସେ ମନଇଚ୍ଛା ଚରିବୁଲି ପାରିବ, କିନ୍ତୁ ରଜ୍ଜୁରଚିତ ପରିଧି ବାହାରକୁ ଯାଇ ପାରିବ ନାହିଁ; ମନୁଷ୍ୟର ମଧ୍ୟ ଠିକ ସେହି ଦଶା। ସେ ସ୍ୱାଧୀନ ହୋଇ ମଧ୍ୟ ପରାଧୀନ ଓ ପରାଧୀନତାର ଶୃଙ୍ଖଳରେ ଆବଦ୍ଧ ହୋଇ ସୁଦ୍ଧା କେତେକଟା ସ୍ୱାଧୀନ।

ତେଣୁ ସେ ପରମାର୍ଥ ଜଗତର ବିଧିବିଧାନ ମାନି ଚଳିବାକୁ ବାଧ୍ୟ ଏବଂ ଚଳେ ମଧ୍ୟ। ସେ ଆଧ୍ୟାତ୍ମିକ ଜୀବନର ଉତ୍କର୍ଷ ସାଧନ କରିବାକୁ ଯାଇ କୌଣସି ସମ୍ପ୍ରଦାୟର ଗୁରୁପରମ୍ପରାର ଆଶ୍ରୟ ଗ୍ରହଣ ପୂର୍ବକ ଓ ତତ୍ ସମ୍ପ୍ରଦାୟର ବିଧିବିଧାନ ସ୍ୱୀକାର କରି ତଦନୁମୋଦିତ ସାଧନ ପ୍ରଣାଳୀର ସାହାଯ୍ୟ ଗ୍ରହଣ କରେ। ତାହାକୁ ବିଧିମାର୍ଗର ସାଧନ-ପ୍ରଣାଳୀ କହନ୍ତି। ସେଥିରେ ଉତ୍କର୍ଷଲାଭ କରି ତାହାର ପ୍ରେମଭକ୍ତିର ଉଦୟ ହୁଏ। ତାହାକୁ ବୈଧୀ ଭକ୍ତି କହନ୍ତି। ତାହା ଛଡ଼ା ସାଧନଭଜନର ପରିପକ୍ୱ ଅବସ୍ଥାରେ ସାଧକର ଯେଉଁ ମହାଭାବର ଉଦୟ ହୁଏ, ତାହା ବିଧିମାର୍ଗର ସଙ୍କୀର୍ଣ୍ଣ ସୀମା ମଧ୍ୟରେ ଆବଦ୍ଧ ରହିବାକୁ ଅସ୍ୱୀକାର କରେ। ତାହାର ହୃଦୟ ଭାବଶାବଲ୍ୟ ଓ ପ୍ରେମପ୍ରାବଲ୍ୟରୁ ଦିବ୍ୟୋନ୍ମାଦ ଦଶାକୁ ପ୍ରାପ୍ତ ହୁଏ। ସେହି ଉନ୍ନତ ଅବସ୍ଥାରେ ସାଧକ ଓ ପ୍ରେମିକ ବିଧିମାର୍ଗକୁ ଅତିକ୍ରମ କରି ରାଗମାର୍ଗରେ ପଦାର୍ପଣ କରେ। ସେତେବେଳେ କୌଣସିପ୍ରକାରର ବିଧିବିଧାନ ପ୍ରତି ସେ ଉଦାସୀନ ହୁଏ। ସେଥିରେ ତାହାର ମଙ୍ଗଳ ଛଡ଼ା ଅମଙ୍ଗଳର ଆଶଙ୍କା ନ ଥାଏ। କାରଣ ବିଧିବିଧାନର ଉଦ୍ଦେଶ୍ୟ ମନୁଷ୍ୟ ହୃଦୟକୁ କୁପଥରୁ ସୁପଥରେ ପରିଚାଳିତ କରି ଗନ୍ତବ୍ୟର ସନ୍ଧାନ ଦେବା। କିନ୍ତୁ ମନୁଷ୍ୟ ଯେତେବେଳେ ଅନୁରାଗପ୍ରବଣ ହୃଦୟ ନେଇ ରାଗମାର୍ଗରେ ପଦାର୍ପଣ କରେ, ସେ ଏପରି ଗୋଟିଏ ଉନ୍ନତତର ଅବସ୍ଥାର ସମ୍ମୁଖୀନ ହୁଏ, ଯେତେବେଳେ ତାହାର ବିପଥଗାମୀ ହେବାର ଆଉ ଆଶଙ୍କା ନ ଥାଏ। କାମ କ୍ରୋଧ ପ୍ରଭୃତିର ପ୍ରଲୋଭନ ତାହାକୁ ଲକ୍ଷ୍ୟଚ୍ୟୁତ କରି ପାରେ

ନାହିଁ । ସେ ସ୍ଥିରଲକ୍ଷ୍ୟ ହୋଇ ଏକଇ ପନ୍ଥା ଅବଲମ୍ବନ କରି ବାଞ୍ଛିତ ପଦବୀ ପ୍ରତି ପ୍ରଧାବିତ ହୁଏ । ସୁତରାଂ ବିଧାନର ଶୃଙ୍ଖଳରେ ଛନ୍ଦ ତାହାର ଅବାଧଗତିରେ ବାଧା ଦେବା ସମୀଚୀନ ନୁହେ । ସେ ରାଗମାର୍ଗର ପଥିକ; ତାହାର ଅନୁରାଗପ୍ରବଣ ହୃଦୟ ପ୍ରେମାନନ୍ଦ ରସରେ ଭରପୂର ଓ ସେ ଉନ୍ମାଦରେ ଆତ୍ମବିସ୍ମୃତ । ଏହାକୁ ରାଗମାର୍ଗର ସାଧନ ପ୍ରଣାଳୀ କହନ୍ତି । ରାଗମାର୍ଗର ସାଧକମାନେ ବିଧିମାର୍ଗର ନିୟମାବଳୀ ପ୍ରତି ଉଦାସୀନ ହେଲେହେଁ ଏକାବେଳକେ ଉଚ୍ଛୃଙ୍ଖଳତା ବରଣ କରନ୍ତି ଏପରି ଧାରଣା ଭ୍ରମାତ୍ମକ । କାରଣ ଅନୁରାଗପ୍ରବଣ ହୃଦୟ ଗୋଟିଏ ନବୀନ ପନ୍ଥାର ଅନୁସରଣ କରି ପୂର୍ଣ୍ଣ ସ୍ୱାତନ୍ତ୍ର୍ୟ ଉପଲବ୍ଧ କଲେ ସୁଦ୍ଧା କେବେହେଁ ବିପଥଗାମୀ ହୁଏ ନାହିଁ, କାରଣ ସେ ସ୍ଥିରଲକ୍ଷ୍ୟ; କୌଣସି ପ୍ରଲୋଭନରେ ପଡ଼ି ଲକ୍ଷ୍ୟଚ୍ୟୁତ ହେବାଭଳି ହୃଦୟଦୌର୍ବଲ୍ୟ ତାହାର ନାହିଁ । ସୁତରାଂ ଗୋଟିଏ ବରେଣ୍ୟ ପନ୍ଥା ବରଣ କରିଥିବାରୁ ସେ ପନ୍ଥାନୁକୂଳ ପ୍ରେମପ୍ରାବଲ୍ୟର ବଶବର୍ତ୍ତୀ ହୋଇ ପଡ଼େ । ସେହିପରି ଇଂରାଜୀରେ ଯାହାକୁ Classical Poetry କହାଯାଏ, ତାହା ଗୋଟିଏ ଶ୍ରେଣୀ ବା ସମ୍ପ୍ରଦାୟର ବିଧି ବିଧାନ ମାନି ଚଳେ । ମହାଜନୋ ଯେନ ଗତଃ ସ ପନ୍ଥାଃ । ସୁତରାଂ ତତ୍ ସମ୍ପ୍ରଦାୟର ଗୁରୁପରମ୍ପରାକୃତ ନିୟମାବଳୀ ବରଣ କରି କବି ସେହି ବିଧିବିଧାନ ଅନୁସାରେ ନିଜର ପ୍ରତିଭାକୁ ଗୃହୀତ କରେ । ଛନ୍ଦ, ବୃତ୍ତ, ଅଳଙ୍କାର, ବ୍ୟାକରଣ, ପ୍ରକାଶଭଙ୍ଗୀ ଓ ଅଭିବ୍ୟକ୍ତି ଶୈଳୀ ପ୍ରଭୃତି କାବ୍ୟକଳାର ଅଙ୍ଗ ପ୍ରତ୍ୟଙ୍ଗ ସବୁର ଉକ୍ତ ସମ୍ପ୍ରଦାୟରେ ଯେପରି ଚର୍ଚ୍ଚା ଓ ଅନୁଶୀଳନ କରା ହୋଇଛି, ସେ ମଧ୍ୟ ସେହି ସବୁ କଳାନୈପୁଣ୍ୟ ଅର୍ଜନ କରିବାର ଚେଷ୍ଟା କରେ । ପୂର୍ବ ପୂର୍ବ ଆଚାର୍ଯ୍ୟମାନଙ୍କ ସାଧନ-ପ୍ରଣାଳୀ ଅବିକୃତ ଅନୁକରଣ କରି ନିଜ ପ୍ରତିଭାର ଅନୁଶୀଳନ କରେ । ଏହି ଶ୍ରେଣୀ ବା ସମ୍ପ୍ରଦାୟର ଅନୁମୋଦିତ କାବ୍ୟକଳାକୁ ବିଧିମାର୍ଗର କାବ୍ୟକଳା ବା ବୈଧୀ କବିତା କହାଯାଏ । ନିୟମା-ନୁବର୍ତ୍ତିତା ମନୁଷ୍ୟର ସ୍ୱାଭାବିକ ଧର୍ମ ଥିବାରୁ ସେଥିରୁ ସୁଫଳ ଫଳିବାର

କଥା । କବି ଗୁରୁବରଣ କରି କୌଣସି ସମ୍ପ୍ରଦାୟରେ ଦୀକ୍ଷା ଗ୍ରହଣ କରି କାବ୍ୟକଳା ଚର୍ଚ୍ଚାରେ ପ୍ରଭୂତ ଉତ୍କର୍ଷ ଲାଭ କରେ ।

ତେବେ କେହି କେହି କହିବେ ଏଥିରେ ନିଜ ପ୍ରତିଭାର ମୌଳିକତା ରକ୍ଷା କରିବା କଠିନ ବା ଅସମ୍ଭବ । ପରମୁଖାପେକ୍ଷୀ ହୋଇ କବି କିପରି ତାଙ୍କର ନିଜ କଳ୍ପନା-ବ୍ୟୋମଯାନ ପରିଚାଳନ କରି ନିଜର ଗନ୍ତବ୍ୟପଥର ସନ୍ଧାନ ପାଇବେ ? ପ୍ରଥମ କଥା— କଳା ତଥା କାବ୍ୟକଳାର ଗନ୍ତବ୍ୟ ପଥ ସବୁ କବିଙ୍କ ପାଇଁ ଏକ— ସତ୍ୟ ଶିବକୁ ସୁନ୍ଦରର ରୂପରେ ତାଳ ହୃଦୟସ୍ପର୍ଶୀ କରିବା ହିଁ କଳାର ଲକ୍ଷ୍ୟ । ସୁତରାଂ ଉଦ୍ଦେଶ୍ୟ-ସାଧନର ପ୍ରଣାଳୀ ଯେବେ କିଛି ପାର୍ଥକ୍ୟ ଥିଲେ ଥାଇ ପାରେ । ଯେଉଁମାନେ ସେହିପରି ପ୍ରଣାଳୀ ଅନୁସରଣ କରି ନିର୍ଦ୍ଦିଷ୍ଟ ଲକ୍ଷ୍ୟ ସ୍ଥାନରେ ପହଞ୍ଚିଛନ୍ତି ତାଙ୍କ ପଦାଙ୍କ ଅନୁସରଣ କଲେ ବିପଥଗାମୀ ହେବାର ଆଶଙ୍କା ଖୁବ କମ । ଧ୍ରୁବ ପନ୍ଥତ୍ୟାଗ ଅଧ୍ରୁବ ସରଣୀ ବରଣ କରିବା ଅବିମୃଷ୍ୟକାରିତା ହୋଇ ପାରେ ଓ ବିପଦ୍‌ଜନକ ମଧ୍ୟ । ଦ୍ୱିତୀୟ କଥା, ଏଦ୍ୱାରା କବିଙ୍କର ମୌଳିକତା ହରାଇବାର ଆଶଙ୍କା ଥାଇ ପାରେ । କିନ୍ତୁ ମହାଜନମାନଙ୍କର ପଦାଙ୍କ ଅନୁସରଣ କରି ମଧ୍ୟ କବି ନିଜ ପ୍ରତିଭା ଅନୁଶୀଳନରେ ମୌଳିକତା ପ୍ରଦର୍ଶାଇବାର ଅନେକ ସୁବିଧା ପାଇବେ ।

ଜଣେ ସୁକଣ୍ଠ ଗାୟକ ସଙ୍ଗୀତକଳାର ଚର୍ଚ୍ଚା କରିବାକୁ ଯାଇ ଚିରାଚରିତ ପନ୍ଥାର ଅନୁସରଣ କରନ୍ତି । ସେ ପୂର୍ବ ରଚିତ ଗୀତ ଓ ପୂର୍ବରୁ ଚଳି ଆସୁଥିବା ରାଗ ରାଗିଣୀ ତାନମାନର ମର୍ଯ୍ୟାଦା ସଂରକ୍ଷଣ କରି ସଙ୍ଗୀତ ବିଦ୍ୟାର ଅନୁଶୀଳନ କରନ୍ତି । ତାଙ୍କର ମୌଳିକତା ରକ୍ଷା କରିବାକୁ ଯାଇ ସେ ନିଜେ ସଙ୍ଗୀତରଚନା କରନ୍ତି ନାହିଁ କି ନୂଆ ସୁର, ତାଳ, ରାଗ, ରାଗିଣୀର ଅବତାରଣା କରନ୍ତି ନାହିଁ । ତଥାପି ସେ ଯଦି ଖୁବ ଉଚ୍ଚାଙ୍ଗ ଗାୟକ ହୋଇଥାନ୍ତି ତାଙ୍କର ଉତ୍କର୍ଷ କଅଣ ଊଣା ପଡ଼ିବ ନାହିଁ ? ସେ ଯେଉଁ ଅତି ସୁପ୍ରଚଳିତ ଗୀତଟିଏ

ଅତି ପ୍ରାଚୀନ ସ୍ୱର ସାହାଯ୍ୟରେ ଗାଇବେ, ଅନ୍ୟ ଉଚ୍ଚ ଶ୍ରେଣୀ ନିକୃଷ୍ଟ ଧରଣର ଗାୟକ କଅଣ ତାଙ୍କ ପରି ଗାଇ ପାରିବ ? ତାଳ, ମାନ, ସ୍ୱର, ରାଗିଣୀ ଓ ଗୀତ ଏକ ହେଲେହେଁ ତାଙ୍କର ଗାନଶକ୍ତି ଅନ୍ୟ କେହି ଅନୁକରଣ କରି ସମ୍ପୂର୍ଣ୍ଣ କୃତକାର୍ଯ୍ୟ ହେବେ କି ? ତାଙ୍କର ସ୍ୱରକମ୍ପନ, ମୂର୍ଚ୍ଛନା ଓ ଗାଇବାର ଭଙ୍ଗୀ ଓ ସ୍ୱରକୁ ମୂର୍ତ୍ତିମାନ୍ କରିବାର କଳା-ନୈପୁଣ୍ୟ କଅଣ ଅନୁକରଣୀୟ ଯେ ଅନ୍ୟ କେହି ତାହା ସହଜରେ ନିଜର କରି ନେଇ ପାରିବେ ?

ଯେଉଁମାନଙ୍କର ଭାଷାର ଅଭିଧାନ ତ ସମ୍ମୁଖରେ ଥୁଆ ହୋଇଛି, ତାହାର ସମସ୍ତ ଶବ୍ଦ ତ ମୁଖସ୍ଥ କରାଯାଇ ପାରେ । ପାଣିନିର ବ୍ୟାକରଣ, ଅମର କୋଷର ପଦ୍ୟ ରଚନାରେ ନୃତ୍ୟ କରୁଛନ୍ତି, କାଳିଦାସଙ୍କ ନୌ-ଯୋଗରେ ବହୁତ ଥର ଦେଖି ଅଛି, ମେଘ ଦୂତ ଓ ବାଣୀ ବୃତ୍ତରେ ଆଉ ଗୋଟିଏ କବିତା ଆଉ କେହି ଲେଖି ପାରିବେ କି ? ତାଜମହଲ ତ ଦେଖି ଦେଖି ଲୋକ ପାଗଳ ହୋଇଗଲେଣି ; ଦୂରବୀକ୍ଷଣ, ଅଣୁବୀକ୍ଷଣ, ପରମାଣୁବୀକ୍ଷଣ ଦ୍ୱାରା କିଏ ଯେ କେତେଥର ଦେଖିଲେଣି ତାର ସୀମା ନାହିଁ । ରବୀନ୍ଦ୍ରନାଥଙ୍କ ଜବା-ଲକ୍ଷଣ କିଏ ଜାଣି ପାରିବ ? କିଏ ସେପରି କାଉଁରି ପରଶରେ ଇନ୍ଦ୍ରଜାଲ ସୃଜନ କରି, ଇନ୍ଦ୍ରଧନୁର ବର୍ଣ୍ଣ-ବୈଚିତ୍ର୍ୟକୁ ଫିକା କରି ଦେବ ? ଆକାଶରେ ନକ୍ଷତ୍ର ବରଂ ସୃଷ୍ଟି କରି ହେବ, କିନ୍ତୁ ରବୀନ୍ଦ୍ରନାଥଙ୍କ ଅନୁକରଣକାରୀ, ଅନୁକରଣକାରୀ ଓ ଅନୁସରଣକାରୀଙ୍କ ସଂଖ୍ୟା କଳନା କରିବା ଅସମ୍ଭବ । ତାହିଁ ଆଉ ଗୋଟିଏ ତ ସେପରି ନୂତନ ସୃଷ୍ଟି କରିବା ଭଳି କବିମାନଙ୍କର ଆବିର୍ଭାବ ହେଉନାହିଁ ? ଈଗଲ୍ ପକ୍ଷୀଟିଏ ଚାଲୁ ମାରି ଗୋଟିଏ ମେଣ୍ଢାକୁ ଚଞ୍ଚୁରେ ଉଠାଇ ନେଇଯିବାର ଦେଖି, ଡାମରା କୁଆ ମଧ୍ୟ ସେହିପରି ଦୁଃସାହସ କରିବାକୁ ଯାଇ କପରି ପ୍ରାଣସଙ୍କଟରେ ପଡ଼ି ବିକଟ ଚିତ୍କାର କରିଥିଲା, ତାହା କେବଳ ତାହାର ସୃଷ୍ଟିକର୍ତ୍ତାଙ୍କୁ ଗୋଚର ।

ଚର୍ବିତଚର୍ବଣ ଗତାନୁଗତିକତାର ଅନୁକରଣରେ କିମ୍ବା ମହାଜନମାନଙ୍କ ପଦାଙ୍କ ଅନୁସରଣରେ ପ୍ରକୃତିଶାଳୀ କବିଙ୍କର ମୌଳିକତା ହ୍ରାସ

ନ ହୋଇ ବରଂ ଲୋକପ୍ରିୟ ହୋଇ ପାରେ । ବିଶ୍ୱକବି ସେକ୍‌ସପିଅର ଗତମାର୍ଗାନୁମୋଦିତ ନାଟ୍ୟରୀତିର ପ୍ରଚଳନ କରିବାକୁ ଯାଇ ପୂର୍ବ ପୂର୍ବ ମହାପୁରୁଷଙ୍କ ସମ୍ପ୍ରଦାୟକୁ ଗୁରୁ କରଣପୂର୍ବକ ଦୀକ୍ଷା ଗ୍ରହଣ କରିଥିବାର ଶୁଣାଯାଏ । ତେବେ ତାହା ପ୍ରତିଭା ସାପେକ୍ଷ, ମାର୍ଗ ସାପେକ୍ଷ ନୁହେ ।

ପୁଣି ବିଧିମାର୍ଗର କବି ନିଜର ପ୍ରତିଭାବଳରେ ଆଦର୍ଶବାଦୀ, ବାସ୍ତବବାଦୀ, ରହସ୍ୟବାଦୀ, ଛାୟାବାଦୀ, ମାୟାବାଦୀ, ଅଭିବ୍ୟକ୍ତି-ବାଦୀ, ପ୍ରତୀକବାଦୀ, ମିଥ୍ୟାବାଦୀ ଓ ସତ୍ୟବାଦୀ ଏମନ୍ତ କି କେବଳ ସାକ୍ଷୀଗୋପାଳ ମଧ୍ୟ ହୋଇ ପାରନ୍ତି । ଏହା ମାର୍ଗଗତ ପାର୍ଥକ୍ୟ ନୁହେ, ଏହା ଶକ୍ତିଗତ ପାର୍ଥକ୍ୟ ମାତ୍ର । ଯେ ଯେଉଁ ଦିଗରେ ପ୍ରତିଭା ଚାଳିତ କରି ପାରିବ, ସେ ସେ ଦିଗରେ କୃତିତ୍ୱ ଅର୍ଜନ କରିବ; ବିଧିମାର୍ଗର ବିଧିବିଧାନ ସେଥିରେ ବାଧା ଦେବ ନାହିଁ । କଳନାବିଳାସ, ରସପୁଷ୍ଟି, ସୌନ୍ଦର୍ଯ୍ୟାନୁଭୂତି, ଅଭିବ୍ୟକ୍ତିନୈପୁଣ୍ୟ, ରସପରିବେଶନର ସୌନ୍ଦର୍ଯ୍ୟ ସମସ୍ତହିଁ ବିଧିମାର୍ଗର ସୀମାବନ୍ଧନରେ ସମ୍ଭବପର । ଏଥିରେ ଉଦ୍ଦାମ ସ୍ୱେଚ୍ଛାଚାରିତାର ସ୍ଥାନ ନାହିଁ । ବିଧିମାର୍ଗ କୌଣସି ପ୍ରକାରର ଉଚ୍ଛୃଙ୍ଖଳାକୁ ପ୍ରଶ୍ରୟ ଦିଏ ନାହିଁ । ଭାଷା, ଭାବ, ଶୈଳୀର ପ୍ରତ୍ୟେକ ପଦକ୍ଷେପରେ ସଂଯମର ବ୍ୟବସ୍ଥା ଅଛି ।

ତଥାପି ଜଣେ ଅତି ପ୍ରତିଭାଶାଳୀ କବି ଚିରାଚରିତର ପରିସ୍ଥିତିକୁ ସଙ୍କୀର୍ଣ୍ଣ ଓ ସୀମାବଦ୍ଧ ମନେ କରି ପାରେ । ନବୀନତାର ମୋହରେ ପଡ଼ି ସେ ପୁରାତନ ବାତାବରଣକୁ ସ୍ୱାସ୍ଥ୍ୟକର ମନେ ନ କରି ପାରେ । ଏପରି କ୍ଷଣଜନ୍ମା ପ୍ରତିଭାଶାଳୀ ଲେଖକ କ୍ୱଚିତ୍ ଆବିର୍ଭୂତ ହୁଅନ୍ତି । ତେବେ ଅନନ୍ତ ବିଶ୍ୱ ବ୍ରହ୍ମାଣ୍ଡର ପ୍ରକାଣ୍ଡତ୍ୱ ଦୃଷ୍ଟିରେ ତାହା ଏକାବେଳକେ ଅସମ୍ଭବ ନୁହେ । ରବୀନ୍ଦ୍ରନାଥ ତ ପ୍ରତିବେଶୀ ଓ ଆମ୍ଭମାନଙ୍କର ଭିତ୍ତି ଅନ୍ତରଙ୍ଗ । ସେ ଅବଶ୍ୟ ଚିରାଚରିତ ଗତାନୁଗତିକତାକୁ ନାପସନ୍ଦ କରିବାର ନାନା କାରଣ ଦେଖିବାକୁ ପାଇଲେ । ବଙ୍ଗଦେଶର ପ୍ରଚଳିତ ରୀତି ତାଙ୍କର ମନଃପୂତ ହେଲା ନାହିଁ । ଏ କଥା ମୁଁ ଅନ୍ୟତ୍ର

କରୁ ସାରିଛି । ତେଣୁ ସେ କବୀନପନ୍ଥାର ଅବିଷ୍କାର ଜଲେ । କାବ୍ୟକଳାକୁ ନବୀନ ଛାଞ୍ଚରେ ଢାଳିଲେ ଏବଂ ପୂର୍ଣ୍ଣ ସାଫଲ୍ୟମଣ୍ଡିତ ହେଲେ ।

ସେ କିନ୍ତୁ ପୁରାତନକୁ ଏକାବେଳକେ ବର୍ଜନ କରି ନାହାନ୍ତି ବା ପ୍ରାଚୀନର ଧ୍ୱଂସାବଶେଷ ଉପରେ ନିଜର କଳାକୃତିରୂପ ତାଜମହଲ ଗଢ଼ି ନାହାନ୍ତି । ତାଙ୍କର 'କବିତାର ଉପଜୀବ୍ୟ ବିଷୟ ଓ ତାହାର ବର୍ଣ୍ଣବିନ୍ୟାସ (Poetic diction) ଏବଂ ରଚନାଶୈଳୀ ( style ) ଏବଂ ଛନ୍ଦୋବୃତ୍ତ ପ୍ରଭୃତି ( versification ) ଯେଉଁ ଅଭେଦ ବ୍ୟକ୍ତିକକ୍ଷେତ୍ର ଜନ ଦେଖାଯିବ ଯେ ବୈଷ୍ଣବକବିତାର ଉପଜୀବ୍ୟ ବିଷୟ ଏବଂ ସର୍ବଦର୍ଶନର ସାରନିର୍ଯ୍ୟାସରେ ଓ ବଙ୍ଗଦେଶର ପୁରପଲ୍ଲୀସୁଲଭ ତଗ ତପାଳୀର ଛନ୍ଦ ଓ ବୃତ୍ତ ସାହାଯ୍ୟରେ ଯେଉଁ ଉପାଦେୟ କାବ୍ୟରସ ସୃଷ୍ଟି କଲେ, ତାହା କାବ୍ୟଜଗତରେ ଅତୁଳନୀୟ ହେଲା । ସେ ଚିରାଚରିତ ପନ୍ଥାକୁ ବର୍ଜନ କରି ନବୀନ ପଥ ପ୍ରଦର୍ଶନ କଲେ । ତାଙ୍କର ପ୍ରତ୍ୟେକ ବିଷୟରେ ଅଭିନବତ୍ୱର ବିକାଶ ଦେଖି ଲୋକେ ଚମତ୍କୃତ ହେଲେ । ସେ ଯେ ରାଗମାର୍ଗର ସର୍ବପ୍ରଧାନ ପୁରୋଧାରୂପେ ଆଜି ବିଶ୍ୱ ସାହିତ୍ୟ ଉପରେ ପ୍ରଭୂତ ପ୍ରଭାବ ବିସ୍ତାର କରୁଛନ୍ତି, ଏଥିରେ ସନ୍ଦେହ ନାହିଁ

ରାଗମାର୍ଗର ଏକମାତ୍ର ସନ୍ତକ ହେଉଛି ଗତାନୁଗତିକତାର ବିରୋଧ ( Protest against convention ) ପ୍ରାଚୀନ ବିଧିବିଧାନର ଅବମାନନା—ସର୍ବବିଧ ପୁରାତନ ଶୃଙ୍ଖଳର ଛେଦନ—ନବୀନତାର ବରଣ । ଏଥିରୁ ଏପରି ମନେ କରିବା ଯୁକ୍ତିସଙ୍ଗତ ନୁହେ ଯେ ରାଗମାର୍ଗର କବି ସର୍ବବିଧ ଅନୀତି ଓ ଅବିଧିର ପୃଷ୍ଠପୋଷକ ଓ ଉଚ୍ଛୃଙ୍ଖଳାର ପ୍ରଶ୍ରୟଦାତା ବା ସ୍ୱେଚ୍ଛାଚାରିତାର ସମର୍ଥନକାରୀ । ରାଗମାର୍ଗରେ ଅରାଜକତା ନାହିଁ, କି ସ୍ୱେଚ୍ଛାଚାରିତା ନାହିଁ, ବା କୌଣସି ପ୍ରକାରର ଅସାମଞ୍ଜସ୍ୟ ଓ ଅସମନ୍ୱୟ ନାହିଁ ।

ତେବେ ଏହା ଗୋଟାଏ ଅଭିନବତ୍ୱର ଅଭିବ୍ୟକ୍ତି ମାତ୍ର—ଗୋଟାଏ ସୁରୁଚିସମ୍ପନ୍ନ ନବୀନତାର ଆବିଷ୍କାର। କିନ୍ତୁ ଲୋକେ ଏହାକୁ ଉଚ୍ଛୃଙ୍ଖଳତା ନାମରେ ପ୍ରଖ୍ୟାତ କରିବାକୁ ଚାହାନ୍ତି। କାବ୍ୟକଳା ଲଳିତକଳାମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ। ଯାହା କଳାନୁମୋଦିତ ତାହା କି କେବେ ବିକଳାଙ୍ଗ ହୋଇ ପାରେ ? କଳା ଯଦି ସୌନ୍ଦର୍ଯ୍ୟର ଆରାଧନା ହୁଏ ଓ କବି ଯଦି ଚିରସୁନ୍ଦରଙ୍କ ଉପାସକ ହୁଅନ୍ତି, ଯାହା ସୁନ୍ଦର, ଯାହା ଚିରସୁନ୍ଦର, ସେଥିରେ ଉଚ୍ଛୃଙ୍ଖଳତାର ଲେଶମାତ୍ର ଥାଇ ପାରେ କି ? ନୀତି, ବିଧି, ସଂଯମକୁ ଅତିକ୍ରମ କରି ସୌନ୍ଦର୍ଯ୍ୟର ଅଧିଷ୍ଠାନ ସମ୍ଭବପର କି ? ନୀତି, ବିଧି, ସଂଯମ ଓ ଶୃଙ୍ଖଳାକୁ ଗୌରବାନ୍ୱିତ ଓ ମହନୀୟ କରି ସୌନ୍ଦର୍ଯ୍ୟର ପ୍ରାଣ-ପ୍ରତିଷ୍ଠା। ଅନେକେ ଭ୍ରାନ୍ତ ଧାରଣାର ବଶବର୍ତ୍ତୀ ହୋଇ Romantic ବା ରାଗାନୁଗା ପ୍ରଣାଳୀକୁ ଭାବୀ ଉଦ୍‌ଭ୍ରାନ୍ତ ଉଚ୍ଛୃଙ୍ଖଳତାର ପରିପୋଷକ ମନେ କରନ୍ତି।

କବି କହୁଛନ୍ତି—

“ଅସଂଖ୍ୟ ବନ୍ଧନମାଝେ ମହାନନ୍ଦମୟ ଲଭିବ ମୁକ୍ତିର ସ୍ୱାଦ।” ସେ ଏଥିରେ ନାଗରିକ-ଶୃଙ୍ଖଳାଭଙ୍ଗାପରାଧରେ କାରାବରଣରୂପ ଅସଂଖ୍ୟ ବନ୍ଧନରୁ ମୁକ୍ତିଲାଭ କରିଥିବାର କଥା କହୁ ନାହାନ୍ତି। ସେ କହୁଛନ୍ତି, ଅସଂଖ୍ୟ ବନ୍ଧନ ମଧ୍ୟରେହିଁ ମୁକ୍ତି; ଅସଂଖ୍ୟ ଶୃଙ୍ଖଳରେ ରହି ମୁକ୍ତି ସାଧନ କରିବାହିଁ ଆନନ୍ଦଦାୟକ। ସେ କବି। ସୁତରାଂ ତାଙ୍କର କବିଜୀବନରେ ଏହା ଆଚରଣ କରି ସେ ଦେଖାଇଦେଲେ। ପୁରାତନର ଲୌହଶୃଙ୍ଖଳ ପରିବର୍ତ୍ତରେ ନବୀନର ସୁବର୍ଣ୍ଣଶୃଙ୍ଖଳମାନ ପରିଧାନପୂର୍ବକ କାବ୍ୟକଳାକୁ ପୂର୍ଣ୍ଣସାଫଲ୍ୟମଣ୍ଡିତ କଲେ; ତାଙ୍କର କଳ୍ପନାବିହଙ୍ଗ ଏହି ସୁବର୍ଣ୍ଣପିଞ୍ଜରକୁ ମହାନନ୍ଦରେ ବରଣ କରି ମୁକ୍ତ—ବାତାବରଣ—ବିଚରଣସୁଖ ଆସ୍ୱାଦନ କଲା। ଏହାହିଁ କଳାନୈପୁଣ୍ୟ, ଏହାହିଁ ପ୍ରତିଭା—ଏହାହିଁ ରାଗାନୁଗା କାବ୍ୟକଳା। ଉଚ୍ଛୃଙ୍ଖଳତାର ଗନ୍ଧଲେଶ ଏଥିରେ ନାହିଁ; ଯଥେଚ୍ଛାଚାରିତାର ଅନଧିକାରପ୍ରବେଶ କଳାରାଜ୍ୟରେ କଳ୍ପନାତୀତ।

ଏପରି ସର୍ବାଙ୍ଗସୁନ୍ଦର ଅନବଦ୍ୟ କଳାକୃତି ପୃଥିବୀର ଅନ୍ୟ କୌଣସି ସାହିତ୍ୟକ୍ଷେତ୍ରରେ ନିତାନ୍ତ ବିରଳ । କବି ଏକାଧାରରେ ଦାର୍ଶନିକ ଓ ବେଦାନ୍ତୀ ଓ ସୌନ୍ଦର୍ଯ୍ୟର ଶ୍ରେଷ୍ଠ ଉପାସକ ଏବଂ ପ୍ରକୃତିରାଣୀଙ୍କ ପଞ୍ଚମମୋହିତ ଓ ସଙ୍ଗୀତରାଜ୍ୟର ଗଳକଣ୍ଠ କୋକିଳ । ସୁତରାଂ ସତ୍ୟ-ଶିବ-ସୁନ୍ଦରଙ୍କ ପ୍ରାଣପ୍ରତିଷ୍ଠାରେ ତାଙ୍କର ଯେପରି ଅଧିକାର, ସଚ୍ଚିଦାନନ୍ଦ ବିଗ୍ରହଙ୍କ ଉପାସନାରେ ତାଙ୍କର ଯେପରି ନିଷ୍ଠା, ବାଗ୍‌ଦେବୀଙ୍କ କରଧୃତବୀଣା ବଜାଇ ବିଶ୍ୱବିମୋହିନୀ ରାଗିଣୀ ଆଳାପନରେ ସେ ଯେପରି ସିଦ୍ଧହସ୍ତ ଓ ନିଖିଳପ୍ରାଣସ୍ପର୍ଶୀ ମଧୁର ସଙ୍ଗୀତ ଗନୋଦନରେ ସେ ଯେପରି କଳକଣ୍ଠ ତାହା ବିଶ୍ୱସାହିତ୍ୟ-କ୍ଷେତ୍ରରେ ଅତୁଳନୀୟ । ଏହା ଭାରତର କମ ଗୌରବର କଥା ନୁହେ । ତେଣୁ ତାଙ୍କର ସ୍ତାବକମଣ୍ଡଳୀ ଆଜି ସାରା ପୃଥିବୀମୟ; କବି ହିସାବରେ ସେ ଗୋଟିଏ ନବଯୁଗର ପ୍ରବର୍ତ୍ତକ; ସେ ଆଧୁନିକ ରାଗାନୁଗା ପ୍ରଣାଳୀର ପ୍ରାଣପ୍ରତିଷ୍ଠା କରି ଗୋଟିଏ ଅଭିନବ ଶୈଳୀର ପ୍ରସ୍ତୁତକ । ତେଣୁ ଅନେକେ ତାଙ୍କ ପବିତ୍ର ପଦାଙ୍କ ଅନୁସରଣ କରି ଲେଖନୀ ଧାରଣ କରିଅଛନ୍ତି । ତାଙ୍କପରି କ୍ଷଣଜନ୍ମା ମହାପୁରୁଷ କାବ୍ୟଜଗତରେ ପୁଣି କେତେଯୁଗ ପରେ ଅବତୀର୍ଣ୍ଣ ହେବେ କିଏ ଜାଣେ । ତେଣୁ ତାଙ୍କର ବାହୁଚ୍ଛାୟା ତଳେ ବସି ତାଙ୍କ ଶ୍ରୀଚରଣରେଣୁକଣା ପାଇ ଯେଉଁମାନେ ବାଗ୍‌ଦେବୀଙ୍କର ସାଧନାରେ ଦିନ ଯାପନ କରନ୍ତି, ସେମାନଙ୍କର ଲେଖନୀଧାରଣ ସାର୍ଥକ ଓ ସେମାନେ ମଧ୍ୟ ଧନ୍ୟ ।

ରବୀନ୍ଦ୍ରନାଥ ରାଗାନୁଗା ଶୈଳୀର ପ୍ରବର୍ତ୍ତକ ହିସାବରେ ତାଙ୍କର ଅନ୍ତେବାସୀମାନେ ମଧ୍ୟ ରାଗାନୁଗା ପ୍ରଣାଳୀର ସାଧକ ବୋଲି କହିବାକୁ ହେବ । ସେମାନଙ୍କର କାବ୍ୟକଳାରେ ତାଙ୍କର ପ୍ରବର୍ତ୍ତିତ ରାଗାନୁଗା କାବ୍ୟକଳାର ଛାୟା ପଡ଼ୁଥିବାରୁ ସେମାନଙ୍କୁ ରାଗମାର୍ଗର କବି ବା ଲେଖକ ନ କହି କଅଣ କୁହାଯିବ ?

କିନ୍ତୁ କଥାଟା ଟିକିଏ ତଳେଇ ଦେଖିଲେ ବୁଝାଯିବ ଯେ ରବୀନ୍ଦ୍ରନାଥଙ୍କ ପଦାଙ୍କ ଅନୁସରଣ କରି ଯେଉଁମାନେ ତାଙ୍କ ପ୍ରବର୍ତ୍ତିତ ବିଧି ବିଧାନକୁ ମାନି ଚଳନ୍ତି ଓ ତାଙ୍କର ପ୍ରଣାଳୀର ସୀମା ଲଙ୍ଘନ କରିବାକୁ

ସାହସ କରନ୍ତି ନାହିଁ, ସେମାନେ କିପରି ରୀତିମାର୍ଗର କବି ବୋଲାଇବେ ? ରୀତିମାର୍ଗର ସର୍ବପ୍ରଧାନ ବୈଶିଷ୍ଟ୍ୟ ପ୍ରଚଳିତ ବିଧିବିଧାନ ଓ ନିୟମ କାନୁନର ପ୍ରତିକୂଳାଚରଣ କରି ନବୀନ ଶୈଳୀର ପ୍ରବର୍ତ୍ତନ । ଏମାନେ ତ କିଛି ନୂତନ ଶୈଳୀର ଆବିଷ୍କାର କରନ୍ତି ନାହିଁ କି ନବ-ବିଧାନ ମଧ୍ୟ ପ୍ରସ୍ତୁତ କରି ନାହାନ୍ତି । ଏମାନେ ତ ମହାଜନନିର୍ଦ୍ଦେଶିତ ମାର୍ଗର ଅନୁସରଣ ମାତ୍ର କରନ୍ତି ; ତେବେ ଏମାନଙ୍କର ରୀତିମାର୍ଗମୂଳକ ନବୀନତାର ପ୍ରତି ଆସକ୍ତି କାହିଁ ବା ନବୀନ ପନ୍ଥାମୂଳକ ସ୍ୱତନ୍ତ୍ରତା କାହିଁ ? ସୁତରାଂ ଏମାନେ କେଉଁ ହିସାବରେ ରୀତାନୁଗା ପ୍ରଣାଳୀର କବି, ବୁଝିବା କଠିନ ।

କବିସୂର୍ଯ୍ୟ ଓ ରାଧାନାଥଙ୍କ ପୂର୍ବବର୍ତ୍ତୀ ଯମକବହୁଳ ଉପେନ୍ଦ୍ର ଯୁଗକୁ ଲୋକେ ବୈଧୀ କବିତାର ( classical ) ଯୁଗ ବୋଲି କହୁଥିଲେ ; କାରଣ ସମସ୍ତେ ପ୍ରାୟ ଉପେନ୍ଦ୍ର ଓ ଦୀନକୃଷ୍ଣ ପ୍ରଭୃତି ପ୍ରାଚୀନ କବିଙ୍କ ପଦାଙ୍କ ଅନୁସରଣ କରି ଅନୁକରଣମୂଳକ ସଙ୍କୀର୍ଣ୍ଣ ମନୋବୃତ୍ତିର ତଥା ସୀମାବଦ୍ଧ କଳ୍ପନାବିଳାସର ପରିଚୟ ଦେଉଥିଲେ । ଶବ୍ଦାଳଙ୍କାରସୃଷ୍ଟିହିଁ କାବ୍ୟକଳାର ଏକମାତ୍ର ଲକ୍ଷଣ ଥିଲା । କିନ୍ତୁ କବିସୂର୍ଯ୍ୟ, ରାଧାନାଥ ମଧୁସୂଦନ, ନନ୍ଦକିଶୋର, ଗଙ୍ଗାଧର ପ୍ରଭୃତି ଲେଖକମାନେ କବିତାରେ ଆଧୁନିକ ରୁଚିର ଅନୁକୂଳ ଶ୍ଳୀଳତା, ଭବ୍ୟତା ଓ ସରସତାର ଆମଦାନୀ କରି ଗୋଟିଏ ନବ-ଯୁଗର ପ୍ରବର୍ତ୍ତନ କଲେ । ରାଧାନାଥ ଯୁଗରେ ମଧ୍ୟ ଅନୁଚିକୀର୍ଷା ପ୍ରବୃତ୍ତି ସୀମା ଲଙ୍ଘନ କଲା । କେହି କେହି ରାଧାନାଥଙ୍କ ପଦାଙ୍କ ଅନୁସରଣ କରିବାକୁ ଯାଇ ତାଙ୍କ ପାଖରେ ଛାୟା ପରି ଲାଗି ରହିଲେ ; ତେଣୁ ଅନେକ ସ୍ଥଳରେ କିଏ ଛାୟା କିଏ ମାୟା ବାରି ହେଲା ନାହିଁ । ସୁତରାଂ ଉପେନ୍ଦ୍ର ଯୁଗ ତୁଳନାରେ ରାଧାନାଥ ଓ କବିସୂର୍ଯ୍ୟଙ୍କ କବିତାକୁ ରୀତିମାର୍ଗର କବିତା ମନେ କରାଗଲା । ପୁଣି ରାଧାନାଥଙ୍କ ଅନୁକରଣ ବହୁଳ ପ୍ରସାର ଲାଭ କରିବାରୁ ତାଙ୍କର ଅନୁକରଣକାରୀମାନଙ୍କୁ ଅତି ରୀତିମାର୍ଗର ଲେଖକ ଜନ୍ମ ହେଲା ନାହିଁ । ସେମାନେ ରାଧାନାଥଙ୍କ ପ୍ରଚଳିତ ବିଧିବିଧାନକୁ ଶିରୋଧାର୍ଯ୍ୟ କରି ତାଙ୍କର ଛାୟା ତଳେ ବସି

ଲେଖକୀ ଗ୍ରହଣ କଲେ । ତେବେ ସେମାନଙ୍କୁ ବିଧିମାର୍ଗର ଲେଖକ କହିବାହିଁ ଯୁକ୍ତିଯୁକ୍ତ ହେଲା ।

ଏହି ସମୟରେ ପୁଣି ସବୁଜ କବିତାର ପ୍ରଚଳନ ଏବଂ ରବୀନ୍ଦ୍ର ଯୁଗର ନବଶୈଳୀର ପ୍ରବର୍ତ୍ତନକୁ ଲୋକେ ରାଗମାର୍ଗାନୁମୋଦିତ କାବ୍ୟକଳା ବୋଲି ଅଭିନନ୍ଦନ କରିବାକୁ ଲାଗିଲେ ; ଉକ୍ତ ଶୈଳୀର ଉତ୍କଟ ନବୀନତା ଆଗରେ ରାଧାନାଥ ଯୁଗର କବିତା ଭାରି ପୁରୁଣାକାଳିଆ ଓ ହତଶ୍ରୀ ଦିଶିଲା । କେହି କେହି ନବୀନତାର ମଦିରା ପାନ କରି ଏପରି ଭୋଳ ହୋଇପଡ଼ିଲେ ଯେ ଉପେନ୍ଦ୍ର ଯୁଗର କବିତା, ତଥା କବିସୂର୍ଯ୍ୟ, ରାଧାନାଥ, ଅଭିମନ୍ୟୁ ପ୍ରଭୃତିଙ୍କ କାବ୍ୟରଚନାକୁ ଶମ୍ଭୁ ଡ ସମାକାର ମନେ କରି ବସିଲେ । କେହି କେହି କଳ୍ପନା ସୁଦ୍ଧା କରି ପାରିଲେ ନାହିଁ— ପ୍ରାଚୀନ ଉତ୍କଳ କପରି ବା ଉପେନ୍ଦ୍ର ଭଞ୍ଜଙ୍କୁ କବିବର ଆଖ୍ୟା ଦେଇଥିଲେ । ସୁତରାଂ ସେମାନେ ରାଧାନାଥ ଯୁଗର କବିତାକୁ ଅତି ନିକୃଷ୍ଟ ବୈଧୀ ଆଖ୍ୟା ଦେଇ ତାହାଠାରୁ ନିମ୍ନପଦ ସ୍ଥାନରେ ରହିବାକୁ ଲଦିଲେ ।

ଏପରି ସ୍ଥଳରେ ରବୀନ୍ଦ୍ରନାଥଙ୍କ ପଦାଙ୍କ ଅନୁସରଣକାରୀ ଅନୁକରଣ-କାରୀମାନଙ୍କୁ ବିଧିମାର୍ଗର କବି କହିବାହିଁ ଯୁକ୍ତିସଙ୍ଗତ ହେବ । ସେମାନଙ୍କ କାବ୍ୟକଳାରେ ତ ରାଗମାର୍ଗମୂଳକ ନବୀନତାର ପ୍ରବର୍ତ୍ତନ କମ୍ବା ବିପ୍ଳବ-ବାଦର ଲକ୍ଷଣ ସୁଦ୍ଧା ନାହିଁ ; କେବଳ ଗତାନୁଗତିକତାହିଁ ସାର । ତେବେ କେଉଁଥିରେ ପୁଣି ସେ ତଥିରେ ନ କହି କଅଣ କହିବା ? ନୂତନ ଶୈଳୀ ନାହିଁ, ନୂତନ ଛନ୍ଦ ନାହିଁ, ନୂତନ ମେରୁ ନାହିଁ, ନୂତନ ରଙ୍ଗ ନାହିଁ, ନୂତନ ତୂଳୀ ନାହିଁ । ନୂତନ ଭାବ ଓ ନୂତନ ମୂର୍ତ୍ତି ତ ଦୂରର କଥା । ଏପରି ସର୍ବତୋଭାବେ ପରମୁଖାପେକ୍ଷୀ ହୋଇ କବିନାମଜ୍ଞୀ ନ ବୋଲାଇ, ନାନ୍ୟପନ୍ଥୀ ବୋଲାଇବାହିଁ ଉଚିତ ।

ପ୍ରକାଶ ଥାଉ କି—ବିଧିମାର୍ଗ ଓ ରାଗମାର୍ଗ ବିଷୟରେ ଓ ସେମାନଙ୍କ ପାର୍ଥକ୍ୟ ବିଷୟରେ ଯାହା ଯାହା କୁହାଗଲା ତାହା ବ୍ୟବହାରପକ୍ଷ ସବୁର ବ୍ୟବସ୍ଥା ମାତ୍ର । ପୁଣି ଦେଶାଗ୍ରର ଓ ପ୍ରଚଳିତ ପ୍ରଥାର ମର୍ଯ୍ୟାଦା ଲଙ୍ଘନ ନ କରିବାହିଁ ବାଞ୍ଛନୀୟ । ଘଟଣାକ୍ରମେ କୌଣସି କୌଣସି ସାହିତ୍ୟରେ

ରାଗମାର୍ଗର ଲେଖକମାନେ ଅଧିକ କଳ୍ପନାବିଳାସୀ ଓ ଅନୁରାଗପ୍ରବଣ ହୋଇ ପଡ଼ିଥିବାରୁ ଓ ସେମାନଙ୍କର ସାହିତ୍ୟରେ ଉନ୍ମାଦନାର ପ୍ରାବଲ୍ୟ ଲକ୍ଷିତ ହୋଇଥିବାରୁ ଲୋକେ ମନେ କରନ୍ତି ରାଗମାର୍ଗହିଁ କଳ୍ପନାବିଳାସ ଓ ଅନୁରାଗପ୍ରବଣତାଜନିତ ଉନ୍ମାଦନାର ଉର୍ବର କ୍ଷେତ୍ର । କିନ୍ତୁ ବିଧି-ମାର୍ଗର କବିଙ୍କ ସେପରି କଳ୍ପନାବିଳାସୀ ବା ଉନ୍ମାଦନାପ୍ରିୟ ହେବାରେ କେହି ନିଷେଧ ଆଜ୍ଞା ଜାରି କରି ନାହିଁ । ସେହିପରି ଆଉ ଗୋଟିଏ ଆନୁସଙ୍ଗିକ ଧାରଣା ଏହି ଯେ କେବଳ ରାଗମାର୍ଗହିଁ ରହସ୍ୟବାଦ, ସ୍ୱପ୍ନ-ବାଦ, ଅତୀନ୍ଦ୍ରିୟବାଦ ଓ ଆଧ୍ୟାତ୍ମବାଦର ପୂର୍ଣ୍ଣ ବିକାଶ ପାଇଁ ପ୍ରଶସ୍ତ । ବିଧିମାର୍ଗର ସଙ୍କୀର୍ଣ୍ଣତା ଏସବୁ ବାଦ ବିସମ୍ବାଦର ପ୍ରଶସ୍ତ କ୍ଷେତ୍ର ନୁହେଁ । ଏ ଧାରଣା ମଧ୍ୟ ଯୁକ୍ତିଯୁକ୍ତ ନୁହେଁ । ବିଧିମାର୍ଗର କବି ପ୍ରୁସ୍ତ ମାନଙ୍କର ରହସ୍ୟବାଦୀ ହୋଇଥିବାର ଏକାଧିକ ନମୁନା ଅଛି । ଅତୀନ୍ଦ୍ରିୟବାଦ ଓ ଅଧ୍ୟାତ୍ମବାଦ ମଧ୍ୟ ତଦ୍ରୂପ କୌଣସି ମାର୍ଗର ଅପେକ୍ଷା କରେ ନା, ତାହା କେବଳ ସାହିତ୍ୟିକର ରୁଚି ଓ ପ୍ରକୃତିର ଅପେକ୍ଷା କରେ । ପୁଣି ଉଚ୍ଛୃଙ୍ଖଳତା ବା ଯଥେଚ୍ଛାଚାରିତା ବା ନିରଙ୍କୁଶ କଳ୍ପନାବିଳାସ କଳାନୁମୋଦିତ ନ ହେବାରୁ କୌଣସି ମାର୍ଗର ଲକ୍ଷଣ ନୁହେଁ, କି ଗୁଣ ନୁହେଁ । ଏହା ଦୋଷ ଓ କଳା-ବିକାଶର ପ୍ରତିବନ୍ଧକ ମାତ୍ର । ଦେଶାନ୍ତରର ଅନୁରୋଧରେ ଲୋକେ ଏପରି ଭ୍ରାନ୍ତ ଧାରଣାର ପୋଷକତା କରନ୍ତି ମାତ୍ର ।

ବିଧିମାର୍ଗର କବିମାନେ ସଚରାଚର ରହସ୍ୟବାଦୀ କିମ୍ବା ଅତୀନ୍ଦ୍ରିୟ-ବାଦୀ ହୁଅନ୍ତି ନାହିଁ ବା ଏପର୍ଯ୍ୟନ୍ତ ହୋଇ ନାହାନ୍ତି । ହେଲେ କିନ୍ତୁ ବାଧା ତ କିଛି ନାହିଁ । ଏହା ପୁଣି ବସ୍ତୁତଃ ସତ୍ୟ ନୁହେଁ; ବୋଧହୁଏ ବୁଝିବାର ଭ୍ରମ ମାତ୍ର ।

ପୁଣି ଟିକିଏ ବିଶଦ କରି କଥାଟା ଆଲୋଚନା କରି ଦେଖାଯାଉ—ବିଧିମାର୍ଗରେ ପ୍ରଚଳିତ ବିଧିବିଧାନ ଓ ଚିରାଚରିତ ରୀତିନୀତିକୁ ଅତିକ୍ରମ କରି ଗୋଟିଏ ନବୀନ ସଂସ୍କାର ଯୋଜନାହିଁ ରାଗମାର୍ଗର ଲକ୍ଷଣ । କବିତାର ଉପଜୀବ୍ୟ ବିଷୟରେ ହେଉ କିମ୍ବା ବର୍ଣ୍ଣିବା ବାକ୍ୟବିନ୍ୟାସରେ ହେଉ; ଛନ୍ଦୋବୃତ୍ତି ପ୍ରକୃତିରେ ହେଉ ବା ଶୈଳୀର ପ୍ରକାରଭଙ୍ଗୀ ଏବଂ ଅଭିବ୍ୟକ୍ତି

ଛନ୍ଦରେ ହେଉ, ଗୋଟିଏ ଅଭିନବତ୍ୱର ପ୍ରବର୍ତ୍ତନହିଁ ଯୁଗମାର୍ଗାନୁମୋଦିତ ପନ୍ଥାର ପ୍ରାଣ । ଯାହା ଯାହା ଅବହମାନ କାଳରୁ କବିତାର ବିଷୟ-ବସ୍ତୁ ରୂପରେ ଗୃହୀତ ହୋଇ ଆସୁଛି, ସେଗୁଡ଼ିକ ବାଦ ଦେଇ କେତେକ ଅଭିନବ ବିଷୟମାନଙ୍କର ଅବତାରଣା କରି ନବ ଲେଖନୀ ଚାଳନ କଲେହିଁ କବି ଯୁଗମାର୍ଗ ଅବଲମ୍ବନ କଲେ ବୋଲି କହିବାକୁ ହେବ । ଉତ୍କଳ ତଥା ବଙ୍ଗ ସାହିତ୍ୟରେ ଅବହମାନ କାଳରୁ କବିତାର ଉପଜୀବ୍ୟ ବିଷୟ ଥିଲା ପୌରାଣିକ ଘଟଣାର ବିଷୟମାନ । ମାଇକେଲ, ନବୀନ ସେନ, ହେମଚନ୍ଦ୍ର, ଭାରତଚନ୍ଦ୍ର ପ୍ରଭୃତି ବଙ୍ଗଦେଶର କବିମାନେ ଓ ଉପେନ୍ଦ୍ର, ଦୀନକୃଷ୍ଣ, ଅଭିମନ୍ୟୁ, ବିଶ୍ୱନାଥ, ବଳଦେବ ପ୍ରଭୃତି ଉତ୍କଳର କବିମାନେ ରାମାୟଣ, ମହାଭାରତ, ଭାଗବତ ପ୍ରଭୃତି ପୁରାଣପ୍ରସିଦ୍ଧ ବିଷୟମାନ ଗ୍ରହଣ କରି କାବ୍ୟକଳା ସୃଷ୍ଟି କଲେ । ବୈଷ୍ଣବ କବିମାନେ ରାଧାକୃଷ୍ଣଙ୍କ ପ୍ରେମଲୀଳାକୁ ସମ୍ବଳ କରି ବାଗ୍‌ଦେବୀ ସେବାର ଆୟୋଜନ କଲେ. ରାମପ୍ରସାଦ, ନୀଳକଣ୍ଠ ପ୍ରଭୃତି ବଙ୍ଗଦେଶରେ ଏବଂ ଗୋପାଳକୃଷ୍ଣ ଓ କବିସୂର୍ଯ୍ୟ ପ୍ରଭୃତି ଉତ୍କଳରେ ଦେବଦେବୀଙ୍କ ଭଜନ ରଚନା କରି କାବ୍ୟକଳା ପ୍ରକଟ କଲେ । ସୁତରାଂ ଏହି ଉପଜୀବ୍ୟ ବିଷୟଗୁଡ଼ିକ କବିତାର ଏକମାତ୍ର ଅବଲମ୍ବନ ବୋଲି ଲୋକେ ମନେ କରି ବସିଲେ । ଠିକ ସେହି ସମୟରେ ରବୀନ୍ଦ୍ରନାଥ ବଙ୍ଗଦେଶରେ ଆବିର୍ଭୂତ ହୋଇ କ୍ଷେପା ଖୁଜେ ଖୁଜେ ଫିରେ ପରଶପାଥର, ନିର୍ଝରର ସ୍ୱପ୍ନଭଙ୍ଗ, ଦେବତାର ଗ୍ରାସ, ମୋର ପୁରାତନ ଭୃତ୍ୟ, ହିଁ ଟିଁ-ଛଟ ପ୍ରଭୃତି ନାନା ଅପୌରାଣିକ ବିଷୟର ଅବତାରଣା କରି ଏବଂ ଦୈନନ୍ଦିନ ଜୀବନର କ୍ଷୁଦ୍ରାଦପି କ୍ଷୁଦ୍ର ଘଟଣାବଳୀର ଅନ୍ତର୍ନିହିତ ସତ୍ୟର ସୌନ୍ଦର୍ଯ୍ୟପ୍ରସ୍ରବଣ ଖୋଲି ଦେଇ ଗୋଟିଏ ନୂତନ ଯୁଗର ପ୍ରବର୍ତ୍ତନ କଲେ । ପ୍ରସାରିଣୀ, କାଙ୍ଗାଲିନୀ, ପତିତା, ଦିଦି, ମାନସ ସୁନ୍ଦରୀ, ବିଜୟିନୀ, ହୃଦୟଯମୁନା, ପଦ୍ମା, କୃଷ୍ଣକଲି, ବସୁନ୍ଧରା, ବଙ୍ଗମାତା, କଲ୍ୟାଣୀ ପ୍ରଭୃତି ନବୀନ ନାୟିକାମାନଙ୍କ ଆବିର୍ଭାବରୁ ରଙ୍ଗମଞ୍ଚ ଗୋଟିଏ ଅଭିନବ ରୂପ ଧାରଣ କଲା । ରାଧାନାଥ ମଧ୍ୟ 'ରମ୍ଭାଜଘନା,' 'ଗଜରାଜଗମନା' ଓ 'କେଳିକଉତୁକୀ'ମାନଙ୍କ ସଙ୍ଗସୁଖ ବର୍ଜନ କରି ନନ୍ଦିକେଶରୀ, ଉଷା, ପାର୍ବତୀ ପ୍ରଭୃତି ଐତିହାସିକାମାନଙ୍କ ସେବାରେ

ନିଜର ଭବପ୍ରତିଭାକୁ ନିଯୋଜିତ କରି ଗୋଟିଏ ନବଯୁଗର ସମ୍ବାଦ ଦେଲେ । ଚନ୍ଦ୍ରଭାଗା ଅପ୍‌ସରା, ଦେବବାଞ୍ଛିତ ସୁନ୍ଦରୀର ପସରା—ମଦନଙ୍କର ଶୋଭାସଦନା, ଅପ୍‌ସରା ଗର୍ଭଜାତ ଋଷିକନ୍ୟା—ଦେବମାନବର ଯୋଗସୂତ୍ରା ନବୀନ କାବ୍ୟକଳାର ଗୋଟିଏ ଅତି ଅଭିନବ ସୃଷ୍ଟି । ତତ୍ପରେ ଚନ୍ଦ୍ରଭାଗା ମଧ୍ୟ କୁଆଡ଼େ ବିଦେଶିନୀ ଏବଂ ବହୁଦୂର ଦେଶରୁ ଆସିଛନ୍ତି ବୋଲି କେହି କେହି କହନ୍ତି ।

ଏହା ଛଡ଼ା ରାଧାନାଥ ଗୋଟିଏ ଅତି ଅଭିନବ ଉପାଦେୟ ସୃଷ୍ଟି କରି ଉତ୍କଳ ସାହିତ୍ୟରେ ଚିର ଅମର ହୋଇଅଛନ୍ତି । ସେ କବିତାରେ ପ୍ରାକୃତିକ ବର୍ଣ୍ଣନାର ସର୍ବପ୍ରଥମ ପ୍ରବର୍ତ୍ତକ । ଏଥିପୂର୍ବେ ଉତ୍କଳର ପ୍ରାକୃତିକ ଦୃଶ୍ୟାବଳୀର ଭୀମକାନ୍ତ ଛବି ପ୍ରତି କୌଣସି କବିର ଦୃଷ୍ଟି ସେପରି ବ୍ୟାପକ ଭାବରେ ଆକୃଷ୍ଟ ହୋଇଥିବାର ମୋଟେ ଜଣା ନାହିଁ । ସାଧାରଣ ଗତାନୁଗତିକତାର ବାହାର ଦେଇ କବି ତାଙ୍କର ମାନବ ଚରିତ୍ର ଚିତ୍ରଣର ବ୍ୟପଦେଶରେ ପ୍ରକୃତିର ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟର ଯତ୍କିଞ୍ଚିତ ପରିଚୟ ଦେଇଅଛନ୍ତି । ସେଥିରେ ପ୍ରକୃତିର ଚିତ୍ରଣ କବିଙ୍କ ମାନବଚରିତ୍ର ଚିତ୍ରଣର ପୋଷକ ମାତ୍ର ହୋଇଅଛି । ତାହା ପୁଣି ସେପରି ବ୍ୟାପକଭାବରେ କୁତ୍ରାପି ହୋଇ ନ ଥିଲା । କବି ସେ ଦିଗରେ ଯୁଗାନ୍ତର ଆନୟନ କରିଅଛନ୍ତି । ପ୍ରକୃତିର ଶୋଭା ବର୍ଣ୍ଣନରେ ସେ ଯେପରି ତନ୍ମୟତା ଲାଭ କରିଥିଲେ ତାହା କେବଳ ଇଂରେଜ କବି ଓ୍ୱାର୍ଡସ୍‌ୱର୍ଥଙ୍କଠାରେ ଦେଖିବାକୁ ମିଳେ। ପୁଣି ସେ ଉତ୍କଳ ପ୍ରକୃତିର ବିଶେଷଭାବେ ପ୍ରତି ଚିର ଆସକ୍ତ ଥିଲେ ଓ ଉତ୍କଳର ପ୍ରତ୍ୟେକ ରେଣୁ ପରମାଣୁ ସଙ୍ଗରେ ଗୋଟିଏ ନିବିଡ଼ ଆତ୍ମୀୟତାର ବନ୍ଧନରେ ତାଙ୍କର ଭାବପ୍ରବଣ କବିହୃଦୟ ଏପରି ଓତପ୍ରୋତ ଭାବରେ ଜଡ଼ିତ ଥିଲା ଯେ ସେ ସେଗୁଡ଼ିକର ବର୍ଣ୍ଣନାରେ ଏକ ରକମ ଆତ୍ମବିସ୍ମୃତ ହୋଇ ଯାଉଥିଲେ । ମାତୃଭୂମିର ସ୍ଥାବର ଜଙ୍ଗମ ସଙ୍ଗରେ ଏପରି ପ୍ରଗାଢ଼ ଆତ୍ମୀୟତାବୋଧ ତାଙ୍କର କବିତାର ପ୍ରତି ଛନ୍ଦେ ଛନ୍ଦେ ପ୍ରତିଫଳିତ ହେଉଅଛି । ସେ ତାଙ୍କର ଚିଲିକାରେ ସ୍ପଷ୍ଟଭାବରେ କହିଛନ୍ତି, ଅନନ୍ତ ବୈଚିତ୍ର୍ୟମୟୀ ଓ ଅତୁଳ ବୈଭବଶାଳିନୀ ଭାରତପ୍ରକୃତିର

ସର୍ବତ୍ର ଭ୍ରମଣ କରିଥିଲେ ସତ୍ୟ, କୌଣସିଠାରେ ତାଙ୍କ ମନ ମାତିଲା ନାହିଁ; ସେ ମାତୃଭକ୍ତଶିରୋମଣିର ପକ୍ଷପାତିତା ଦୃଷ୍ଟିରେ କେବେ ଉତ୍କଳଲକ୍ଷ୍ମୀର କମନୀୟକାନ୍ତି ପ୍ରତି ଉରପିପସିତ ଥିଲେ । ଏପରି ଦେଶାତ୍ମବୋଧ ଆମ୍ଭ-ମାନଙ୍କର ନିସ୍ୱାପର ଦେଶସେବକଙ୍କ ମଧ୍ୟରେ ଦେଖାଯାଏ କି ?

"ହ୍ରଦ ସିନ୍ଧୁସ୍ରୋତ ବିଖ୍ୟାତ ଜଗତେ
ମହାନଦୀ ନାମ ରହିଲୁ ଯୁଗତେ ।
ଖର୍ବ ଗୋବର୍ଦ୍ଧନ ଗିରୀନ୍ଦ୍ର ବୋଲାଏ
ମହାତୀର୍ଥ ରୂପେ ବର୍ଣ୍ଣେ ପୂଜା ପାଏ ।
ସ୍ୱଭାବେ ବିନ୍ଧ୍ୟ ହୋଇ ମେରୁସମ
ଲଭି ନାହିଁ ଗିରି ସମାଜେ ଆସନ ।"

ଏପରି ଆବେଗଭରା ତାଙ୍କର କରୁଣ ପ୍ରାର୍ଥନା ଦେବୀ ବୀଣାପାଣି କଅଣ ଶୁଣିଲେ ? ଶୁଣାଯାଏ, ରାମଭକ୍ତଶିରୋମଣି ହନୁମାନ୍ ନିଜର ହୃଦୟ ବିଦୀର୍ଣ୍ଣ କରି ସୀତାରାମଙ୍କ ଯୁଗଳ ରୂପ ଦେଖାଇଥିଲେ । ଏହା ଯଦି ସତ୍ୟ ହୁଏ, ତେବେ ରାଧାନାଥଙ୍କ ବଙ୍ଗୀୟ ହୃଦୟର ରଙ୍ଗୀନ ଶୋଣିତ ପ୍ରବାହର ପ୍ରତ୍ୟେକ ବିନ୍ଦୁରେ ଉତ୍କଳଲକ୍ଷ୍ମୀଙ୍କର ମାତୃମୂର୍ତ୍ତି ଅଙ୍କିତ ହୋଇଥିବାର ସମ୍ଭାବନା ଖୁବ ବେଶୀ । ସେ ଉତ୍କଳର ଜଡ଼ ଚେତନ ପ୍ରତ୍ୟେକ ବସ୍ତୁକୁ କି ଚକ୍ଷୁରେ ଦେଖୁଥିଲେ, ତାହା ତାହାଙ୍କ ପ୍ରକୃତିବର୍ଣ୍ଣନାରୁ ସ୍ପଷ୍ଟ ଜଣାଯାଏ । ଏ ଦିଗରେ ସେ ବିଶ୍ୱସାହିତ୍ୟରେ ଅପ୍ରତିଦ୍ୱନ୍ଦ୍ୱୀ । ଦେଶମାତୃକାର ଶସ୍ୟଶ୍ୟାମଳା ସୁଜଳା ସୁଫଳା ମୂର୍ତ୍ତିକୁ ବଙ୍ଗକବି ଦ୍ୱିଜେନ୍ଦ୍ରଲାଲ ଅମର କରି ଯାଇ ଅଛନ୍ତି । "ଧାନେର ଉପର ଢେଉ ଖେଲେ ଯାଏ ବାତାସ କାହାର ଦେଶେ" ପ୍ରଭୃତି ପଂକ୍ତିରେ ତାଙ୍କର ଦେଶାନୁବୋଧ ଅତି କମନୀୟ ମୂର୍ତ୍ତି ଧାରଣ କରି ହୃଦୟଗ୍ରାହୀ ହୋଇଅଛି । କିନ୍ତୁ ତାହାର ବହୁପୂର୍ବରୁ ରାଧାନାଥଙ୍କ ଚିଲିକା ପ୍ରଭୃତିରେ ତାଙ୍କ ପ୍ରଗାଢ଼ ଦେଶାତ୍ମବୋଧର ସହସ୍ରଧାରା ଅଜ ପ୍ରବାହରେ ପ୍ରବାହିତ ହୋଇ ସହସ୍ର ସହସ୍ର

ଦେଶପ୍ରେମିକଙ୍କର ଶୀତଳ ଶୋଣିତପ୍ରବାହକୁ ଉଷ୍ଣ କରି ଦେଇଅଛି । ଜନତା ହୃଦୟ ସ୍ପର୍ଶ କରି ଯେପରି ଶକ୍ତି ସଞ୍ଚାର କରି ପାରେ ତାହା ରଙ୍ଗମଞ୍ଚର ପ୍ରଗଲ୍‌ଭ ବାକ୍‌ଶକ୍ତିସାରର କ୍ଷଣିକ ଉନ୍ମାଦନା ଏବଂ ସାମୟିକ ପ୍ରେରଣାଠାରୁ ଢେର ବେଶୀ ସ୍ଥାୟୀ ଓ ପ୍ରାଣପୂର୍ଣ୍ଣ ହୁଏ । ଏ ଦିଗରେ ବଙ୍ଗଦେଶର ଦ୍ୱିଜେନ୍ଦ୍ରଲାଲ ପ୍ରମୁଖ ସଙ୍ଗୀତସେବକ ଓ ଆମ ଦେଶରେ ରାଧାନାଥ ମଧୁସୂଦନ ପ୍ରଭୃତି କବିଙ୍କର ଦାନ ଚିରସ୍ମରଣୀୟ ହୋଇ ରହିବ "ବନ୍ଦେ ମାତରଂ ମନ୍ତ୍ରଦ୍ରଷ୍ଟା" ଆନନ୍ଦମଠର କବିଚୂଡ଼ାମଣି ବଙ୍କିମଚନ୍ଦ୍ରଙ୍କ ନାମ ପ୍ରାତଃସ୍ମରଣୀୟ ହୋଇ ରହିବା ଉଚିତ । କବିମାନଙ୍କର ଅବଦାନକୁ ଅବହେଳିତ କରି ବହିରଙ୍ଗ ଆସ୍ଫାଳନକୁ ମୁଖ୍ୟ ଶକ୍ତି ବିବେଚନା କରିବା ସମୀଚୀନ ନୁହେ । କବି ହୃଦୟଗ୍ରାହ୍ୟର ଉପରେ ପ୍ରଭାବବିସ୍ତାର କରି ଯାହା କରି ପାରେ, ତାହା ଶାରୀରିକ ବଳ ବା ମାନସିକ ବଳଦ୍ୱାରା ସୁସାଧିତ ହୋଇ ପାରେ କି ? ଜନତାର ନୀରସ କର୍କଶ ହୃଦୟ-ମରୁଭୂମିକୁ ସ୍ୱଦେଶପ୍ରୀତିର ରସରେ ସରସ ଓ ଉର୍ବର କରିବାକୁ ଗଲେ, କବିଙ୍କର କଲାନୁଗମ ବିନା ପନ୍ଥା ହିଁ ଉଚ୍ଛିଷ୍ଟ । ହୃଦୟକୁ ସ୍ପର୍ଶ ନ କରି କେବଳ ବାହ୍ୟାଡ଼ମ୍ବର ଦ୍ୱାରା ଜନତାର ଦେଶାତ୍ମବୋଧ ଉଦ୍ରେକ କରାଯାଇ ନ ପାରେ । ଦେଶାତ୍ମବୋଧ ଜାତ ନ ହେଲେ, ଜନତାକୁ କେବଳ ଯନ୍ତ୍ରଚାଳିତ ପରି କରି ରଖିଲେ, ସେ ସର୍କସର ସିଂହ ବ୍ୟାଘ୍ର ପରି ଦିନେ ଉତ୍ତେଜିତ ହୋଇ ରକ୍ଷକର ଭକ୍ଷକ ହୋଇ ବସିବ । ସୁତରାଂ ଜନତାର ଦେଶାତ୍ମବୋଧ ସ୍ରଷ୍ଟା ଦେଶପ୍ରେମିକ କବିଙ୍କର ଅବଦାନ ଯେ କେତେ ମହାନ୍ ସେଥିରୁ ଅନୁମାନ କରିବା ଉଚିତ । ରାଧାନାଥଙ୍କ ପ୍ରାକୃତିକ ବର୍ଣ୍ଣନାର ବୈଶିଷ୍ଟ୍ୟ କେବଳ କମଳେଶ୍ୱରୀଙ୍କ ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟ ଆସ୍ୱାଦନ କରି ଭୁମା ମାହେଶ୍ୱରୀ ଶକ୍ତିଙ୍କ ସଙ୍ଗରେ ମଧୁର ସମ୍ପର୍କ ସଂସ୍ଥାପନ ନୁହେ—ଯାହା କି ଅନ୍ୟାନ୍ୟ ପ୍ରାକୃତିକ ବର୍ଣ୍ଣନାପରାୟଣ କବିଙ୍କ ରଚନାରେ ସଚରାଚର ଦେଖିବାକୁ ମିଳେ । ସେ ପ୍ରଗାଢ଼ ଦେଶାତ୍ମବୋଧ ଉଦ୍ରେକ କରି ଜନତାର ସ୍ୱାର୍ଥାନ୍ଧ ନୟନର ସମୀପରେ ଦେଶମାତୃକାର ଗୋଟିଏ ବରେଣ୍ୟ ମୂର୍ତ୍ତିର ପ୍ରାଣ ପ୍ରତିଷ୍ଠା କରି ପୂଜା କରିବା ପାଇଁ ଜନତାକୁ ସାଦର

ସମ୍ଭାଷଣ କରିଥିଲେ । କବି ଏହା କରିଛନ୍ତି ବୋଲି ଆଜି ଆମେ ସହସ୍ର ବନ୍ଧନର ମଧ୍ୟରେ ରହି ମର୍ମରେ ମର୍ମରେ ଟିକିଏ ଅଧେ ମାତୃମଙ୍ଗଳ କାମନା କରିଥାଉଁ । ମାଆକୁ ମା ବୋଲି ଡାକ ଶିଖାଇ କବିଗୁରୁମାନେ ଆମ୍ଭମାନଙ୍କୁ ମାତୃମନ୍ତ୍ରରେ ଦୀକ୍ଷିତ କରନ୍ତି । ତେଣୁ କବିଙ୍କ ଅବଦାନର ମହତ୍ତ୍ୱ ସ୍ୱୀକାର କରିବାକୁ ହେବ । କବି ଯେ ଆମ୍ଭମାନଙ୍କର ଜାତୀୟତାବୋଧର ଉନ୍ମେଷକ ଓ ସ୍ୱାଧୀନତାପ୍ରାପ୍ତି ସଂଗ୍ରାମରେ ମହାରଥୀ ଥିଲେ, ଏହା ମୁକ୍ତକଣ୍ଠରେ ସ୍ୱୀକାର କରିବା ଉଚିତ ।

ପୂର୍ଣ୍ଣ ଭାଷା ଓ ଶୈଳୀରେ ଯୁଗମାର୍ଗର କବି କ କ ନବୀନତାର ଅବତାରଣା କରନ୍ତି ଦେଖାଯାଏ । ରବୀନ୍ଦ୍ରନାଥଙ୍କ ଆବିର୍ଭାବ ବେଳକୁ କବିତାର ଉପାଦାନସ୍ୱରୂପ ଭାଷା କପରି ଅବସ୍ଥାରେ ଥିଲା, ତାହା ବିଚାର କରିଯାଉ । କବିଙ୍କ ଆସିବା ପୂର୍ବରୁ ବର୍ଣ୍ଣମାଳାର ପ୍ରଚଳନ ଥିଲା । ଅଭିଧାନ ମଧ୍ୟ ଥିଲା, ଅମରକୋଷ ଥିଲା । ଭାରତଚନ୍ଦ୍ର, ହେମଚନ୍ଦ୍ର, ନବୀନ, ମାଇକେଲ ପ୍ରଭୃତି କବିଙ୍କ ରଚନା ତ ଥିଲା — ବିଦ୍ୟାପତି, ଚଣ୍ଡୀଦାସ, ରାମପ୍ରସାଦ ପ୍ରଭୃତିଙ୍କ ସୁଶ୍ରାବ୍ୟ ସଙ୍ଗୀତ ମଧ୍ୟ ଥିଲା । ତେବେ କବି ଭାଷାରେ କି ନବୀନତାର ଆମଦାନୀ କଲେ ଓ କଅଣ ନ ଥିଲା ଯେ ସେ ନୂତନତ୍ୱ ଦାବି କରିବେ ? ପୂର୍ବରେ ଅବଶ୍ୟମ୍ଭାବୀ (inevitable) ଶବ୍ଦର କଥା କହିଛି । ଯେପରି ପ୍ରଜାପତିଙ୍କ ନିର୍ବନ୍ଧ ଅନୁସାରେ ପ୍ରତ୍ୟେକ ପ୍ରାଣୀ ପାଇଁ ଆଗରୁ ପାତ୍ରର ସମ୍ବନ୍ଧ ଠିକ କରି ହୋଇଥାଏ । କେବଳ ଆମ୍ଭମାନଙ୍କୁ ବିବାହ ସମୟରେ ସେହି ଦୁଇଟି ପାତ୍ର-ପାତ୍ରୀର ସନ୍ଧାନ କରି ସବୁ ଯୋଟକ ମିଳାଇ ଦେବାକୁ ହୁଏ । ସେହିପରି ଗୋଟିଏ ଭାବର ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟକୁ ପୂର୍ଣ୍ଣ ପ୍ରକାଶ କରି ପାରିବା ଭଳି ଗୋଟିଏ ମାତ୍ର ଶବ୍ଦ ଅଛି ; ଅନ୍ୟାନ୍ୟ ସମାର୍ଥବୋଧକ ଶବ୍ଦଦ୍ୱାରା ଉକ୍ତ ଭାବର ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟର ପୂର୍ଣ୍ଣ ଅଭିବ୍ୟକ୍ତି ଅସମ୍ଭବ । ସୁତରାଂ ପୂର୍ଣ୍ଣ ପ୍ରକାଶକ୍ଷମ ଅବଶ୍ୟମ୍ଭାବୀ (inevitable) ଶବ୍ଦହିଁ କବିଙ୍କ ନିର୍ବାଚନର ଲକ୍ଷ୍ୟ ହେବା ଉଚିତ । ସେହିପରି ବାକ୍ୟବିନ୍ୟାସର ଅବଶ୍ୟମ୍ଭାବିତା ପ୍ରତି ମଧ୍ୟ ଦୃଷ୍ଟି ଦେବା କର୍ତ୍ତବ୍ୟ । ପରିଶେଷରେ

ସମଗ୍ର କବିତାଟିର ସର୍ବାଙ୍ଗସୁନ୍ଦର ଅଙ୍ଗସୌଷ୍ଠବର ଅବଶ୍ୟମ୍ଭାବିତା କାବ୍ୟ-କଳାର ଲକ୍ଷ୍ୟ । ଏହି ଅବଶ୍ୟମ୍ଭାବିତାଜନିତ ଏକକ ସମାବେଶ ପ୍ରତିଭା-ସାପେକ୍ଷ । ସୁତରାଂ କେବଳ ଭାଷାଜ୍ଞାନଦ୍ୱାରା ଏହା ସଂସାଧିତ ହୋଇ ନ ପାରେ । କବିଙ୍କ ରସବୋଧ ଓ ତାଙ୍କର ଦିବ୍ୟଚକ୍ଷୁଦୃଷ୍ଟି ପ୍ରତିଭାର ପରିଚୟ ମିଳେ ଏହି ମଧୁର ସମନ୍ୱୟରୁ । ଏହି ଅଲୋକସାମାନ୍ୟ କଳାନୈପୁଣ୍ୟର ଉତ୍କୃଷ୍ଟ ନିଦର୍ଶନ ରବୀନ୍ଦ୍ରନାଥଙ୍କ କବିତା । ଅବଶ୍ୟ-ମ୍ଭାବିତା, ସୁଶ୍ରାବ୍ୟତା ଓ ସମୀଚୀନତା ଓ ପ୍ରାଣସ୍ପର୍ଶିତା ଏବଂ ଚମତ୍କାରିତା ପ୍ରଭୃତି ସର୍ବଗୁଣାଲଙ୍କୃତ ବାକ୍ୟବିନୋଦନ ଅନ୍ୟତ୍ର ଅସମ୍ଭବ । କେବଳ ସେ ସର୍ବଜନବୋଧଗମ୍ୟ, ସର୍ବତ୍ର ପ୍ରଚଳିତ ଓ ଅତି ସରଳ ଓ ପ୍ରାଞ୍ଜଳ ବର୍ଣ୍ଣବିନ୍ୟାସ ଓ ଶବ୍ଦଯୋଜନାର ଇନ୍ଦ୍ରଜାଲଦ୍ୱାରା ମାୟାପୁରୀ ସୃଷ୍ଟି କରୁଥିଲେ । ଭାଷା ଅତି ସରଳ, ଅଥଚ ଗ୍ରାମ୍ୟତାଦୋଷବର୍ଜିତ ଏବଂ ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟର ଏକକ ସମାବେଶ । ଏହାହିଁ ତାଙ୍କର ଶୈଳୀର ବୈଶିଷ୍ଟ୍ୟ । ରାମପ୍ରସାଦ ଓ ଭାରତଚନ୍ଦ୍ରଙ୍କ ଭାଷା ମଧ୍ୟ ଖୁବ ସରଳ ଓ ପ୍ରାଣସ୍ପର୍ଶୀ, କିନ୍ତୁ ରବୀନ୍ଦ୍ରନାଥଙ୍କ ଭାଷା ମାଧୁର୍ଯ୍ୟରେ ଓ ସୌନ୍ଦର୍ଯ୍ୟରେ ଯେପରି ଉତ୍କୃଷ୍ଟତର, ସେହିପରି ଅଧିକତର ଶ୍ରୁତିରସାୟନ ଓ ପ୍ରାଣମନର ଉନ୍ମାଦନାର ପ୍ରବର୍ତ୍ତକ । ତାଙ୍କର ଭାଷା ଇନ୍ଦ୍ରଜାଲ-ସ୍ପର୍ଶଜନିତ ଗୋଟାଏ ମାୟାପୁରୀର ସୃଷ୍ଟି କରି ଚକ୍ଷୁ ସମକ୍ଷରେ ଥୋଇଦିଏ । ସବୁବେଳେ ଗୋଟାଏ ଅତୀନ୍ଦ୍ରିୟ ରାଜ୍ୟର ସମ୍ବାଦ ବହନ କରି ତାଙ୍କର କ୍ଷୁଦ୍ରାଦପି କ୍ଷୁଦ୍ର ବାଣୀଟି ମଧ୍ୟ ମୋହିନୀ ରୂପରେ ଅମୃତ ପରିବେଶନରେ ସର୍ବଦା ମୁକ୍ତହସ୍ତ । ଏପରି ଭାଷାଶୈଳୀ ପୃଥିବୀର ଇତିହାସରେ ଖୁବ୍ ବିରଳ ।

ଓଡ଼ିଆ ସାହିତ୍ୟରେ ରାଧାନାଥଙ୍କ ଭାଷା ସଂସ୍କାର ମଧ୍ୟ ପ୍ରଣିଧାନ-ଯୋଗ୍ୟ । ସେ ଯମକବହୁଳ, ଅନୁପ୍ରାସପିଚ୍ଛିଳ ଓ ଶବ୍ଦାଳଙ୍କାର-ଜଞ୍ଜାଳମାଳା-ସମାକୁଳ ଉପେନ୍ଦ୍ର ଶୈଳୀର ପ୍ରବଳ ପ୍ରତାପର ଅବସାନ ବେଳକୁ ଆବିର୍ଭୂତ ହୋଇଥିଲେ । ଉକ୍ତ ଶୈଳୀର ସର୍ବଗ୍ରାସୀ ପ୍ରଭାବରୁ ଭାଷାକୁ ମୁକ୍ତ କରି କବିମାନେ ତାଙ୍କ ପୂର୍ବରୁ କୃତିତ୍ୱ ଅର୍ଜନ କରି ସାରିଥିଲେ । ଏ ଦିଗରେ କବିସୂର୍ଯ୍ୟ ବଳଦେବ ରଥଙ୍କ ଅମୂଲ୍ୟ

ଅବଦାନ ପ୍ରଣିଧାନଯୋଗ୍ୟ । ତାଙ୍କ ରଚିତ ସଙ୍ଗୀତାବଳୀର ଅନନ୍ୟ-ସାଧାରଣ କଳାନୈପୁଣ୍ୟରୁ ତାଙ୍କର ଅଲୋକସାମାନ୍ୟ ପ୍ରତିଭାର ପରିଚୟ ମିଳେ । ରସିକକବି ଦୀନକୃଷ୍ଣ ମଧ୍ୟ ଉପେନ୍ଦ୍ରଶୈଳୀର ମୋହରେ ପଡ଼ି ନ ଥିଲେ । ଅଭିମନ୍ୟୁ କିନ୍ତୁ ସମନ୍ୱୟବାଦୀ । ସେ ପୁରାତନ ଓ ନୂତନର ସନ୍ଧିସ୍ଥଳରେ ଛିଡ଼ା ହୋଇ ଗୋଟିଏ ରଫାନାମାର ପ୍ରାର୍ଥୀ ଥିଲେ । ସେ ଦୁଇ ମଙ୍ଗରେ ଦୁଇ ପଦ ନ୍ୟସ୍ତ କରି ମହାବିଦଗ୍ଧ ଚିନ୍ତାସିନ୍ଧୁ ଅକ୍ଳେଶରେ ପାର ହୋଇଥିଲେ; କିନ୍ତୁ ତାଙ୍କର ସ୍ନେହ-କରୁଣାର ଦୃଷ୍ଟି ଦୀନହୀନ ନିରାଶ୍ରୟ ଅନ୍ୟମାନଙ୍କ ଉପରେ ସଦାସର୍ବଦା ନିବିଷ୍ଟ ଥିଲା । ଏମାନେ ସମସ୍ତେ ରାଧାନାଥଙ୍କ ଅତିପ୍ରିୟ ଓ ପୂଜନୀୟ ଗୁରୁସ୍ଥାନୀୟ ଥିଲେ । ସେ କାବ୍ୟରସ ପରିବେଷଣରେ ଯେଉଁ ସିଦ୍ଧହସ୍ତତା ଅର୍ଜନ କରିଥିଲେ, ତାହା କେବଳ ସେମାନଙ୍କର ଶୁଭାଶିଷବୃନ୍ଦ ସମ୍ଭବପର ହୋଇଥିଲା । ରାଧାନାଥ ସେମାନଙ୍କର ଜଣେ ଉଚ୍ଚକୋଟିର ସାଧକ ଶିଷ୍ୟ ଥିଲେ । ତେଣୁ ତାଙ୍କର ବହୁତୋମୁଖୀ ଅନୁଚିକୀର୍ଷା ଓ ଅନୁସନ୍ଧିତ୍ସାରୁ ପୂର୍ଣ୍ଣ ସାଫଲ୍ୟମଣ୍ଡିତ କରି ତାଙ୍କର ପ୍ରତିଭାର ମୌଳିକତା ଚିରଦେଦୀପ୍ୟମାନ ରହିବ । ଅନୁକରଣ ତ ମୌଳିକତାର ଶୋଷକ ନ ହୋଇ ବରଂ ପୋଷକ ହୁଏ, ଭକ୍ଷକ ନ ହୋଇ ରକ୍ଷକ ହୋଇଥାଏ । ଅନୁକରଣର ସାରବତ୍ତାରୁ ବଞ୍ଚିତ ହେଲେ ପ୍ରତିଭାର ମୌଳିକତା ଦିନୁ ଦିନୁ ଜୀର୍ଣ୍ଣଶୀର୍ଣ୍ଣ ଓ ସଙ୍କୀର୍ଣ୍ଣ ହୋଇ ଶେଷରେ ପ୍ରାଣସଙ୍କଟରେ ପଡ଼ି ପାରେ । ଆମ ଦେଶର ସମାଲୋଚକମାନେ ଏକଥା ବୁଝନ୍ତି ନାହିଁ । ମୁଁ ରାଧାନାଥଙ୍କ ଅନୁକରଣରେ ମୌଳିକତାର ବିଶେଷ ପରିଚୟ ପାଇଅଛି । ଭାଷାର ଅଙ୍ଗସୌଷ୍ଠବବର୍ଦ୍ଧନ ଓ ଭାଷାର ସଲୀଳ ଭାବଭଙ୍ଗୀର ପୁଷ୍ଟିସାଧନ ଦିଗରେ ତାଙ୍କର ଚେଷ୍ଟା ପ୍ରଣିଧାନଯୋଗ୍ୟ । ଏ ଦିଗରେ ସେ ରବୀନ୍ଦ୍ରନାଥଙ୍କ ସମକକ୍ଷ ନ ହେଲେହେଁ ପ୍ରଚଳିତ ଭାଷାକୁ ଭାବପ୍ରକାଶଯୋଗ୍ୟ କରିବାରେ ସେ ଅଧ୍ୟବସାୟର ତ୍ରୁଟି କରି ନାହାନ୍ତି ଓ ସେଥିରେ ପ୍ରଭୂତ କଳାନୈପୁଣ୍ୟର ପରିଚୟ ଦେଇଅଛନ୍ତି । ଭାଷାକୁ କାବ୍ୟମୟୀ ଓ ଶ୍ରୁତିମଧୁର କରିବାରେ ସେ ବିଶେଷ କୃତକାର୍ଯ୍ୟ ହୋଇ-ଥିଲେ । ଏ ଦିଗରେ ତାଙ୍କର କବିଦୃଷ୍ଟି ଭାରି ତୀକ୍ଷ୍ଣ ଓ ଅଭ୍ରାନ୍ତ ଥିଲା । ଏହା

ସୁକବିପ୍ରତିଭାର ପ୍ରଧାନ ଅଙ୍ଗ । ସେ କୌଣସି ଗଦ୍ୟମୟୀ ଶବ୍ଦ-ଯୋଜନାରେ କାବ୍ୟକଳାର ମହିମା ଖର୍ବ କରି ନାହାନ୍ତି ଓ ସୌନ୍ଦର୍ଯ୍ୟର ହାନି କରି ନାହାନ୍ତି—ସେ ଅତି ସହଜ ଶବ୍ଦ ସଙ୍ଗରେ ସଂସ୍କୃତ ଶବ୍ଦର ଅପୂର୍ବ ସାମଞ୍ଜସ୍ୟ ବିଧାନ କରି ସମନ୍ୱୟକୁ ଭାରି ମଧୁର ଓ ପ୍ରାଣସ୍ପର୍ଶୀ କରିଅଛନ୍ତି । ସେ ଶବ୍ଦର ଅନ୍ତର୍ନିହିତ ମୋହିନୀ ଶକ୍ତିରେ ପୂର୍ଣ୍ଣବିଶ୍ୱାସୀ ଥିବାରୁ ଭାବ-ଗାମ୍ଭୀର୍ଯ୍ୟଠାରୁ ଭାଷାର ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟ ପ୍ରତି ବେଶୀ ଦୃଷ୍ଟି ଦେଇ ଥିଲେ । ଶବ୍ଦବ୍ରହ୍ମର ଉପାସନାରେ ତନ୍ମୟ ହୋଇ ସେ ଉତ୍କଳ ବାଣୀକୁଞ୍ଜର କଳକଣ୍ଠକୋକିଳ ହୋଇ ପଡ଼ିଥିଲେ । ଏ ଦିଗରେ ସେ ମାଇକେଲ୍, ନବୀନ ସେନ ଓ ହେମଚନ୍ଦ୍ରଙ୍କ ସଙ୍ଗରେ ପଟି ପକାଇ କେବେହେଁ ପଶ୍ଚାତ୍‌ପଦ ହୋଇ ନାହାନ୍ତି, ବରଂ ସ୍ଥଳବିଶେଷରେ ତାଙ୍କର ଶବ୍ଦଯୋଜନା, ବର୍ଣ୍ଣବିନ୍ୟାସ କଳ୍ପନାବିଳାସ ଏବଂ ରଚନାଶୈଳୀ ତାଙ୍କର ଉତ୍କର୍ଷର ପରିଚୟ ଦେଇଛି । ରବୀନ୍ଦ୍ରନାଥଙ୍କ କଥା ତ ସ୍ୱତନ୍ତ୍ର । ସେ ଭିନ୍ନକୋଟିର ସାଧକ । ଅମୋଘ ଶବ୍ଦଭେଦୀର ପ୍ରୟୋଗ-କୌଶଳରେ ସେ ଥିଲେ ଅବ୍ୟର୍ଥସନ୍ଧାନୀ ତ୍ରିଭୁବନଜୟୀ ସବ୍ୟସାଚୀ । ତାଙ୍କର ଭାଷାର କମନୀୟ ନମନୀୟତା ଓ ଲଳିତଲାବଣ୍ୟମୟୀ ସଲୀଳ ବିଳାସଭଙ୍ଗୀ ଅନ୍ୟତ୍ର ଅନୁସନ୍ଧାନ କରିବାକୁ ଦୁରାକାଂକ୍ଷା ମାତ୍ର । ତଥାପି ବଳଦେବ ଓ ରାଧାନାଥଙ୍କ ବର୍ଣ୍ଣବିନ୍ୟାସରେ ଗୋଟାଏ ଚମତ୍କାରିତା ଅଛି, ଯାହାର କୃତ୍ରିମତା ଉପେକ୍ଷାର ବିଷୟ ନୁହେ ।

ବସ୍ତୁତଃ ଛନ୍ଦ, ବୃତ୍ତ, ରାଗ, ରାଗିଣୀ ଓ ସ୍ୱରାଳାପରେ ରବୀନ୍ଦ୍ର-ନାଥଙ୍କ କଳାନୈପୁଣ୍ୟ ଏକରକମ ସୃଷ୍ଟି ଛଡ଼ା କହିଲେ ଚଳେ । ଯେପରି ଅଭିଧାନରେ ଶବ୍ଦ ଥାଏ ଏବଂ ଅମରକୋଷରେ ଶବ୍ଦପର୍ଯ୍ୟାୟ ମଧ୍ୟ ଅଛି, କିନ୍ତୁ କାବ୍ୟମୟୀ ଭାଷା କବିଙ୍କର ଅଦ୍ଭୁତ ଉଦ୍ଭାବନୀ ଶକ୍ତିର ପରିଚାୟକ ଗୋଟିଏ ଅଭିନବ ସୃଷ୍ଟି ; ସେହିପରି ରବୀନ୍ଦ୍ରନାଥଙ୍କ ଶୈଳୀ ମଧ୍ୟ ପ୍ରାଚୀନ ଉପାଦାନରେ ଗଠିତ ହେଲେହେଁ ଗୋଟିଏ ମୌଳିକ ଅବଦାନ । ଲଘୁ ତ୍ରିପଦୀ, ଦୀର୍ଘ ତ୍ରିପଦୀ, ବଙ୍ଗଳାଶ୍ରୀ ପ୍ରଭୃତି ପ୍ରଚଳିତ ଛନ୍ଦଗୁଡ଼ିକୁ

ପରିହାର କରି ପାଶ୍ଚାତ୍ୟ ସାହିତ୍ୟର ଛନ୍ଦୋଦୃଷ୍ଟିରେ ପଲ୍ଲୀସୁଲଭ ଚଗଡମାଳୀ (ଛଡ଼ା) ଗୀତର ସଲୀଳଭଙ୍ଗୀ ଅନୁକରଣପୂର୍ବକ ସେ ଯେଉଁ ଯେଉଁ ନବୀନବୃତ୍ତ ବା ଛନ୍ଦର ପ୍ରବର୍ତ୍ତନ କଲେ, ତାଙ୍କ ପୂର୍ବରେ ସାହିତ୍ୟକ୍ଷେତ୍ରରେ ତାହା କେହି ପ୍ରୟୋଗ କରି ନ ଥିଲେ । ତାଙ୍କର ଗୀତର ସ୍ୱରଗୁଡ଼ିକୁ ମଧ୍ୟ ପ୍ରାଚୀନତାର ଅଭିନବ ସଂସ୍କରଣ ବା ନବୀନ ପରିବେଷଣ କୁହାଯାଇ ପାରେ । ଏପରି କଳାନୈପୁଣ୍ୟର ପରାକାଷ୍ଠା ସେହି ଛନ୍ଦବିନ୍ୟାସରେ ପ୍ରଦର୍ଶିତ ହୋଇଅଛି ଯେ ସେଗୁଡ଼ିକ ଏକାଧାରରେ ସଙ୍ଗୀତ ଓ କବିତା । କବିତାକୁ କବିତା ଓ ସଙ୍ଗୀତକୁ ସଙ୍ଗୀତ । ଯାହାର ଇଚ୍ଛା ସେ ଯେପରି ଭାବରେ ଆସ୍ୱାଦନ କରି ପାରେ । ତୁମେ ଜଣେ ସଙ୍ଗୀତପ୍ରିୟ କଳକଣ୍ଠ ଗାୟକ, ତୁମର ଅନିର୍ବଚନୀୟ ଆନନ୍ଦର ଅମୃତନିଷ୍ୟନ୍ଦିନୀ ରୂପେ ତାହାର ପରିବେଷଣ ଓ ତୁମ୍ଭେ କାବ୍ୟକଳାବିନୋଦୀ ଓ କାବ୍ୟରସାସ୍ୱାଦନ ପାଇଁ ତୁମର ତୃଷିତ ହୃଦୟ ଲାଳାୟିତ; ଥରେ ଆସ୍ୱାଦନ କରି ଦେଖ, ତୁମ୍ଭର ମନପ୍ରାଣ ମାତି ଉଠୁଛି କି ନା । ତୁମେ ଦାର୍ଶନିକ, ତୁମେ ବେଦାନ୍ତୀ—ବେଦାନ୍ତର "ନେତି ନେତି" ବାଦସମ୍ବଳିତ ନୀରସ କର୍କଶ ଉପଳଖଣ୍ଡ ମାତ୍ର ଚର୍ବଣ କରି ଏଭଳି ନିର୍ବେଦମୟୀ ଅବସ୍ଥାକୁ ବରଣ କରି ଥରେ ମାତ୍ର ତୁମର ଅତିପ୍ରିୟ ବେଦାନ୍ତ ତଥ୍ୟଗୁଡ଼ିକ କବିଙ୍କ ପରିବେଷଣରେ ଆସ୍ୱାଦନ କର, ଦେଖିବ ଅମୃତ ରସାବଳୀ ତା ପାଖରେ କେଉଁଠି ଲାଗିବ—କି ରସାଳ ରସପୂର ସତେ ? ତୁମେ ଚିତ୍ରକଳାବିଳାସୀ ରଞ୍ଜନବୃତ୍ତିପରାୟଣ କଳାଜୀବୀ । ଦେଖ ଇନ୍ଦ୍ରଧନୁର ସପ୍ତବର୍ଣ୍ଣରଞ୍ଜିତା ଭାଷାର ବର୍ଣ୍ଣମାଳାର ଅତୁଳବର୍ଣ୍ଣବୈଭବ ସାହାଯ୍ୟରେ କବି କିପରି ଇନ୍ଦ୍ରଜାଲ ବିସ୍ତାର କରି ଗୋଟିଏ ମାୟାପୁରୀ ସୃଜନ କରିଛନ୍ତି । କହିଲ ଦେଖି, ତୁମର ମୂର୍ତ୍ତିକାର ବିକାରସ୍ୱରୂପ ଭୌତିକ ଉପାଦାନଗଠିତ ତାଜମହଲ ସୁନ୍ଦର, କି କବିଙ୍କର ଭାବ-ଭାଷା-ଶୈଳୀ-ସମ୍ବଳିତ ଚିନ୍ମୟ ଜଗତର ତାଜମହଲଟି ସୁନ୍ଦର ? ତାଙ୍କର କାବ୍ୟକଳାସମ୍ଭୂତ ଚିଦାନନ୍ଦମୟ ତାଜମହଲ ମରଜଗତର ଦେଶ-କାଳ ପ୍ରଭୃତି ଉପାଧିକୁ ଅପେକ୍ଷା ନ କରି ଶାଶ୍ୱତ ସୌନ୍ଦର୍ଯ୍ୟରେ ମଣ୍ଡିତ ହୋଇ ମହାକାଳବକ୍ଷରେ ଚିରଦେଦୀପ୍ୟମାନ ରହିବ । ଏ ଦିଗରେ

କବିଙ୍କ କୃତିକୁ ନବଯୁଗର ପ୍ରବର୍ତ୍ତକ ମାତ୍ର ନ କହି ଗୋଟିଏ ଅଭିନବ ସୃଷ୍ଟିର ସୂଚନା କହିବାହିଁ ସମୀଚୀନ ।

ରାଧାନାଥ କିନ୍ତୁ ପୁରାତନ ଛନ୍ଦମାନଙ୍କର ମର୍ଯ୍ୟାଦାଲଙ୍ଘନ ନ କରି ଓ ସେଗୁଡ଼ିକ ତାଙ୍କର କାବ୍ୟକଳାର ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟର ଭାର ସମ୍ୟକ୍ ବହନ କରି ପାରିବେ ବିଶ୍ବରେ ତନ୍ମଧ୍ୟରୁ କତିପୟ ଛନ୍ଦକୁ ବରଣ କରିନେଲେ । ବଙ୍ଗଳାଶ୍ରୀ, ନଟବାଣୀ, କଳହଂସ-କେଦାର ଓ ଚକ୍ରକେଳି ଅସାବରୀ ପ୍ରଭୃତି ଛନ୍ଦହିଁ ତାଙ୍କର ମନଃପୂତ ହେଲା । ଏହା ଛଡ଼ା ସେ ସାମାନ୍ୟ କେତୋଟି ନବଯୁଗସୁଲଭ ଛନ୍ଦ ମଧ୍ୟ ପ୍ରବର୍ତ୍ତନ କରିଥିଲେ, କିନ୍ତୁ ସେଥିରେ ବେଶୀ ମନୋନିବେଶ କରି ନାହାନ୍ତି । ଉତ୍କଳ ସାହିତ୍ୟରେ ତାଙ୍କ ଅମିତ୍ରାକ୍ଷର ଛନ୍ଦର ପ୍ରବର୍ତ୍ତନ ତାଙ୍କ କଳାନୈପୁଣ୍ୟର ସବିଶେଷ ପରିଚୟ ପ୍ରଦାନ କରେ । ସେ ଅମିତ୍ରାକ୍ଷର ଛନ୍ଦରେ କବିତା ଲେଖିବାକୁ ଯାଇ ମିତ୍ରାକ୍ଷରସୁଲଭ ସୁଶ୍ରାବ୍ୟତାକୁ ଖର୍ବ କରି ନାହାନ୍ତି । ଭାବଗାମ୍ଭୀର୍ଯ୍ୟ ଓ ବର୍ଣ୍ଣନାଗୀରବୀ ସଙ୍ଗରେ ଲଳିତ ପଦବିନ୍ୟାସର ମଧୁର ମିଳନଦ୍ୱାରା ସେ ପ୍ରତ୍ୟେକ ପଂକ୍ତିକୁ ଅନ୍ତର୍ଭୁକ୍ତରସାପ୍ଲୁତ କରିଥିଲେ । ମାଇକେଲ ମଧ୍ୟ ବଙ୍ଗ ସାହିତ୍ୟରେ ସେହିପରି ସର୍ବପ୍ରଥମ ଅମିତ୍ରାକ୍ଷରରେ ତାଙ୍କର ମେଘନାଦବଧ କାବ୍ୟ ଲେଖିଥିଲେ । ସେ ମଧ୍ୟ ଦିବ୍ୟ-ପ୍ରତିଭାବଳରେ ଅସାଧ୍ୟସାଧନ କରି ପାରିଥିଲେ । ତାଙ୍କର ଅମିତ୍ରାକ୍ଷର ମଧ୍ୟ ଭାରି ଶ୍ରୁତିମଧୁର ହୋଇଥିଲା । ରାଧାନାଥଙ୍କ ଶ୍ରୁତିମାଧୁର୍ଯ୍ୟ ତାଙ୍କର ସ୍ବାଭାବିକ ବର୍ଣ୍ଣବିନ୍ୟାସର କଳାକୌଶଳ ସାପେକ୍ଷ, କିନ୍ତୁ ମାଇକେଲଙ୍କର ଶ୍ରୁତିମାଧୁର୍ଯ୍ୟ ତାଙ୍କର ଛନ୍ଦର ଯତିପାତବୈଚିତ୍ର୍ୟ ଉପରେ ନିର୍ଭର କରେ । ଉଭୟ କବିଙ୍କର କବିତା ଅଙ୍ଗସୌଷ୍ଠବରେ ମଣ୍ଡିତ ଥିଲା । ରାଧାନାଥଙ୍କ କବିତାରେ ଅଙ୍ଗପ୍ରତ୍ୟଙ୍ଗର ଅନବଦ୍ୟ କମନୀୟତା ସଙ୍ଗରେ ମାଇକେଲ କବିତାର ଅଭିନବୀୟ ନମନୀୟତାର ତୁଳନା କରାଯାଇ ପାରେ । ନୃତ୍ୟୋଲ୍ଲାସପରାୟଣା ସାଧନା ବୋହଙ୍କର ଲଳିତ ଅଙ୍ଗଭଙ୍ଗୀ କିମ୍ବା ଘୋଟଣୀପାରର ସ୍ୱାଭାବିକ ନୃତ୍ୟକଳା ସଙ୍ଗରେ ମାଇକେଲଙ୍କ ଅମିତ୍ରାକ୍ଷର

ଛନ୍ଦର ନମନୀୟ ଯତିପାତଭଙ୍ଗୀର ତୁଳନା କଲେ ରାଧାନାଥଙ୍କ ଅମିତ୍ରାକ୍ଷରର ଗାମ୍ଭୀର୍ଯ୍ୟବ୍ୟଞ୍ଜକ ଗମନ-ନର୍ତ୍ତନଲୀଳାକୁ ନଟରାଜ ଉଦୟଶଙ୍କରଙ୍କର ତାଣ୍ଡବ-ନୃତ୍ୟପରିପୂର୍ଣ୍ଣ ସୁଗମ୍ଭୀର ପଦକ୍ଷେପ କୁହାଯାଇ ପାରେ ।

ମୋଟ ଉପରେ ଛନ୍ଦବୈଚିତ୍ର୍ୟ ଓ ଯତିପାତଭଙ୍ଗୀ ଦୃଷ୍ଟିରୁ ଛନ୍ଦ-ପ୍ରବର୍ତ୍ତକ ହିସାବରେ ମାଇକେଲଙ୍କ ସ୍ଥାନହିଁ ସର୍ବୋଚ୍ଚ । ଚିନ୍ତାମଣି ଓ ହେମଚନ୍ଦ୍ରଙ୍କ ଅମିତ୍ରାକ୍ଷର ସେମାନଙ୍କର ଅପୂର୍ବ ହସ୍ତର ପରିଚୟ ପ୍ରଦାନ କରେ ; ତେଣୁ ଉତ୍କଳ ସାହିତ୍ୟରେ ଅମିତ୍ରାକ୍ଷର ଛନ୍ଦପ୍ରବର୍ତ୍ତକ ହିସାବରେ ରାଧାନାଥ ଅପ୍ରତିଦ୍ୱନ୍ଦ୍ୱୀ ଓ ଅଦ୍ୱିତୀୟ । ଏ ଦିଗରେ ସେ ଯେଉଁ ନବୀନତାର ଅବତାରଣା କରିଅଛନ୍ତି, ସେଥିପାଇଁ ତାହା ଗୋଟିଏ ରାଗାନୁଗା ଶୈଳୀର ପ୍ରବର୍ତ୍ତକ ବୋଲି ସ୍ୱୀକୃତ ହେବ ।

ଉଲ୍ଲିଖିତ ପରିଚ୍ଛେଦରେ ଦେଖାଗଲା ଯେ ବଙ୍ଗ ସାହିତ୍ୟରେ ରବୀନ୍ଦ୍ରନାଥ ଏବଂ ଉତ୍କଳ ସାହିତ୍ୟରେ ରାଧାନାଥ ନିଜ ନିଜ ପ୍ରତିଭାର ତାରତମ୍ୟ ଅନୁସାରେ ଗୋଟିଏ ଗୋଟିଏ ନବଯୁଗର ପ୍ରବର୍ତ୍ତନ କରି ଅଛନ୍ତି । ତେଣୁ ସେମାନେ ରାଗାନୁଗା ଶୈଳୀର କବି (Romantic) ଅଟନ୍ତି । କିନ୍ତୁ ସେମାନଙ୍କ ଅନୁକରଣକାରୀମାନେ ନିଜେ କୌଣସି ନବୀନତାର ସନ୍ଧାନ ନ ଦେଇ ରାଗମାର୍ଗାନୁମୋଦିତ ଶୈଳୀର ଅନୁସରଣ କଲେ ସୁଦ୍ଧା ରାଗମାର୍ଗର କବି ବୋଲିଲବା ଉଚିତ କି ? ପାଶ୍ଚାତ୍ୟ ଦେଶର ରାଗମାର୍ଗ ଶୈଳୀର ମୂଳ ପ୍ରବର୍ତ୍ତକ Wordsworth ଏବଂ Coleridgeଙ୍କୁ ଛାଡ଼ି Shelley and keatsଙ୍କୁ ମଧ୍ୟ ରାଗମାର୍ଗର କବି କହନ୍ତି । ତାହାର କାରଣ ସେମାନଙ୍କର ନିଜସ୍ୱ କିଛି କିଛି ଥିଲା, ଯାହା କି Wordsworth and Coleridge ଙ୍କର ନ ଥିଲା । ସ୍ୱୟଂ ସେହି ଦିଗରେ ସେମାନେ ନୂତନତ୍ୱର ଆମଦାନୀ କରି ସେମାନଙ୍କର ଦାବୀ ସମର୍ଥନ କଲେ । କିନ୍ତୁ ଓଡ଼ିଶାର ରବୀନ୍ଦ୍ରପନ୍ଥୀମାନେ ସେହିପରି ଯଦି କିଛି ନବୀନତାର ସମ୍ବାଦ ଦେଇଥାନ୍ତି, ତେବେ ସେମାନେ ମଧ୍ୟ ରାଗମାର୍ଗର କବି ବୋଲି ପରିଚିତ ନ ହେବେ କାହିଁକି ? କିନ୍ତୁ ଦୁଃଖର ବିଷୟ, ସେମାନଙ୍କର ସେହି ଶଂସିତ

ନବୀନତାର ଲେଶମାତ୍ର ମୋ ନୟନରେ ପଡ଼ ନାହିଁ । ବରଂ ରାଧାନାଥ ସମ୍ପ୍ରଦାୟର କବିମାନଙ୍କ ମଧ୍ୟରେ ପଲ୍ଲୀଚିତ୍ରର କବି ତାଙ୍କର ସ୍ୱଭାବ-ସୁନ୍ଦର କଳାକୌଶଳବଳରେ ରସସୃଷ୍ଟିର ଗୋଟିଏ ନବୀନ ଶୈଳୀ ଅବିଷ୍କାର କରିଛନ୍ତି, କିନ୍ତୁ ତାଙ୍କ ଶିର୍ଷିସ୍ଥା ରାଧାନାଥଙ୍କ ଶୈଳୀର ଗୋଟିଏ ଅନୁକରଣ ମାତ୍ର ହେଲେହେଁ ନନ୍ଦକିଶୋରଙ୍କ ପଲ୍ଲୀଚିତ୍ର ଭଳି ସରସ କାବ୍ୟ ସାରଲ୍ୟମଣ୍ଡିତ ସ୍ୱର୍ଗୀୟ ସୁଷମାରେ ଚିରଦେଦୀପ୍ୟମାନ ରହିବ । ସେପରି କାବ୍ୟ ଭାରତ ସାହିତ୍ୟରେ ଅତୁଳ କହିଲେ ଚଳେ । ଫକୀର-ମୋହନଙ୍କ ଖଣ୍ଡକବିତାରେ ଓ ଗଙ୍ଗାଧର ମେହେରଙ୍କ ଖଣ୍ଡକବିତାରେ ମଧ୍ୟ ନବାଲୋକର ରଶ୍ମିପାତ ସମୟ ସମୟରେ ଭାରି ମନୋହର; କିନ୍ତୁ ମୋଟ ଉପରେ ଗଙ୍ଗାଧର ସାହିତ୍ୟ ରାଧାନାଥଙ୍କ ପ୍ରଭାବରେ ଅତିଶୟ ପ୍ରଭାବାନ୍ୱିତ ଓ ସେଥିରେ ପ୍ରାଚୀନ ସାହିତ୍ୟର ଛାୟା ମଧ୍ୟ ପଡ଼ିଅଛି । ବରଂ ପଦ୍ମଚରଣ ପଟ୍ଟନାୟକଙ୍କର ପଲ୍ଲୀକୃଷକ ପ୍ରଭୃତିର ଉପଜୀବ୍ୟ ଭାବଧାରାରେ ମୌଳିକ ଦୃଷ୍ଟି ଓ ରସାନୁଭୂତି ଅଛି, କିନ୍ତୁ ଭାଷା ଓ ଶୈଳୀ ରାଧାନାଥଙ୍କ ପଦାଙ୍କ ଅନୁସରଣ କରିଅଛି । "କାଳୀଜାଇ" କବି ତାଙ୍କ ସ୍ୱନାମଧନ୍ୟ Ballad କବିତାରେ (ଅର୍ଥାତ୍ ଯେଉଁ କବିତା ଇତିହାସ, ପୁରାଣ, ଗଳ୍ପ, କିମ୍ବଦନ୍ତୀକୁ ଆଶ୍ରୟ କରି ନିରକ୍ଷର ଜନତାର ପଲ୍ଲୀଗ୍ରାମସୁଲଭ ରୁଚି ଓ କଳନାକୁ ସ୍ପର୍ଶ କଲା ଭଳି ସୁନ୍ଦର ସରସ ସରଳ କାବ୍ୟଧାରାକୁ ଅନୁସରଣ କରି ରସ ପରିବେଷଣ କରେ) ରାଜମାର୍ଗଚ୍ୟୁତ ନବୀନ ପନ୍ଥାର ଅବତାରଣା କରି ଲେଖନୀଚାଳନ କରିଅଛନ୍ତି । ଚନ୍ଦ୍ରାମଣି ଗୁରୁଙ୍କର ଅତି ବିଶ୍ୱସ୍ତ ଚେଲା ଓ ବେଣୀ ଦେହଲଗା ହୋଇପଡ଼ିଥିବାରୁ ଗୁରୁଙ୍କ ଦଣ୍ଡ କମଣ୍ଡଳ ଚମ୍ପୁଟାଠାରୁ ଆରମ୍ଭ କରି ନାସଦାନୀ, ଦାନ୍ତକୁଣ୍ଡା ପର୍ଯ୍ୟନ୍ତ ଅମ୍ଳସାତ୍ କରି ପକାଇଥିଲେ । ଗୁରୁଙ୍କ ଶତଗ୍ରନ୍ଥିଯୁକ୍ତ ସଚ୍ଛିଦ୍ର ଘଣ୍ଟ୍‌ଚୋପଟିରେ ତାଙ୍କର ଭାରି ପ୍ରୀତି ଓ ପ୍ରଗାଢ଼ ଆସକ୍ତି ଦେଖି ଲୋକେ ତାଙ୍କୁ ଉପହାସ କରନ୍ତି । କିନ୍ତୁ ସରଳପ୍ରାଣ କବି ତାକୁ ତାଙ୍କର ସସ୍ନେହ ଅଭିନନ୍ଦନ ମନେ କରି ଭାରି ଆତ୍ମପ୍ରସାଦ ଲାଭ କରନ୍ତି । ତାଙ୍କର ଶୈଳୀରେ ରାଜମାର୍ଗଚ୍ୟୁତ ଅନୁଚିକୀର୍ଷାପ୍ରାବଲ୍ୟରୁ ରାଜମାର୍ଗର ନବୀନତା ଖୋଜିବା ବାତୁଳତା ମାତ୍ର ।

ସେହିପରି ଆମ ସାହିତ୍ୟର ଉଦୀୟମାନ କବିମାନେ ରବୀନ୍ଦ୍ରନାଥଙ୍କ ପଦାରବିନ୍ଦର ମକରନ୍ଦ ପାନ କରି ଆନନ୍ଦରେ ଆତ୍ମହରା ହେଉଥିବା ସ୍ଥଳରେ ରାଗମାର୍ଗର କବି ବୋଲାଉଛନ୍ତି । ବ୍ରାହ୍ମଣକୁଳରେ ଜନ୍ମଗ୍ରହଣ କରି ଯଜ୍ଞସୂତ୍ରଟିଏ ବେକରେ ପକାଇ କପଟ-ବ୍ରହ୍ମତେଜଃଶୂନ୍ୟ ହୋଇ ମଧ୍ୟ ବ୍ରାହ୍ମଣର ଅନ୍ତକୁଳାଙ୍ଗାର ପୁଣି 'ବର୍ଣ୍ଣାନାଂ ବ୍ରାହ୍ମଣୋ ଗୁରୁଃ'ର ଦୋହାଇ ଦେଇ ବ୍ରାହ୍ମଣେତର ସର୍ବଜାତିର ବର୍ଣ୍ଣ-ବୟସ-ନିର୍ବିଶେଷରେ ପ୍ରଣମ୍ୟ ହୋଇ ଅଛନ୍ତି । ମହାତ୍ମାଜୀଙ୍କ ସମ୍ପ୍ରଦାୟର ସନ୍ତକସ୍ୱରୂପ ଖଦଡ଼ର ଖଣ୍ଡିଏ ଧାରଣ କରି ମହାତ୍ମାଜୀଙ୍କ ବାମନ ଅବତାରମାନେ କଳିହତ ଜୀବଙ୍କୁ ବଳିଦୈତ୍ୟଙ୍କ ବଂଶଧର ବିଚାରି ପାତାଳକୁ ପଠାଇବା ବାହାନାରେ ଲଙ୍ଗିପଦୀ ଛନ୍ଦରେ ସ୍ୱଚ୍ଛନ୍ଦବିହାର କରୁଛନ୍ତି । ପୁଣି ନାନ୍ୟପନ୍ଥୀ ମହାବିରକ୍ତଚୂଡ଼ାମଣି ବାବାଜୀମାନେ ଗୋଟିଏ ଗୋଟିଏ ନାମାନନ୍ଦୀ ଚିତା କାଟି ଜନସାଧାରଣଙ୍କୁ ଚିତାକାଟିବାର ଅଭିସନ୍ଧିରେ ଭେଜନାନନ୍ଦୀ ଦୀକ୍ଷାଗ୍ରହଣପୂର୍ବକ ଭଜନାନନ୍ଦୀଭାବରେ ଆମ୍ଭମାନଙ୍କର ନମସ୍ୟ ହୋଇ ରହିଛନ୍ତି । ସେପରି ସ୍ଥଳରେ ବିଶାଳ ବିଶ୍ୱଜଗତର ଏକଚ୍ଛତ୍ର କବିସମ୍ରାଟଙ୍କ ବିଶାଳ ଅନୁସଙ୍ଗରେ ପରିପାଳିତ ହୋଇ ଛନ୍ଦଭୃତ୍‌ମାନେ ପ୍ରତ୍ୟେକେ ଜଣେ ଜଣେ "ବଡ଼ଛତା ମହନ୍ତ" ସାଜି ଆମ୍ଭମାନଙ୍କୁ ଯେ ଚିତା କାଟିବେ ଏଥିରେ ଆଶ୍ଚର୍ଯ୍ୟର କଥା କଅଣ ଅଛି ? କାଳସ୍ୟ କୁଟିଳା ଗତିଃ ।

ମୋର କିନ୍ତୁ ଅଲେଖ ସମ୍ପ୍ରଦାୟର କୁକ୍ଷିମ୍ଭରିଦୀକ୍ଷା, ଯେନ ତେନ ପ୍ରକାରେଣ ଲମ୍ବୋଦରସେବାହିଁ ଏହାର ବୀଜମନ୍ତ୍ର । ଯେଉଁଠାରେ ଟିକିଏ ମଧୁର ଗନ୍ଧ ଅଛି ମଧୁପ ପରି କିମ୍ବା ଚନ୍ଦନ-ବିଷ୍ଠା-ଭେଦଜ୍ଞାନବିବର୍ଜିତ ପତଙ୍ଗଧର୍ମୀ ତୈଲଙ୍ଗ ସ୍ୱାମୀଙ୍କ ପରି ବସିପଡ଼ିଲେହିଁ ହେଲା । ଏଥିରେ ବିଧିମାର୍ଗ ବା ରାଗମାର୍ଗ, ନବୀନପନ୍ଥୀ ବା ପ୍ରାଚୀନପନ୍ଥୀ, ରହସ୍ୟବାଦ ବା ପ୍ରତୀକବାଦ, ବାସ୍ତବବାଦ ବା ଆଦର୍ଶବାଦ, ସାମ୍ୟବାଦ ବା କାମ୍ୟବାଦ, ଛାୟାବାଦ ବା ମାୟାବାଦ ହେଉ ସର୍ବଂ ମୋର ଅବ୍ୟାହତଗତି । କାଳିନ୍ଦୀ-ପାଣି-ଜଣା ସବୁଜ ରଙ୍ଗର ମୟୂରକଣ୍ଠୀରେ ମୋର ଯେ ଆଗ୍ରହ, ଗୋପାଳକୃଷ୍ଣନିସେବିତ ଗୋପାଳଚନ୍ଦ୍ରଙ୍କ ପୀତାମ୍ବରରେ ମଧ୍ୟ ତଦ୍ରୂପ

ଅଗ୍ରହ ଏବଂ ଶାନ୍ତି-ନିକେତନର ଶାନ୍ତିପୁରୀରେ ମଧ୍ୟ ମୋର ସେହିପରି ଲାଳସା; ତେବେ ଭଞ୍ଜଙ୍କ ଯମକମଞ୍ଜୁଳ ମାଣିଅବଳୀକୁ ଅତି ପୁରୁଣା-କାଳିଆ ବୋଲି ଉପେକ୍ଷା କରିବାକୁ ଦେହ ସହେ ନାହିଁ । ଗୋଟାଏ ମମତା ଜନ୍ମି ଯାଇଛି ବହୁକାଳ ସେବନଦୋଷରୁ ।

ଏହି ସମ୍ପର୍କରେ ଆଉରି ଗୋଟାଏ କଥା ପ୍ରଣିଧାନଯୋଗ୍ୟ । ବିଧିମାର୍ଗ ଓ ରାଗମାର୍ଗର ସ୍ୱଭାବସିଦ୍ଧ ପାର୍ଥକ୍ୟଟିକୁ ସ୍ଥୂଳଦୃଷ୍ଟିରେ ଦେଖିଲେ ଏହା ସହଜରେ ଜଣାଯାଏ ଯେ କବିତାରାଜ୍ୟରେ ଉପେନ୍ଦ୍ର ଭଞ୍ଜ ଯେଉଁ ଶ୍ରେଣୀର ହେଉନ୍ତୁ ନା କାହିଁକି, ସେ ଅତି ଅଳ୍ପ ମୂଳଧନ ନେଇ ଯେଉଁ କାବ୍ୟକଳାର ବିପଣୀଟିର ଶୁଭ ଦେଇଥିଲେ ସେଥିରେ ସେ ନିଜକୁ ଗୋଟିଏ ମାନ୍ୟଗଣ୍ୟ ପୁଞ୍ଜିପତିରୂପରେ ସ୍ୱାବଲମ୍ବନଶୀଳ ହୋଇ ନାନା ଢଙ୍ଗରେ ନବନବାୟୁମାନ କାର୍ତ୍ତିକ ପ୍ରତିଷ୍ଠିତ କରି ବାଗ୍‌ଦେବୀଙ୍କ ବାଣୀକୁଞ୍ଜକୁ ଦେଦୀପ୍ୟମାନ କରିଥିଲେ । କେବଳ ବିଦ୍ୱେଷ ପରଳା-ଚ୍ଛାଦିତ ନୟନରେ ନ ଦେଖି ଟିକିଏ ସହାନୁଭୂତିବ୍ୟଞ୍ଜକ ଦୃଷ୍ଟି ନିକ୍ଷେପ କଲେ ଜଣାଯାଏ, ସେ ତ ପୂର୍ବପ୍ରଚଳିତ ସନାତନ ରୀତି ଅନୁସରଣ କରି କେବଳ ପୌରାଣିକ ପୁରାତନ ଉପଜୀବ୍ୟ ବିଷୟ ନେଇ ଲେଖନୀ ଚାଳନ କରି ନାହାନ୍ତି । ନବ ନବ ଅନୁଭୂତିବ୍ୟଞ୍ଜକ ନବ ନବ ଉପଜୀବ୍ୟ ବିଷୟରେ ଲାବଣ୍ୟବତୀ ଓ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ପରି ସୁଦୀର୍ଘ କାବ୍ୟମାନ କଳ୍ପନା କରିଥିଲେ । ପୁଣି ସେଥିରେ ସେ ଯେଉଁ ବ୍ୟଞ୍ଜନାବୃତ୍ତିର ଅବତାରଣା କରିଛନ୍ତି ତାହା ଏପରି ଉପାଦେୟ ଓ ଉତ୍କୃଷ୍ଟ ହୋଇପଡ଼ିଛି ଯେ ଆଧୁନିକ ଯୁଗର ଶ୍ରେଷ୍ଠ ରହସ୍ୟବାଦୀଙ୍କ କଳା-ନୈପୁଣ୍ୟହିଁ କେବଳ ତାହାର ସମକକ୍ଷ ହେଲେ ହୋଇ ପାରେ । ତେବେ ସେଗୁଡ଼ିକର ପରିବେଶନ ଦୋଷରୁ ପାଠକପାଠିକାମାନେ ତାର ଆସ୍ୱାଦନର ମୂଲ୍ୟ ବୁଝି ପାରୁ ନାହାନ୍ତି । ଲୋକମାନଙ୍କ ରୁଚିର ପରିବର୍ତ୍ତନ ଅବଶ୍ୟମ୍ଭାବୀ ହୋଇ ପଡ଼ୁଥିବାରୁ ଯୁଗୋଚିତ ରୁଚିର ଅନୁକୂଳ ଉପେନ୍ଦ୍ର ଭଞ୍ଜଙ୍କ କବିତାର ସୌରଭଭରିରସବଶମ୍ବଦ ମନୋଜ୍ଞ-ଚୟନକାଟିର ଅତୀବ ଦରକାର । ଅମୂଲ୍ୟ ରତ୍ନରାଜି ଆଜି ସୁବର୍ଣ୍ଣରେଖାର

ବିସ୍ତୀର୍ଣ୍ଣ ବାଲୁକାରେ ଲୁକ୍କାୟିତ ରହିଥିବାରୁ ଚନ୍ଦନର ଗ୍ରାହକ ଜଣେ ଅଧେ ଛଡ଼ା ଅନ୍ୟ କେହି ତାହାର ସନ୍ଧାନ ପାଇ ନାହାନ୍ତି । ଏହି ସୁବିଧାବାଦର ଯୁଗରେ ଉପେନ୍ଦ୍ର କାଣୀକୁଞ୍ଜକୁ ରାଜମାର୍ଗ ନାହିଁ ଓ ଯାହା କିଛି ଅଛି ତାହା ଗୁଳ୍ମଗହଳ ଜଟିଳ ବେଣୀ ଉପଳପୂର୍ଣ୍ଣ ହୋଇ-ଯିବାରୁ ଯାତ୍ରୀ ଗତାଗତପକ୍ଷରେ ସୁବିଧାଜନକ ନୁହେଁ । ସୁତରାଂ ଏହି ବାଷ୍ପୀୟଯାନବହୁଳ ଯୁଗରେ ଗୋଟାଏ ସର୍ବଜନଗମ୍ୟ ରାଜପଥ ଉନ୍ମୁକ୍ତ ନ ହେବାଯାଏ ଆଧୁନିକ ଯୁଗର ସୁବିଧାବାଦୀ ଯାତ୍ରୀମାନେ କବି ପ୍ରେମିକଙ୍କର ପ୍ରେମବିପଣୀକୁ ଲକ୍ଷମନଖୋଲି ଦେଇ ଯିବାକୁ ମର୍ଜି ଉପରି ଲାଗୁ ନାହିଁ । ନିଛକ ଘରଭଙ୍ଗା ବିଦ୍ରୋହୀ ଦଳର ବିପ୍ଳବୀ ନେତାଙ୍କୁ କବିସ୍ୱତ୍ୱ ଦଇବାର ଚେଷ୍ଟା ନାହିଁ, କିନ୍ତୁ ତାଙ୍କୁ ପାଶ୍ଚାତ୍ୟ ଜଗତରେ ବିଶ୍ୱକବି ହିସାବରେ ପରିଚିତ କରିବାର ଅପଚେଷ୍ଟା ମଧ୍ୟ ଚାଲିଛି । ବସ୍ତୁତଃ ପ୍ରେମ ଅନ୍ଧ ଓ ପ୍ରେମାନ୍ଧ ବୁଦ୍ଧିବୃତ୍ତି ଯଦି ଭ୍ରମ ସୃଷ୍ଟି ହୁଏ ତେବେ ହିତେ ବିପରୀତହିଁ ଅନିବାର୍ଯ୍ୟ । ହିତୋପଦେଶରେ ବାନରବନ୍ଧୁର ଉତ୍ସାହ ପ୍ରୀତିର ଗୋଟାଏ ହୃଦୟଗ୍ରାହୀ ଦୃଷ୍ଟାନ୍ତ ଅଛି । ପ୍ରଭୁଭକ୍ତ ବାନରବନ୍ଧୁ ନିଦ୍ରାଭିଭୂତ ରାଜାଙ୍କୁ ବ୍ୟଜନ କରୁଥିବା ସମୟରେ ଗୋଟିଏ ମକ୍ଷିକା ବାରମ୍ବାର ରାଜାଙ୍କ ମୁଖକମଳ ମଧୁପାନରେ ଅଭ୍ୟସ୍ତ ହୋଇ ପଡୁଥିବାର ଦେଖି ପ୍ରଭୁଭକ୍ତଚୂଡ଼ାମଣି ରାଜାଙ୍କ ବାନରବନ୍ଧୁଟି ପାର୍ଶ୍ୱସ୍ଥିତ ରାଜାଙ୍କ ତୀକ୍ଷ୍ଣ ତରବାରି ଦ୍ୱାରା ରାଜବିଦ୍ରୋହୀର ସମୁଚିତ ଦଣ୍ଡ ଦେବାକୁ ଯାଇ ରାଜାଙ୍କ ମହାନିଦ୍ରାକୁ ପ୍ରଗାଢ଼ କରି ରାଜ ଉପଦ୍ରବର ଶାନ୍ତି କଲା । ସେହିପରି ପ୍ରେମାନ୍ଧ ଦୁର୍ବୁଦ୍ଧିତା ଅନେକ ସମୟରେ ବିପବର୍ଷଣ କରେ । ପ୍ରଥମେ ଦେଖିବାକୁ ହେବ ଜୟଦେବଙ୍କ ପରି ଉପେନ୍ଦ୍ରଙ୍କ କାବ୍ୟଶୈଳୀ ଅନୁବାଦର ଅତ୍ୟାଚାର ଏବଂ ପାଶ୍ଚାତ୍ୟ ଭାଷାର ଉତ୍ପୀଡ଼ନ ସହ୍ୟ କରିବାକୁ ରାଜି କି ନା । ଜୟଦେବଙ୍କ ଅତିପ୍ରସିଦ୍ଧ ବସନ୍ତବିଜୟ ଗୀତିକାଟି ଦେଖାଯାଉ :—

ଲଳିତ-ଲବଙ୍ଗ-ଲତା-ପରିଶୀଳନ-କୋମଳ-ମଳୟ-ସମୀରେ
ମଧୁକର-ନିକର-କରମ୍ବିତ-କୋକିଳ-କୂଜିତ-କୁଞ୍ଜ କୁଟୀରେ ।

ସେହିପରି ଭକ୍ତଙ୍କ "ଏକାକରେ, ବୃନ୍ଦରେ ସ୍ତ୍ରୀକରକୁ ଧରି,
ଚତୁର୍ଭୁଜଙ୍କ ଦର୍ଶନ ପାଇଁ ପଙ୍କରେ ଖଣ୍ଡରେ ଯାଉଛନ୍ତି"।

ଏହି ଦୁଇଟିରେହିଁ କାବ୍ୟକଳା ଧ୍ୱନିକୁ ଆଶ୍ରୟ କରି ରହିଥିବା ସ୍ଥଳରେ ତାହାର ଇଂରାଜୀଅନୁବାଦରେ କାବ୍ୟକଳାର କି ପରିଚୟ ଦିଆ-ଯାଇ ପାରେ ? ତାହାର ସମସ୍ତ ସୌନ୍ଦର୍ଯ୍ୟହିଁ ଏକରକମ ଅନୁପ୍ରାସଛଟା ଉପରେ ପ୍ରତିଷ୍ଠିତ ଥିବା ସ୍ଥଳରେ ଅନୁବାଦରେ ସେ ସୌନ୍ଦର୍ଯ୍ୟରକ୍ଷା ସମ୍ଭବ କି ? ସୂକ୍ଷ୍ମଦର୍ଶୀ ଯତୀନ୍ଦ୍ରମୋହନ ଏହା ଦର୍ଶାଇଛନ୍ତି।

## (ଗ) ଆତ୍ମନେପଦୀ ଓ ପରସ୍ମୈପଦୀ

## (Subjective and Objective)

ଅଭିବ୍ୟକ୍ତିଶୈଳୀ ଦୃଷ୍ଟିରେ ଯେପରି କବିତାକୁ ବୈଧୀ ଓ ରାଗାନୁଗା ଏହି ଦୁଇ ଶ୍ରେଣୀରେ ବିଭକ୍ତ କରାଯାଏ, ସେହିପରି ତାହାର ଉପଜୀବ୍ୟ ବିଷୟର ଅନୁଭୂତି ଦୃଷ୍ଟିରେ ପୁଣି ତାକୁ ଆତ୍ମନେପଦୀ (Subjective) ଏବଂ ପରସ୍ମୈପଦୀ (Objective) ଏହି ଦୁଇ ଶ୍ରେଣୀରେ ବିଭକ୍ତ କରାଯାଏ। କବି କୌଣସି ଦୃଶ୍ୟ ବା ବସ୍ତୁ ସନ୍ଦର୍ଶନ କରି ଯେପରି ବିଭାବିତ ହୁଅନ୍ତି ତାଙ୍କର ସେହି ହୃଦୟର ଅନୁଭୂତିକୁ କାବ୍ୟରେ ଅଭିବ୍ୟକ୍ତ କରି ଜନତାର ସମୀପରେ ଉପସ୍ଥାପିତ କରନ୍ତି; ତାଙ୍କର ଏହି ପରିବେଷଣକୁ Subjective ବା ଆତ୍ମନେପଦୀ କହାଯାଏ। ତାଙ୍କ ହୃଦୟର କଥା ସେ ନିଜେ କହିବାର ଚେଷ୍ଟା କରୁଥିବାରୁ ଏବଂ ଏହା କବିଙ୍କର ନିଜର ହୃଦୟର ଦ୍ୟୋତକ ହେବାରୁ ଏହା ଆତ୍ମନେପଦୀ (Lyric)। ସେହିପରି ସେ ଅନ୍ୟର ହୃଦୟର ଅନୁଭୂତିକୁ ଯଥାଯଥ ପ୍ରକାଶ କରିବାକୁ ଯାଇ ଆତ୍ମଗୋପନ କରନ୍ତି ଏବଂ ଏମନ୍ତ କି ସେ ଅଭିବ୍ୟକ୍ତିରେ ଯେପରି ତାଙ୍କ ନିଜ ହୃଦୟର ଛାୟା ନ ପଡ଼େ, ତାହାହିଁ ତାଙ୍କ ଆଦର୍ଶ ହେବା ଉଚିତ। ଯେପରି ବାଲ୍ମୀକି ଓ ବ୍ୟାସଦେବ ମହାକାବ୍ୟ ରଚନା କରି ଆତ୍ମ-ସଙ୍ଗୋପନପୂର୍ବକ କେବଳ ତାଙ୍କର ନାୟକ ଓ ନାୟିକାମାନଙ୍କର

ଅନ୍ତରର କଥାକୁ ଭାଷା ଦାନ କରିଛନ୍ତି । ରାବଣର ମନୋଭାବ ସଙ୍ଗରେ ବାଲ୍ମୀକିଙ୍କ ମନୋଭାବର ସୌସାଦୃଶ୍ୟ ନାହିଁ କି ରାମଙ୍କ ହୃଦୟ ସଙ୍ଗରେ ବାଲ୍ମୀକିଙ୍କ ହୃଦୟର ସାମ୍ୟ ନାହିଁ । ସୁତରାଂ ସେମାନଙ୍କ ବାକ୍ୟ ଉଦ୍ଧାର କରି ବାଲ୍ମୀକିଙ୍କ ମନୋଭାବ ବୁଝିବାର ଚେଷ୍ଟା ଅନୁଚିତ । ରାବଣଦ୍ୱାରା ଅପହୃତ ହୋଇ ସୀତାଙ୍କର ଯେଉଁ ମନୋବେଦନା ଜାତ ହେଲା, ତାହା ଅନ୍ତର୍ଯାମୀରୂପେ ବାଲ୍ମୀକି ଜାଣି ପାରିଥିଲେ; କିନ୍ତୁ ତାହା ବାଲ୍ମୀକିଙ୍କର ନିଜସ୍ୱ ନୁହେ । ସେହିପରି ପ୍ରତ୍ୟେକ କୁଶୀଲବର ଉକ୍ତି ପ୍ରତ୍ୟୁକ୍ତିରୁ ବାଲ୍ମୀକିଙ୍କ ହୃଦୟର କଥା ଜାଣିବା ଦୁଷ୍କର—ବୋଧହୁଏ ଅସମ୍ଭବ । "ତ୍ୱୟା ହୃଷୀକେଶ ହୃଦି ସ୍ଥିତେନ ଯଥା ନିଯୁକ୍ତୋଽସ୍ମି ତଥା କରୋମି" ଏହା ଦୁର୍ଯୋଧନଙ୍କର ଉକ୍ତି । ସୁତରାଂ ଏଥିରୁ ବ୍ୟାସଦେବଙ୍କ ଈଶ୍ୱରବିଶ୍ୱାସ ବିଷୟରେ କିଛି କହି ହେବ ନାହିଁ । "ମାରି ଅରି ପାରି ଯେ କୌଶଳେ" ଏହା ଦଶାନନଙ୍କର ରାଜନୀତି; ବାଲ୍ମୀକିଙ୍କର ସମର୍ଥନ ସେଥିରେ ନାହିଁ । "କାକୋଦର ପଶେ ଯଦି ଗରୁଡ଼ର ନୀଡ଼େ, ଫେରି ସେ କି ଯାଏ କହ"— ଏହି ବୀରବ୍ରତ ଓଜସ୍ୱିନୀ ବାଣୀ ମେଘନାଦଙ୍କ ମନର କଥା—ବାଲ୍ମୀକିଙ୍କର ନୁହେ । ସେହିପରି ଦୃଶ୍ୟକାବ୍ୟରେ ମଧ୍ୟ କବି ଆତ୍ମଗୋପନ କରି କୁଶୀଲବମାନଙ୍କର ହୃଦୟ ଉଦ୍‌ଘାଟନରେ ବ୍ରତୀ । ଶାଇଲକଙ୍କ କଥାରୁ କବିଙ୍କ ମନୋଭାବ ବୁଝି ହେବ ନାହିଁ । ପୁଣି ଦେସୋନିଅଙ୍କ ପ୍ରଣୟିନୀ ବିଦୂଷୀ ପୋର୍ସିଆଙ୍କ କୃପାବାଦଟି ସେକ୍ସପିଅରଙ୍କ ଉପରେ ଲଦି ଦେବା ମଧ୍ୟ ସମୀଚୀନ ନୁହେ । କାରଣ ସେ ତ ନାଟ୍ୟକାର; ସୁତରାଂ ଆତ୍ମ-ସଙ୍ଗୋପନହିଁ ତାଙ୍କର ସର୍ବଶ୍ରେଷ୍ଠ ଆଦର୍ଶ । ତେଣୁ ଦେଖାଯାଉଛି ମହାକାବ୍ୟ ଓ ଦୃଶ୍ୟକାବ୍ୟ (Epic and Drama) ପରସ୍ପର ପଦ୍ମା କବିତାଗନ୍ତୁ । ମାତ୍ର ଗୀତିକାବ୍ୟ (Lyric), ଦୃଶ୍ୟକାବ୍ୟ (Drama) ଏବଂ ମହାକାବ୍ୟ (Epic) ଛଡ଼ା ଅନ୍ୟର ଗୋଟିଏ ଆଖ୍ୟାୟିକା ଶ୍ରେଣୀର ବର୍ଣ୍ଣନାତ୍ମକ କାବ୍ୟର ଅନୁଶୀଳନ ଅଛି । ତାହା ପୁଣି ଘଟନାତ୍ମକ ଓ ଦୃଶ୍ୟାତ୍ମକ (Narrative and descriptive) ହିସାବରେ ଦୁଇ ଶ୍ରେଣୀର । ଏହା ସ୍ୱାନୁଭୂତିବ୍ୟଞ୍ଜକ ଓ ପରାନୁଭୂତିବ୍ୟଞ୍ଜକ କବିତାର

ସମ୍ମିଶ୍ରଣରୁ ସମ୍ଭବ ହୁଏ । ଏହାକୁ ବର୍ଣ୍ଣସଙ୍କର କାବ୍ୟ ବୋଲାଯାଇ ପାରେ କାରଣ ଘଟଣା ବର୍ଣ୍ଣନା କରିବାକୁ ଯାଇ କବି ଘଟଣାଟିର ସ୍ୱରୂପ ସନ୍ଧାନ କରି ଓ ନିଜର ହୃଦୟର ଆଲୋଡ଼ନକୁ ଯଥାସମ୍ଭବ ସଙ୍ଗୋପନ କରି ଲେଖନୀ ଧାରଣ କଲେ ଗୋଟିଏ ପରସ୍ମୈପଦୀ କବିତା ଗ୍ରନ୍ଥ ହୁଅନ୍ତା, କିନ୍ତୁ ତାହା ହୁଏ ନାହିଁ—କାରଣ କବି ଘଟଣାଟିର ଯଥାର୍ଥ ସ୍ୱରୂପକୁ ଘୋଡାଇ ତାଙ୍କର ମନଗଢ଼ା ମୂର୍ତ୍ତିଟିଏ ସୃଷ୍ଟି କରି ଆନନ୍ଦ ଭୋଗ କରନ୍ତି ।

ବଙ୍ଗକବି ନବୀନ ପଲାଶୀଯୁଦ୍ଧର ଐତିହାସିକ ଘଟଣାକୁ ଅବଲମ୍ବନ କରି ନିଜର କଳ୍ପନାସୌଧ ନିର୍ମାଣପୂର୍ବକ ନିଜର ହୃଦୟଗତ ଦେଶପ୍ରୀତିରେ ତାକୁ ସରସ ଓ ସ୍ନିଗ୍ଧ କରି ଆମ୍ଭମାନଙ୍କର ହୃଦୟକୁ ସ୍ପର୍ଶ କରିବାକୁ ଚେଷ୍ଟା କରିଛନ୍ତି । ଭାରତବାସୀର ଦୃଷ୍ଟିକୋଣରୁ ତାହା ଦେଖି ଘଟଣାଟିର ଐତିହାସିକ ସ୍ୱରୂପଟିକୁ ସ୍ୱଦେଶପ୍ରେମର ରସାଣରେ ରସାଣିତ କରି କବି କଳାନୈପୁଣ୍ୟ ଦେଖାଇଛନ୍ତି । ସୁତରାଂ ସେଥିରେ କବିଙ୍କ ନିଜ ହୃଦୟର ଛାପ ପଡ଼ିଅଛି; ତେଣୁ ତାହା ଅନେକଟା ଆତ୍ମନେପଦୀ ହୋଇ ଯାଇଅଛି । ଏହା ବର୍ଣ୍ଣସଙ୍କର ଶ୍ରେଣୀର କାବ୍ୟଗ୍ରନ୍ଥ ।

ଦୃଶ୍ୟବର୍ଣ୍ଣନାତ୍ମକ (Descriptive) କାବ୍ୟରେ କବି କଳ୍ପନା-ବ୍ୟୋମଯାନର ଆରୋହଣ କରି ଭୂତ ଭବିଷ୍ୟତ୍ ବର୍ତ୍ତମାନ ସର୍ବକାଳଦର୍ଶୀର ଆସନଗ୍ରହଣପୂର୍ବକ ଚକ୍ଷୁରିନ୍ଦ୍ରିୟଗ୍ରାହ୍ୟ ଦୃଶ୍ୟଟିର ( ଯଥା—ଚିଲିକା ) କଳ୍ପିତ ମାନସୀ ପ୍ରତିମା ଆମ୍ଭମାନଙ୍କ ସମ୍ମୁଖରେ ଉପସ୍ଥାପିତ କରିଅଛନ୍ତି । ସେଥିରେ ତାଙ୍କର କବିସୁଲଭ ଭାବପ୍ରବଣତାର ଛାପ ପଡ଼ିବାରୁ କବିତାଟି ଭାସ୍ୱ ଆତ୍ମନେପଦୀ (Subjective) ହୋଇପଡ଼ିଛି ।

ଦେଖାଯାଏ କବି ସବିଶେଷ ଆତ୍ମଗୋପନ ନ କଲେ ତାଙ୍କର ଘଟଣାବର୍ଣ୍ଣନାବୃତ୍ତି ସତ୍ୟାଶ୍ରିତ ନ ହୋଇ ବରଂ ମନଗଢ଼ା ବା କେତେକଟା କପୋଳକଳ୍ପିତ ହୋଇ ଉଠେ । ନଗ୍ନ ସତ୍ୟର ଦୋହାଇ ଦେଇ କବି ଗୋଟିଏ ଘଟଣା ଅବିକଳ ବର୍ଣ୍ଣନା କରି ପାରିଲେ ସେ ପୂର୍ଣ୍ଣ ସତ୍ୟସନ୍ଧ ଅର୍ଥାତ୍ ପରସ୍ମୈପଦୀ କବି ହୋଇ ପାରନ୍ତି; କିନ୍ତୁ ସଚରାଚର ସେପରି ଦେଖାଯାଏ ନାହିଁ । ଏମନ୍ତ କି ଦୃଶ୍ୟକାବ୍ୟରେ ମଧ୍ୟ ଏପରି

ପୁଣି ଆତ୍ମବିସ୍ମରଣ ଏବଂ ତତ୍କାଳୀନ ତନ୍ମୟତା ସ୍ୱଳ୍ପ ଦୁର୍ଲ୍ଲଭ ; ତେଣୁ ଦୃଶ୍ୟ-କାବ୍ୟ ପୂର୍ବ ପୂର୍ବ ପରିସ୍ଫୁଟିତ ହୁଏ ନାହିଁ । ମହାକାବ୍ୟ ତ ସୁଚୋରିତ ଅନୁଶୀଳନ ନୁହେଁ । ତାହାର ଗତିପଥ ଓ ପରିସ୍ଥିତି ସ୍ୱତନ୍ତ୍ର । ବିଶ୍ୱକବି ରବୀନ୍ଦ୍ରନାଥ ମହାକାବ୍ୟକୁ ପ୍ରାଚୀନପନ୍ଥୀ ବୋଲି ପରିତ୍ୟାଗ କରିଛନ୍ତି । ସେ ତେଣୁ କେବଳ ଖଣ୍ଡକାବ୍ୟକୁହିଁ ଆତ୍ମନିବେଦନର ପ୍ରକୃଷ୍ଟ ପନ୍ଥା ବୋଲି ଅବଲମ୍ବନ କରିଥିଲେ । ସେ କ୍ୱଚିତ୍ ଦୃଶ୍ୟକାବ୍ୟ ଲେଖିଛନ୍ତି । ଯେପରି ଗୋଟିଏ ମାତ୍ର ଭୂଙ୍ଗୀ ଗ୍ରହର ଗତିବିଧିରୁ ଜାତକର କୋଷ୍ଠୀଗଣନା କରାଯାଇ ପାରେ ସେହିପରି ଗୋଟିଏ ମାତ୍ର ଚିନ୍ତା ବା ଭାବଧାରାକୁ ଆଶ୍ରୟ କରି ଖଣ୍ଡକାବ୍ୟର (Lyric) ସୃଷ୍ଟି ହୋଇଥାଏ । ସୁତରାଂ ଉଲ୍ଲିଖିତ ଆଖ୍ୟାୟିକା ଶ୍ରେଣୀର ଦୀର୍ଘକାବ୍ୟକୁ ଖଣ୍ଡକାବ୍ୟ ଶ୍ରେଣୀରେ ଜୋର କରି ଶ୍ରେଣୀଭୁକ୍ତ କରାଯାଇ ନ ପାରେ । ପୁଣି ଏଣେ କେବଳ ଦୈର୍ଘ୍ୟ ପ୍ରସ୍ଥର ହିସାବରେ ମହାକାବ୍ୟର ସର୍ବଲକ୍ଷଣବିମୁକ୍ତ ରଚନାକୁ ମହାକାବ୍ୟ କହିବା ଶୋଭନୀୟ ନୁହେ । ତେଣୁ ଏହାକୁ ବର୍ଣ୍ଣନାତ୍ମିକା (ଆଖ୍ୟାୟିକା) କବିତା କହିବା ସମୀଚୀନ । କିନ୍ତୁ ଏହା ଖଣ୍ଡକାବ୍ୟ ନୁହେ କି ମହାକାବ୍ୟ ନୁହେ । ବାଦୁଡ଼ି ପରି ପଶୁ ନୁହେ କି ପକ୍ଷୀ ନୁହେ ଅଥଚ ଉଭୟର ଗୋଟିଏ ସୁନ୍ଦର ରଫାନାମା ବା ସାମଞ୍ଜସ୍ୟ । ତେଣୁ କାବ୍ୟଜଗତର ଦୁଇଟି ବିଭିନ୍ନ ଶ୍ରେଣୀର ସଙ୍କରୀକରଣରୁ ସମ୍ଭବ ହୋଇ-ଥିବାରୁ ଏହାକୁ ବର୍ଣ୍ଣସଙ୍କର କହିବାହିଁ ଶ୍ରେୟଃ । ପୁଣି ଆଧୁନିକ ସଭ୍ୟତାର ନିଦର୍ଶନସ୍ୱରୂପ ବର୍ଣ୍ଣସଙ୍କର ବିବାହର ପ୍ରସାର ଦିନକୁ ଦିନ ବଢ଼ି ଚାଲିଛି । ଦେଶାତ୍ମବୋଧକୁ ମାନି କବିମାନେ କବିତାଜଗତରେ ମଧ୍ୟ ଏହାର ମଙ୍ଗଳମୟୀ ବରଦା ମୂର୍ତ୍ତିରେ ଭକ୍ତି ଆକୃଷ୍ଟ ହୋଇ ପଡ଼ିଛନ୍ତି ଏବଂ ତଦ୍ଦ୍ୱାରା ମା ସାରଳାଙ୍କ କାବ୍ୟକୁଞ୍ଜର ଅତୁଳନୀୟ ଶ୍ରୀବୃଦ୍ଧି ସମ୍ପାଦିତ ହୋଇଅଛି, ତାହା ବୋଲିବା ବାହୁଲ୍ୟ ମାତ୍ର । ପ୍ରାୟ ଓଡ଼ିଶାର ସମସ୍ତ କଳକଣ୍ଠ କୋକିଳମାନେ ଏହି ବର୍ଣ୍ଣସଙ୍କରଙ୍କ ସ୍ରଷ୍ଟା । ଅଳ୍ପ କେତୋଟି ଖଣ୍ଡକାବ୍ୟକୁ ଛାଡ଼ିଦେଲେ ଖୁବ କମ ଲୋକ ମହାକାବ୍ୟ ଲେଖି ଛନ୍ତି । ଖଣ୍ଡକାବ୍ୟର ପ୍ରଚଳନ ଖୁବ ବିରଳ ଲକ୍ଷିତ ହୁଏ । ତେବେ

ଏହିପରି ଅଖ୍ୟାୟିକା (Episode) ବା ବର୍ଣ୍ଣନାତ୍ମକ କାବ୍ୟ ପ୍ରାୟ ସମସ୍ତେ ଲେଖି କୃତିତ୍ୱ ଅର୍ଜ୍ଜନ କରିଛନ୍ତି । ରବୀନ୍ଦ୍ରନାଥହିଁ ବଙ୍ଗ-ଦେଶରେ ଖଣ୍ଡକବିତାର ମୁଖପଥ ଭଳି ଲେଖନୀ ଧାରଣ କରିଛନ୍ତି । ମାଇକେଲ, ହେମଚନ୍ଦ୍ର, ନବୀନ୍ ସେନ କେତେକଟା ମହାକାବ୍ୟର ଛାଞ୍ଚରେ ମେଘନାଦବଧ, ବୃତ୍ରସଂହାର ଓ ରୈବତକ ପ୍ରଭୃତି ଲେଖିଛନ୍ତି । ସେଗୁଡ଼ିକୁ ମହାକାବ୍ୟର ବାମନ ଅବତାର କହିଲେ ଚଳେ । ଅଖ୍ୟାୟିକା (Episode) କହିଲେ ଛିଡ କଅଣ ? ସୋରାବ ଏବଂ ରୁସ୍ତମ ନାମକ କବିତାକୁ ସେମାନେ ଅଖ୍ୟାୟିକା କହନ୍ତି । ବଗିଚା ଭିତରେ ବାଗର ଗୋଟିଏ କ୍ଷୁଦ୍ର ସଂସ୍କରଣ । ବାଗର ସବୁ କଳା ବଗିଚାଠାରେ ବିଦ୍ୟମାନ । ସେହିପରି ଅଖ୍ୟାୟିକାରେ ମହାକାବ୍ୟର ଲକ୍ଷଣ କିଛି କିଛି ଥାଏ । ମାତ୍ର Wordsworth ଙ୍କ Prelude ରେ କମ୍ବା ରାଧାନାଥଙ୍କ ଉଷା ଓ ମହାଯାତ୍ରାରେ କମ୍ବା ଟେନିସନଙ୍କ Princess ରେ ଏବଂ ଅଭିମନ୍ୟୁବଧରେ କ ପ ଙ୍ଗରେ ମହାକାବ୍ୟର ଲକ୍ଷଣ ଅନୁସନ୍ଧାନ ନ କରିବାହିଁ ଉଚିତ । ଏପରି ଅନେକ କାବ୍ୟ ଆମ ଦେଶରେ ଆବର୍ତ୍ତିତ ହୋଇ କାବ୍ୟକଳାର ଅଙ୍ଗସୌଷ୍ଠବ ବଢ଼ାଇ ଅଛି । Words-worthଙ୍କ Prelude ର ଆକାର, ବର୍ଣ୍ଣନାବୈଚିତ୍ର୍ୟ ଓ ଭାବଶାବଲ୍ୟରୁ ତାକୁ ଖଣ୍ଡକାବ୍ୟ ବା (Lyric) କହିବା ଉଚିତ ନୁହେଁ ଓ ମହାକାବ୍ୟ କହିବା ମଧ୍ୟ ଉଚିତ ନୁହେଁ । ଦୃଶ୍ୟକାବ୍ୟ (Drama) ର ସ୍ୱତନ୍ତ୍ର ଅନୁଶୀଳନ । ତେଣୁ ତାହାକୁ ବର୍ଣ୍ଣନାତ୍ମକ ବର୍ଣ୍ଣସଙ୍କର କହିବାହିଁ ଯୁକ୍ତିଯୁକ୍ତ । ରାଧାନାଥଙ୍କ ଉଷା ଓ ମହାଯାତ୍ରା ଅନେକଟା ସେହିପରି । ମଧୁବାବୁଙ୍କ ଉପକ୍ରମଣିକାହିଁ ରାଧାନାଥଙ୍କ ମହାଯାତ୍ରାକୁ ମହାକାବ୍ୟରୂପେ ସର୍ବପ୍ରଥମେ ଉପସ୍ଥାପିତ କରିଥିବାର ଜଣାଯାଏ । କିନ୍ତୁ ବର୍ତ୍ତମାନ ଜଣେ ଲବ୍ଧପ୍ରତିଷ୍ଠ ସାହିତ୍ୟରଥୀ ତାହାର ପ୍ରତିବାଦ କରି ଉକ୍ତ ଭ୍ରାନ୍ତ ଧାରଣାଟି ନିର୍ମୂଳ କରିଛନ୍ତି ବୋଲି ମୋର ବିଶ୍ୱାସ । ସେ କେବଳ ମାୟାବାଦୀର 'ନେତି ନେତି' କହି ରହସ୍ୟରେ ସର୍ପଭଞ୍ଜନ ପର୍ଯ୍ୟନ୍ତ ପହୁଞ୍ଚିଛନ୍ତି; ସୁତରାଂ ତାଙ୍କର ସ୍ୱରୂପ ଉପଲବ୍ଧି ହୋଇ ନ ଥିବାରୁ ସେ ସମ୍ବନ୍ଧରେ

ଅସ୍ଥାବାନ୍ ହୋଇ ନାହାନ୍ତି । ମହାଯାତ୍ରା ମହାକାବ୍ୟ ନୁହେଁ ସତ୍ୟ, ତେବେ କଅଣ ଏହା ମଦ୍ରମସଂଗତଙ୍କ ପରି ସନ୍ତ୍ରାସକ କବ୍ୟ ରଚ୍ଚନରେ ପର୍ଯ୍ୟବସନ ପରି ଗୋଟାଏ ମହାଭ୍ରମ ମାତ୍ର ? କବି କଅଣ ମହାଯାତ୍ରାକୁ ମହାକାବ୍ୟ ଦୃଷ୍ଟିରେ ଲେଖିଛନ୍ତି ? ସେ କଅଣ ଏହାକୁ ମହାକାବ୍ୟ ରୂପେ ଗ୍ରହଣ କରାଯାଉ ବୋଲି ଇଚ୍ଛା କରୁଛନ୍ତି ? ପୁଣି ତାଙ୍କର ଇଚ୍ଛା ଓ ଅନିଚ୍ଛାକୁ ବାଦଦେଲେ ମଧ୍ୟ ମହାଯାତ୍ରାକୁ କଅଣ କାବ୍ୟଜଗତରେ "ଉପେକ୍ଷିତା" ଶ୍ରେଣୀରେ ଅପାଂକ୍ତେୟ କରି ରଖାଯିବ ? ସୁତରାଂ ଏପରି ଶ୍ରେଣୀବିଭାଗ ବର୍ଣ୍ଣନା ବଳରେ ମହାଯାତ୍ରାକୁ ଶ୍ରେଣୀଭୁକ୍ତ କରି ନ ପାରିଲେହେଁ ମହାଯାତ୍ରାର ମର୍ଯ୍ୟାଦା ଲଙ୍ଘନ କରିବା କଠିନ । ଅମିତ୍ରାକ୍ଷରର ସର୍ବପ୍ରଥମ ପ୍ରବର୍ତ୍ତିକ ରୂପେ ଏହା ରାଧାନାଥଙ୍କର ଗୋଟିଏ ଅନବଦ୍ୟ ଅବଦାନ । ପୁଣି ଉତ୍କଳର ପ୍ରାକୃତିକ ଶୋଭା ବର୍ଣ୍ଣନାରେ ରାଧାନାଥ ଏଥିରେ ଯେଉଁ କୃତିତ୍ୱ ଅର୍ଜନ କରିଛନ୍ତି ତାହା ମଧ୍ୟ ଉପେକ୍ଷଣୀୟ । ଏହାର ରସପରିବେଶନ ପରିପାଟୀ ତାଙ୍କର ଅନ୍ୟାନ୍ୟ କବିତାର ରସପରିବେଶନ ପରିପାଟୀଠାରୁ ସ୍ୱତନ୍ତ୍ର । ଏହା ମହାକାବ୍ୟ ନ ହେଲେହେଁ ଏଥିରେ ମହାକାବ୍ୟସୁଲଭ କଳାନୈପୁଣ୍ୟ ଅନେକତା ଅଛି ଏବଂ ତାହା ଅତି ଅଭିନବ ଧରଣର । ଏହା ସ୍ୱରୂପତଃ ମହାକାବ୍ୟ ନ ହେଲେହେଁ ଏହା କାବ୍ୟ ହିସାବରେ ଉଚ୍ଚକୋଟିର । ଏଥିରେ କବିଙ୍କର ବହୁତୋମୁଖୀ ମୌଳିକତାର ନିଦର୍ଶନ ମିଳେ । ଏହା ମୁଖ୍ୟତଃ ଗୋଟିଏ ବର୍ଣ୍ଣନାତ୍ମକ କାବ୍ୟ ହେଲେହେଁ ଏହାର ରସପରିବେଶନର ବୈଚିତ୍ର୍ୟ ପ୍ରଣିଧାନଯୋଗ୍ୟ; ସୁତରାଂ ଏହା ଉପେକ୍ଷିତ ହେବାର ଯୋଗ୍ୟ ନୁହେଁ । ଅପାଂକ୍ତେୟ ହୋଇ ରହିଲେହେଁ ଏହାର କାବ୍ୟପ୍ରାସରେ ଉତ୍କଳର ବାଣୀକୁଞ୍ଜ ଚିରଦେଦୀପ୍ୟମାନ ରହିବ । ଗଳ୍ପର ପରିତାପର ବିଷୟ ଏହି ଯେ, ଅମ୍ଭମାନଙ୍କର ଦୁର୍ଭାଗ୍ୟରୁ ଏ ମହାଗୀତର ସୁଦିବ୍ୟ ଝଙ୍କାର ହଠାତ୍ ଖଣ୍ଡିତ ହୋଇଗଲା ।

କରୁଣ ବିରହାତ୍ମକ କବିତା ଦୀର୍ଘ ହେଲେହେଁ (Elegy) ଖଣ୍ଡକାବ୍ୟ ଶ୍ରେଣୀ (Lyric) ରେ ସ୍ଥାନ ପାଇଥାଏ । ଟେନିସନଙ୍କର In memo-

riam ଏବଂ ଶେଲୀଙ୍କ (Adonais), ମଧୁବାବୁଙ୍କ ଉତ୍କଣ୍ଠୋଚ୍ଛ୍ୱାସ ସଚ୍ଚି ରାଉତରାୟଙ୍କ ବାଜି ରାଉତ ପ୍ରଭୃତି ଅପେକ୍ଷାକୃତ ଦୀର୍ଘ ହେଲେହେଁ ଖଣ୍ଡକାବ୍ୟ ସ୍ଥାନୀୟ । ଏମନ୍ତ କି ମେଘଦୂତ ମଧ୍ୟ ଏହି ଶ୍ରେଣୀର । ଏହାକୁ ବର୍ଣ୍ଣନାତ୍ମକ ( Descriptive ) କବିତା କହିବା ସମୀଚୀନ ନୁହେ ; କାରଣ ଅନ୍ତଃସଲିଳା ନିରଞ୍ଜନାସମ ପ୍ରବାହିତା ବିରହର ବିଦଗ୍ଧ-ମାଧୁରୀହିଁ ଏ କବିତାର ପ୍ରାଣ । ପ୍ରାକୃତିକ ବର୍ଣ୍ଣନା ଏହାର ପୋଷକ ମାତ୍ର । ବର୍ଣ୍ଣନାତ୍ମକ କାବ୍ୟରେ ବର୍ଣ୍ଣନାଶୈଳୀହିଁ ମୁଖ୍ୟ ହେବା ଉଚିତ । ତେଣୁ "ଉତ୍କଣ୍ଠୋଚ୍ଛ୍ୱାସ" ଏବଂ "ବାଜି ରାଉତ" ବିରହାତ୍ମକ ଖଣ୍ଡକାବ୍ୟ (Elegy), ଅଶ୍ରୁମନ୍ଦାକିନୀ ଧାରରେ ଅଭିସିଞ୍ଚିତ ମିଳନର ମନ୍ଦାରକଳିକା ।

## (ଗ) ଆଶାବାଦ (Optimism) ଓ ନୈରାଶ୍ୟବାଦ (Pessimism)

କବିଙ୍କର କାବ୍ୟକଳା ତାଙ୍କର ହୃଦୟର ଗଭୀରତମ ଅନୁଭୂତିର ଗୋଟିଏ କଳାନୁମୋଦିତ ଅଭିବ୍ୟକ୍ତି ମାତ୍ର । ସୁତରାଂ ଉକ୍ତ ଅନୁଭୂତିରେ କବିଙ୍କର ହୃଦ୍‌ଗତ ବିଶ୍ୱାସର ଗୋଟିଏ ମୁଦ୍ରାଙ୍କ ସୁସ୍ପଷ୍ଟ ହେବାର କଥା । ବିଶେଷତଃ ଆତ୍ମନେପଦୀ କବିତା (Subjective Poetry) ରେ ତାହାର ଅଭ୍ରାନ୍ତ ନିଦର୍ଶନ ମିଳେ । ତେଣୁ କବି ଆଶାବାଦୀ କି ନୈରାଶ୍ୟବାଦୀ, ଆନନ୍ଦବାଦୀ କି ନିରାନନ୍ଦବାଦୀ ସହଜରେ ଜଣାଯାଏ । କବି କହନ୍ତି—

"ହସି ଖେଳି ଯେତେ ଗମାନ୍ତ ସମୟ,
ଜୀବନ ମଣନ୍ତି ମହୋତ୍ସବମୟ ।
ସ୍ଥିର ଭାଗ୍ୟ ମୋର ପିହିତ ପାଷାଣେ,
ମୋ ଜୀବନ ଗଢ଼ା ଆନ ଉପାଦାନେ" ।

ଏଥିରୁ କବି ଯେ ଜୀବନର ଚିତାପଜ୍ୱାଳାରେ ଦହ୍ୟମାନ ହୋଇ ଏ କେତୋଟି ପଂକ୍ତି ଲେଖିଛନ୍ତି, ଏହା ସହଜରେ ବୁଝାଯାଏ । ତେଣୁ

କବିଙ୍କ ମନୋବୃତ୍ତିକୁ ନିରାନନ୍ଦବାଦର ଆଧାର କହିବାହିଁ ସମୀଚୀନ ହେବ। କବି ମଧୁସୂଦନ କହିଲେ, "ତୋର ମଙ୍ଗଳ ବିଧାନ, କରିଅଛୁ ମରଣକୁ ଅମୃତ ସୋପାନ"; କବି ଏଠାରେ ମୃତ୍ୟୁର ବରଦା ମୂର୍ତ୍ତି ଦେଖି ଭାସି ଆଶାଯୁଁ ହୋଇ ବସିଅଛନ୍ତି। କବିଙ୍କୁ ତେଣୁ ଆଶାବାଦୀ (Optimistic) କହିବାହିଁ ଯୁକ୍ତିଯୁକ୍ତ। କବି ଲେଖିଛନ୍ତି :—

"ଖଣ୍ଡି ଯେ ଖଣ୍ଡି ତୋର ପଞ୍ଜର କାଠି,
ଖାଉଣ ଥିବେ ଶ୍ୱାନ ଶୃଗାଳ ବାଣ୍ଟି"

କବି ଅହମିକା-ଭୂମିକାରୂଢ଼ ମାନବର ଘୋର ଦେହାତ୍ମବୋଧକୁ ତୀବ୍ର କଟାକ୍ଷ କରି ଐହିକ ସୁଖର ଶେଷ ପରିଣାମଟିର ଲଜ୍ଜାବହ ନଗ୍ନ ମୂର୍ତ୍ତିର ଗୋଟିଏ ଅତି-ବାସ୍ତବ ଛବି ଅଙ୍କନ କରିଅଛନ୍ତି। ଏହାକୁ ନୈରାଶ୍ୟବାଦ ବା ଦୁଃଖବାଦ ନ କହି ବସ୍ତୁନିଷ୍ଠତାବାଦ ବୋଲିଯାଇ ପାରେ। କେହି କେହି କହନ୍ତି—

"ଋଣଂ କୃତ୍ୱା ଘୃତଂ ପିବେତ୍,
ଯାବତ୍ ଜୀବେତ୍ ସୁଖଂ ଜୀବେତ୍,
ଭସ୍ମୀଭୂତସ୍ୟ ଦେହସ୍ୟ ପୁନରାଗମନଂ କୁତଃ ?"

ଏହା ନିରାଟ ସୁଖବାଦ। ଏଥିରେ ଆଶା ବା ନୈରାଶ୍ୟର ମୂର୍ଚ୍ଛନା ନାହିଁ। କିନ୍ତୁ ରବୀନ୍ଦ୍ରନାଥଙ୍କର

"ଜୀବନେ ଅତୋ ଯାହା ହୟେନି ସାରା,
ଜାନିହେ ଜାନି ତାଓ ହୟନି ହାରା।
ଯେ ଫୁଲ ନା ଫୁଟିତେ, ଝରେଛେ ଧରଣୀତେ,
ଯେ ନଦୀ ମରୁପଥେ ହାରାଲ ଧାରା,
ଜାନି ହେ ଜାନି ତାଓ ହୟନି ହାରା। ୧।
ଜୀବନେ ଆଜ ଓ ଯାହା ରୟେଛେ ପିଛେ,
ଜାନିହେ ଜାନି ତାହା ହୟନି ମିଛେ।
ଆମାର ଅନାଗତ, ଆମାର ଅନାହତ
ତୋମାର ବୀଣାତାରେ ବାଜିଛେ ତାରା"। ୨।

ଏପରି ବଳିଷ୍ଠ ଆଶାବାଦ ପୃଥିବୀ ଇତିହାସରେ ଦୁର୍ଲଭ ବିରଳ; କେବଳ ଓ୍ୱର୍ଡ଼ସ୍‌ୱର୍ଥ (Wordsworth) ଏବଂ ବ୍ରାଉନିଂ (Browning) ଙ୍କର ଆଶାବାଦ କେତେକାଂଶ ଏହିପରି ସାର୍ବଭୌମ ବିଶ୍ୱାସ ଭୂମିକା-ଉପରେ ପ୍ରତିଷ୍ଠିତ । ଏମାନେ ପରମାନନ୍ଦବାଦୀ ଗୋଷ୍ଠୀର କବି । ଏହିପରି ନାନା-ବାଦ ବିସମ୍ବାଦର ସମ୍ବାଦ ବହନ କରି କବିଙ୍କର ଅନୁଭୂତି ଆତ୍ମପ୍ରକାଶ କରେ । କ ଆତ୍ମନେପଦୀ ( Subjective ) କ ପରସ୍ମୈପଦୀ (Objective) ସର୍ବବିଧ କଳାକୃତିରେ ଆଶାବାଦ ବା ନୈରାଶ୍ୟବାଦର ମୁଦ୍ରାଙ୍କ ସୁସ୍ପଷ୍ଟ ହୋଇଥାଏ । ଏହା କବିଙ୍କ ଦୃଷ୍ଟିକୋଣର ପରିମାପକ ଅଟେ ।

ଦାର୍ଶନିକର ଦୃଷ୍ଟିକୋଣରୁ ଅତି ବ୍ୟାପକଭାବରେ ଦେଖିବାକୁ ଗଲେ ପୋଥି ବଢ଼ିଯିବ ; ସୁତରାଂ କଳାର ସୀମାବଦ୍ଧ ଦୃଷ୍ଟିକୋଣରୁ ଏହି ଅନନ୍ତ ବୈଚିତ୍ର୍ୟମୟୀ କବିଙ୍କ ଅନୁଭୂତିର ସମୀକରଣର ଚେଷ୍ଟା କରାଯାଉ । କବିମାନେ ଲଳିତକଳାନୁମୋଦିତ ସୌନ୍ଦର୍ଯ୍ୟର ସୁବୋଧା ; ସୁତରାଂ ବିଶ୍ୱର ଅନ୍ତର୍ନିହିତ ସୁଷମାରାଜ୍ୟର ସାମଞ୍ଜସ୍ୟ ଉପରେ ଦୃଷ୍ଟି ନିବଦ୍ଧ କରି ସୌନ୍ଦର୍ଯ୍ୟ-ରସାସ୍ୱାଦନରେ ନିମଗ୍ନ ଥିବାଯାଏ ଆନନ୍ଦମନ୍ଦାକିନୀରେ ଅବ-ଗାହନ ଅନିବାର୍ଯ୍ୟ । ସୁତରାଂ ଆନନ୍ଦବ୍ରହ୍ମର ଆରାଧନାରେ ନିରାନନ୍ଦର ସମ୍ବାଦ ଅଗୋଚରୀଭୂତ । ତେବେ କବି କପରି ସ୍ଥଳବିଶେଷରେ ନିରାନନ୍ଦମୟୀ ନୈରାଶ୍ୟବାଣୀର ଅବତାରଣା କରି ନୈରାଶ୍ୟବାଦୀ ବା ନିରାନନ୍ଦବାଦୀ ବୋଲାଉଛନ୍ତି, ତାହାର ସୂକ୍ଷ୍ମ ପ୍ରଣିଧାନ କର୍ତ୍ତବ୍ୟ । କେବଳ ସ୍ଥୂଳଦୃଷ୍ଟିରେ ଯେଉଁମାନେ ନିରାନନ୍ଦବାଦୀ ବୋଲି କଥାଯାଉଛନ୍ତି, ସେମାନେ କପରି କାବ୍ୟାମୃତରସାସ୍ୱାଦଜନିତ ଆନନ୍ଦର ସନ୍ଧାନ ଅପରକୁ ଦେବେ ? ଏହା ମଧ୍ୟ ବିଚାର କରି ଦେଖିବା ଉଚିତ ।

ଆମ ଦେଶରେ ବିରହାତ୍ମକ କାବ୍ୟ ଓ ନାଟକ ନାହିଁ ବୋଲି ଲୋକେ କହନ୍ତି । ଆର୍ଯ୍ୟ ଭାରତର ଦୃଷ୍ଟିକୋଣର ବୈଶିଷ୍ଟ୍ୟ ନ ଜାଣି ଲୋକେ ଏପରି ଆକ୍ଷେପ କରିଥାଆନ୍ତି । ସେହିପରି ଭାରତର ସୂକ୍ଷ୍ମତର ଦୃଷ୍ଟିକୋଣର

ମର୍ଯ୍ୟାଦା ହୃଦୟଙ୍ଗମ ନ କରି ଆମ୍ଭମାନଙ୍କ ଦେଶରେ ଗଦ୍ୟସାହିତ୍ୟ ନାହିଁ ବୋଲି ଅନେକେ ଆକ୍ଷେପ କରନ୍ତି, ସେହିପରି ଖାଦ୍ୟସଙ୍କଟକୁ ଲକ୍ଷ୍ୟ କରି କୃଷିପ୍ରଧାନ କେନ୍ଦ୍ରମାନଙ୍କରେ ଇନ୍ଦ୍ରଙ୍କ ନନ୍ଦନକାନନ ପରି କେବଳ ବିଳାସିତାର ପ୍ରତୀକସ୍ୱରୂପ ପୁଷ୍ପୋଦ୍ୟାନଗୁଡ଼ିକୁ ନିର୍ମୂଳ କରି ଗୋମୟପଲ୍ୱଲର ବହୁଳ ପ୍ରୟୋଜନୀୟତା ସ୍ୱୀକାର କରାଯାଉଅଛି ଏବଂ ଧାନ୍ୟସଙ୍କଟ ନିବାରଣ ପାଇଁ କୃଷିକ୍ଷେତ୍ରଗୁଡ଼ିକୁ ଉର୍ବର କରିବାକୁ ହେଲେ କୃଷିସାରସୃଷ୍ଟିବିଧାୟକ ଗୋମୟ ପଲ୍ୱଳମାନଙ୍କର ସାରବତ୍ତା ହୃଦୟଙ୍ଗମ କରିବା ଉଚିତ । ଯୁଦ୍ଧୋତ୍ତର ଦର ବୃଦ୍ଧି ପାଇ ଯିବାରୁ ହିତବାଦନୀତିବିପୂର୍ଣ୍ଣ ଜଣେ ଭୂସ୍ୱାମୀ ତାଙ୍କର ଦେଶବିଖ୍ୟାତ ସହକାରକୁଞ୍ଜକୁ ନିର୍ମୂଳ କରି ଲଳିତା-କୃଷିର ଲଳିତ-କଳାସୃଷ୍ଟିର ସଙ୍ଗେ ସଙ୍ଗେ ତାଙ୍କ ରାଜକୋଷପୁଷ୍ଟିର କାଳୋଚିତ ବ୍ୟବସ୍ଥା କରିଛନ୍ତି । ଏପରି ଉଦରସର୍ବସ୍ୱ ହୃଦୟହୀନ ବ୍ୟବସ୍ଥା ଆର୍ଯ୍ୟଭାରତକୁ ଜଣା ନ ଥିବାରୁ ସେମାନଙ୍କ ଦୃଷ୍ଟି ଅନ୍ୟତ୍ର ନିବଦ୍ଧ ଥିଲା । ସେହି ଦୃଷ୍ଟିକୋଣର ସନାତନ ବୈଶିଷ୍ଟ୍ୟକୁ ବିଶ୍ଳେଷଣ କଲେ ଜଣାଯିବ କାହିଁକି ବିରହାତ୍ମକ କାବ୍ୟ ଓ ନାଟକ ଆର୍ଯ୍ୟସାହିତ୍ୟରେ ସମ୍ଭବ ହୋଇ ନାହିଁ । ସେମାନଙ୍କର ଭୁବନବିଖ୍ୟାତ ମହାକାବ୍ୟଦ୍ୱୟ ବାହାରକୁ ଶ୍ରୀ ବିରହାତ୍ମକ କାବ୍ୟ (Tragedy) ପରି ଜଣାଗଲେହେଁ ବସ୍ତୁତଃ ବିରହାତ୍ମକ ନୁହନ୍ତି । ଆର୍ଯ୍ୟ ଭାରତର ବିଶ୍ୱାସ ମନୁଷ୍ୟ ଆନନ୍ଦର ସନ୍ତାନ; ସଚ୍ଚିଦାନନ୍ଦ ଭଗବାନଙ୍କର ନିତ୍ୟସେବକ । ସେ କୌଣସି କାରଣରୁ ହଠାତ୍ ସ୍ୱରୂପବିମୁଖ ହୋଇ ଓ ନିଜେ ଚେତନସ୍ୱରୂପ ହୋଇ ମଧ୍ୟ ଅଚେତନ ଜଡ଼ସଙ୍ଗରେ ଏପରି ପ୍ରଗାଢ଼ ଘନିଷ୍ଠତା ଓ ମମତା ସ୍ଥାପନ କରି ପକାଇଛି ଯେ ସେ ନିଜର ସ୍ୱରୂପ-ସତ୍ତାକୁ ଭୁଲି ଦେହାତ୍ମବାଦୀ ହୋଇପଡ଼ିଛି । ଏହି ବହିର୍ମୁଖୀ ଅବସ୍ଥାରେ ତାହାର କ୍ଷଣିକ ଦୁଃଖାନୁଭୂତି ଅବଶ୍ୟମ୍ଭାବୀ ହୋଇ ପଡ଼ୁଛି । କିନ୍ତୁ ଏହା ଅନାଦି ହେଲେହେଁ ଅନନ୍ତ ନୁହେଁ, ସୁତରାଂ ପ୍ରତ୍ୟେକ ମନୁଷ୍ୟକୁ ଦିନେ ହେଲେ ସ୍ୱରୂପ ସତ୍ତା ଉପଲବ୍ଧି କରି ନିତ୍ୟାନନ୍ଦ ଧାମକୁ ଫେରିବାକୁ ହେବ । ବହିର୍ବିଭଣ୍ଡା ଆଉ କେତେଦିନ ରହନ୍ତା ? ପଞ୍ଚକୋଷପରିମିତ

ଅବରଣକୁ ଭେଦ କରି ଜୀବାତ୍ମା ଆନନ୍ଦମୟ କୋଷରେ ଚିରପ୍ରତିଷ୍ଠିତ ହେଲେ ପୁଣି ନିରାନନ୍ଦର ସମ୍ଭାବନା ନାହିଁ । ତାହାର ଅବ୍ୟବହିତ ପୂର୍ବର ଏହି ଅଧ୍ୟାତ୍ମିକ ଅବସ୍ଥାରେ ଯେଉଁ ଦୁଃଖ ଓ ଦୁଃଖର ଅନୁଭୂତି ହୁଏ, ତାହାହିଁ ଅସ୍ମମାନଙ୍କର ମାନସିକ ଦୃଷ୍ଟିକୋଣକୁ ପ୍ରଭାବିତ କରେ । ଏହି ଅବସ୍ଥାରେହିଁ କବି କେତେ କେତେବେଳେ ପରିଦୃଶ୍ୟମାନ ଜଗତର ନିତାପଜ୍ୱାଳାରେ ମୁହ୍ୟମାନ ହୋଇ ଓ ଦୁଃଖର ତୀବ୍ରତାକୁ ଅସହ୍ୟ ମନେ କରି କହେ "ସ୍ଥିର ଭାଗ୍ୟ ମୋର ପିହିତ ପାଷାଣେ" । ସେ ଯଦି ତାଙ୍କ ସଙ୍କୀର୍ଣ୍ଣ ଦୃଷ୍ଟିରେ ଭିତରକୁ ନ ଦେଖନ୍ତି କିମ୍ବା ଏହାହିଁ ମାନବର ଚରମ ଓ ପରମ ଦଶା ଭାବି ଏହାର ଅନ୍ତେ ଅନ୍ୟ କିଛି ସୁନ୍ଦରତର ବା ସୁଖଦାୟକ ଅଛି ବୋଲି ଧାରଣା କରି ନ ପାରନ୍ତି, ତେବେ ସେ ଜଣେ ନିରାନନ୍ଦବାଦୀ ବା ନୈରାଶ୍ୟବାଦୀ କବି ବୋଲି ପରିଚିତ ହେବେ । କିନ୍ତୁ ଏପରି ଦୂରଦୃଷ୍ଟିହୀନ କବି ଖୁବ୍ ବିରଳ । ଏମନ୍ତି କି ମହାନାସ୍ତିକବାଦୀ Shelley ତାଙ୍କର Prometheus Unbound ରେ ଯେଉଁ ଆଦର୍ଶବାଦର ସୂଚନା ଦେଇ ଅଛନ୍ତି ଓ ଯେଉଁ ମହାପ୍ରେମର ଗୌରବଚନ୍ଦ୍ରିକାପାନରେ ତାଙ୍କର ଭାବ-ପ୍ରବଣ ହୃଦୟ ବ୍ୟାକୁଳ ହୋଇ ଉଠିଛି, ତାହା ଯେ ଆନନ୍ଦବାଦର ନିର୍ଯ୍ୟାସ, ତାହା ପ୍ରଣିଧାନଯୋଗ୍ୟ । ସୁତରାଂ ଯେଉଁମାନେ ସେହି ସ୍ୱରୂପ ଉପଲବ୍ଧି ବା ମୁକ୍ତି (Salvation) ରେ ବିଶ୍ୱାସ କରନ୍ତି, ସେମାନେ ଏହି ପ୍ରପଞ୍ଚ-ସୁଲଭ ସଂସାରର ନିତାପଜ୍ୱାଳାକୁ କ୍ଷଣିକ ମନେ କରି ହୃଦୟକୁ ଅଶାନ୍ତି କରି ବସିଥାନ୍ତି । ସେମାନଙ୍କୁ ନିରାନନ୍ଦବାଦୀ ବା ନୈରାଶ୍ୟବାଦୀ କହିବା ତ ସମୀଚୀନ ନୁହେ । ସୁତରାଂ କେତେକ ନିରୀଶ୍ୱରବାଦୀ ଓ ପରଜନ୍ମରେ ଅବିଶ୍ୱାସୀଙ୍କୁ ଛାଡ଼ି ଦେଲେ ସାଧାରଣ ମନୁଷ୍ୟ ଆସ୍ତିକବାଦୀ ବା ଈଶ୍ୱରବିଶ୍ୱାସୀ ହୋଇଥିବାରୁ ସେ ଯେ ଆଶାବାଦୀ ଓ ପରିଣାମରେ ନିତ୍ୟାନନ୍ଦବାଦୀ, ସେ କଥା ସହଜରେ ବୁଝାଯାଏ ।

ତେବେ ସେହି ଚରମ ଓ ପରମ ପଦବୀରେ ପ୍ରତିଷ୍ଠିତ ହେବା ପୂର୍ବରୁ ମନୁଷ୍ୟର ଐହିକ ଜୀବନର ଅନୁଭୂତିକୁ ବିଶ୍ଳେଷଣ କରି ଦେଖିଲେ ଦେଖାଯାଏ, ପ୍ରାୟ ସମସ୍ତେ ମୁକ୍ତକଣ୍ଠରେ ସ୍ୱୀକାର କରିବେ ଯେ ମନୁଷ୍ୟର

(ଅର୍ଥାତ୍ ପ୍ରାକୃତ ଦେହଧାରୀ ବହିର୍ମୁଖ ଜୀବରୂପୀ ମନୁଷ୍ୟର) ଐହିକ ଜୀବନରେ ସୁଖଠାରୁ ଦୁଃଖର ମାତ୍ରା ଢେର ବେଶୀ। ଯୁକ୍ତି ତର୍କର ବାଗ୍-ବିତଣ୍ଡାଦ୍ୱାରା ଦୁଃଖକୁ ଅଳୀକସ୍ୱପ୍ନ ବା ଗୋଟାଏ ମହାଭ୍ରମ ବୋଲି ଉଡ଼ାଇଦେବାର ଚେଷ୍ଟା ମଧ୍ୟ ହୋଇଥିବାର ଜଣାଯାଏ। କିନ୍ତୁ ସେଟା କେବଳ ବାଙ୍ମୟ ପରିସ୍ଥିତିର ସଙ୍କୀର୍ଣ୍ଣ ଗଣ୍ଡି ମଧ୍ୟରେ ସୀମାବଦ୍ଧ ରହିଅଛି। କେତେକ ସାଧକ ମହାପୁରୁଷଙ୍କୁ ଛାଡ଼ିଦେଲେ କେହି ହେଲେ ଦୁଃଖର କରାଳ କବଳରୁ ତ୍ରାହି ପାଇ ନାହାନ୍ତି। ପୁଣି କେହି କେହି କହନ୍ତି, ଏହି ଦୁଃଖହିଁ ସୁଖର ସେତୁ, ଏହି ଯନ୍ତ୍ରଣାହିଁ ଭାବୀ କଲ୍ୟାଣର ସୂଚକ, ଏହି ବିପତ୍ପାତହିଁ ଭୂରିମଙ୍ଗଳସୌଧର ମୂଳଭିତ୍ତି। ତାହା ଧ୍ରୁବ ନିଶ୍ଚୟ ହେଲେହେଁ, ଦୁଃଖର ସଂପ୍ରତିକ ଯନ୍ତ୍ରଣାଦାୟକତ୍ୱକୁ ଯୁକ୍ତିଦ୍ୱାରା ଉଡ଼ାଇ-ବାର ଅପଚେଷ୍ଟା ହାସ୍ୟାସ୍ପଦ। ଭବିଷ୍ୟତରେ ମଙ୍ଗଳପ୍ରଦ ହେଲେ ହେଉ, ବର୍ତ୍ତମାନ ତ ମୋର ଧୈର୍ଯ୍ୟର ଗୋଟାଏ ସୀମା ଅଛି—ସହିଷ୍ଣୁତାର ମଧ୍ୟ ଗୋଟାଏ ମାନବୋଚିତ ପୂର୍ଣ୍ଣଚ୍ଛେଦ ଅଛି। ଏହି ଦୁଃଖାନୁଭୂତିକୁ କଳା-ନୁମୋଦିତ ଅଭିବ୍ୟକ୍ତିର ଛାଞ୍ଚରେ ଢାଳିବାକୁ କବିଙ୍କର ସହାନୁଭୂତିବ୍ୟଞ୍ଜକ ହୃଦୟ ଯେ ଅପରର ଦୁଃଖର କରୁଣସ୍ୱରରେ ଝଙ୍କୃତ ହେବ ଏଥିରେ ଆଉ ସନ୍ଦେହ କଅଣ? ଯେଉଁ କୋମଳପ୍ରାଣ କବିମାନେ ମାନବ ଦୁଃଖରେ ମ୍ରିୟମାଣ ହୋଇ କରୁଣାବତାରସ୍ୱରୂପ ସେମାନଙ୍କୁ ସାନ୍ତ୍ୱନାର ବାଣୀ ଶୁଣାଇ ସେମାନଙ୍କ ହୃଦୟରେ ଧୃତିବନ୍ଧ ବାନ୍ଧିବାକୁ ଚେଷ୍ଟା କରନ୍ତି, ସେମାନେହିଁ ବିଶ୍ୱର ନମସ୍ୟ। ଦୁଃଖଦୈନ୍ୟର ଛବି ଅଙ୍କନ କରି ସୁଦ୍ଧା ସେମାନେ ସନ୍ତାପିତ ପ୍ରାଣରେ ଚନ୍ଦନର ସନ୍ଧାନ ଦେଇ ମୃତପିଣ୍ଡରେ ପ୍ରାଣର ସଞ୍ଚାର କରନ୍ତି, ସେମାନେ ଦୁଃଖହରଣ କରିବାକୁ ଯାଇ ଦୁଃଖର ଲାଘବ ଯେ କରନ୍ତି ଏହା ସର୍ବବାଦୀସମ୍ମତ। ଏହି ବିଶ୍ୱକଲ୍ୟାଣର ମହାମନ୍ତ୍ରରେ ଦୀକ୍ଷିତ କବିଙ୍କର ଦୁଃଖବାଦକୁ ଆଶାବାଦର ପୋଷକ କହିବାହିଁ ସମୀଚୀନ। ସେମାନଙ୍କର ଆଶାବାଦର ସ୍ପର୍ଶମଣି ସ୍ପର୍ଶରେ ସବୁ ଦୁଃଖ ଦୈନ୍ୟତକ ପରମାନନ୍ଦ ବିଗ୍ରହ ଧାରଣ କରି ଆମ୍ଭମାନଙ୍କୁ ପ୍ରେମ କରୁଣା ବିତରଣ କରିବାକୁ ଅବତରଣ କରନ୍ତି। ଏହାକୁ

ଅଶୀର୍ବାଦ ନ କହି କ'ଣ କହିବା ? ଭଗବାନଙ୍କର ପତିତପାବନନାମ ଉଡ଼ାଇବାର କଥାଟା କେବଳ କବିକଳ୍ପନା ନୁହେଁ । ଦୁଃଖାନୁଭୂତି ବିନା ଏହି ପରମାନନ୍ଦାନୁଭୂତି ଅସମ୍ଭବ । ଯେଉଁମାନେ ଇନ୍ଦ୍ରିୟସର୍ବସ୍ୱ ହୋଇ ସବୁଥିରେ ପରମସନ୍ତୁଷ୍ଟିର ଯେବାପରାୟଣ, ସେମାନେ ବରଂ କୃପାପାତ୍ର । ସେମାନେ ଋଣ କରି ଘୃତସେବୀ ହୋଇ ସୁଖୀ ଥାଆନ୍ତି । କିନ୍ତୁ ଏସୁଖ କ୍ଷଣଭଙ୍ଗୁର ।

ପାଶ୍ଚାତ୍ୟ ଜଗତରେ ମଧ୍ୟ ପରମକାରୁଣିକ ଖ୍ରୀଷ୍ଟଙ୍କ ପ୍ରବର୍ତ୍ତିତ ପ୍ରେମ-ଧର୍ମରେ ଏହି କଳ୍ପନାହିଁ ଦେଖିବାକୁ ମିଳେ । ମନୁଷ୍ୟ ସ୍ୱରୂପତଃ ଆନନ୍ଦର ସନ୍ତାନ । ସେ ନନ୍ଦନବନବିହାରୀ । ହଠାତ୍ ସେ ଦିନେ ବିଭ୍ରାନ୍ତ ନୟନରେ ନିଷିଦ୍ଧ-ଜ୍ଞାନବୃକ୍ଷର ଫଳ ପ୍ରତି ଲୋଲୁପ ଦୃଷ୍ଟି ପକାଇ ପ୍ରଭୁଙ୍କ ଆଜ୍ଞା ଲଙ୍ଘନ କଲା—ଫଳତଃ ସ୍ୱର୍ଗରେ ନନ୍ଦନବିହାରର ଅନୁପଯୁକ୍ତ ହୋଇ ଦୁଃଖଯନ୍ତ୍ରଣାମୟ ମର୍ତ୍ତ୍ୟଭୂମିକୁ ନିର୍ବାସିତ ହେଲା । ପ୍ରକାଶ ଥାଉ କି ନିଷିଦ୍ଧ ତରୁର ଫଳସେବନ ମାତ୍ରେ ତାହାର ଲଜ୍ଜା ସଙ୍କୋଚ ପ୍ରଭୃତି ଦ୍ୱିଧାଭାବ ଜାତ ହେବାରୁ ସେ ପରିଧାନର ପ୍ରୟୋଜନୀୟତା ଉପଲବ୍ଧି କଲା—ତାହାର ଲଜ୍ଜା ନିବାରଣ ଚେଷ୍ଟା ହେଲା ; କାରଣ ସେ "ନାହିଁ ପରାପର-ଭାବ" ଟି ହରାଇ ବସିଲା—ତାହାର ଅପରା ବିଦ୍ୟା ବା ଭେଦ-ବୁଦ୍ଧିର ସଞ୍ଚାର ହେଲା । ଲୋକ ଯେ ପର୍ଯ୍ୟନ୍ତ "ଏକମେବାଦ୍ୱିତୀୟଂ" ଏହି ପରମଜ୍ଞାନ-ପଦବୀରେ ଆରୂଢ଼ ଥାଏ, ସେପର୍ଯ୍ୟନ୍ତ ତାହାର ଭେଦା-ଭେଦଜ୍ଞାନ ନ ଥାଏ, ସେ କାହିଁକି ଅନ୍ୟକୁ ଲଜ୍ଜା କରିବ ? ତାହାର ଭେଦବୁଦ୍ଧି ବା ଅବିଦ୍ୟା ଜାତ ହେଲା ମାତ୍ରକେ ତାହାର ପତନ ଅବଶ୍ୟମ୍ଭାବୀ—ସେ ତ ଆଉ ନନ୍ଦନବନର ଯୋଗ୍ୟ ନୁହେ—ସେ ତାହାର ଉପଯୁକ୍ତ ବାସସ୍ଥଳୀ ଆଧିବ୍ୟାଧିଜନ୍ମଜରାମୃତ୍ୟୁର ଲୀଳାଭୂମି ମର୍ତ୍ତ୍ୟଧାମକୁ ପ୍ରେରିତ ହେଲା । ସେ ସ୍ୱର୍ଗର ପୁନରୁଦ୍ଧାର ପାଇଁ ସତତ ଉଦ୍‌ଗ୍ରୀବ ହୋଇ ସତୃଷ୍ଣନୟନରେ ଚାହିଁ ବସିଥାଏ ; କେବେ ତାହାର ପାପର ପ୍ରାୟଶ୍ଚିତ୍ତ ହେବ, କେବେ ସେ ପୁନର୍ବାର ତାହାର ନିଜ ଧାମକୁ ବାହୁଡ଼ିବ—ତାହାର ଅବିଦ୍ୟା ବା ମାୟାବନ୍ଧନ କେବେ ଛିନ୍ନ ହେବ ; ସୁତରାଂ

ବର୍ତ୍ତମାନ ଧର୍ମ ଭଳି ଆଶାବାଦୀ । ତେଣୁ ଦେଖାଯାଉଅଛି, ଈଶ୍ୱର-ବିଶ୍ୱାସୀ ମାନବହୃଦୟ ସର୍ବଦା ଆଶାବାଦୀ—ତେବେ ଏ ପୃଥିବୀଟା ଯେ ଭଳି ପୀଡ଼ାଦାୟକ ସେଟା ସ୍ୱତଃସିଦ୍ଧ—ସେ ପୀଡ଼ାର ପାରମାର୍ଥିକ ମୂଲ୍ୟ ଯାହା ହେଉ ପଛକେ ।

ତାହାହେଲେ ଏହି ସିଦ୍ଧାନ୍ତରେ ଉପନୀତ ହେବାହିଁ ସମୀଚୀନ ହେବ ଯେ ଯେଉଁମାନେ ଈଶ୍ୱର ଓ ପରଲୋକରେ ବିଶ୍ୱାସ କରନ୍ତି ସେମାନେ ଆଶାବାଦୀ ଓ ପରିଣାମରେ ଆନନ୍ଦବାଦୀ । ତେବେ କେହି କେହି ଏ ବିଶ୍ୱଜଗତକୁ ଭଳି ଦୁଃଖମୟ ମନେ କରନ୍ତି ଏବଂ ସେଗୁଡ଼ିକ ବର୍ଣ୍ଣନା କରିବାକୁ ଯାଇ ପରଦୁଃଖକାତର ସେମାନଙ୍କର ସହାନୁଭୂତିପ୍ରବଣ ହୃଦୟ ଭଳି ବ୍ୟାକୁଳ ହୋଇଉଠେ । ତାହାର ଛାପ ସେମାନଙ୍କ କଳାକୃତି ଉପରେ ପଡ଼େ ; ତେଣୁ ସେଗୁଡ଼ିକ ଦୁଃଖବାଦ ବା ନିରାନନ୍ଦ-ବାଦର କାରୁଣ୍ୟାମୃତଧାରାରେ ଅଭିସିଞ୍ଚିତ ହୋଇଯାଏ । ତେଣୁ ତାଙ୍କୁ ଦୁଃଖବାଦୀ କହିଲେ କହିହୁଏ—କିନ୍ତୁ ସେମାନେ ନୈରାଶ୍ୟବାଦୀ ନୁହନ୍ତି ।

କିନ୍ତୁ ରବୀନ୍ଦ୍ରନାଥ ବ୍ରାଉନିଂ ଓ ଓ୍ୱାର୍ଡସ୍ୱର୍ଥଙ୍କ ପରି କେତେ ଆନନ୍ଦବାଦୀ । ସେମାନେ ଦୁଃଖକୁ ଦୁଃଖ ମନେ କରିବାକୁ ରାଜି ନୁହନ୍ତି ; ସୁତରାଂ ସେମାନେ ଦୁଃଖବାଦଜନିତ ନିବୃତ୍ତିମାର୍ଗର ପକ୍ଷପାତୀ ନୁହନ୍ତି । "ବୈରାଗ୍ୟସାଧନେ ମୁକ୍ତି ସେ ଆମାର ନୟ"—ସ୍ପଷ୍ଟ କଥା । ସଂସାରର ଧ୍ରୁବସୁଖରେ ଜଳାଞ୍ଜଳି ଦେଇ ପାରଲୌକିକ ଅଧ୍ରୁବ ଆନନ୍ଦର ସନ୍ଧାନ ସେମାନଙ୍କୁ ରୁଚିକର ହୁଏ ନାହିଁ । ସେମାନେ ଇହଜଗତର ସହସ୍ର ବନ୍ଧନ ଓ ଅଜସ୍ର କ୍ରନ୍ଦନ ମଧ୍ୟରେହିଁ ଭୂମାନନ୍ଦର ଆସ୍ୱାଦନ ନେଉଛନ୍ତି । ସେମାନେ ଇହଜଗତକୁ ପରଲୋକଠାରୁ ସ୍ୱତନ୍ତ୍ର ଦୃଷ୍ଟିରେ ଦେଖିବାକୁ କୁଣ୍ଠିତ । ଆନନ୍ଦମୟଙ୍କ ସୃଷ୍ଟି ଇହ ଜଗତରେ ମଧ୍ୟ ଆନନ୍ଦମନ୍ଦାକିନୀଧାରା ଅନ୍ତଃସଲିଳା ଫଲ୍‌ଗୁ ପରି ପ୍ରବାହିତ ହେଉଥିବା ସ୍ଥଳରେ ସେ ଧ୍ରୁବ-ଆନନ୍ଦରୁ ବଞ୍ଚିତ ହୋଇ ଗୋଟାଏ ଅଧ୍ରୁବ ପରଲୋକର କ୍ଷୀଣଆଶାରେ ବସି କାନ୍ଦିବାଟା ସେମାନେ ବାଞ୍ଛନୀୟ ମନେ କରନ୍ତି ନାହିଁ । ଆମ୍ଭମାନଙ୍କର ନିଜ ଦୋଷରୁ ଆମ୍ଭେମାନେ ସେହି ପରମାନନ୍ଦାସ୍ୱାଦନସୁଖକୁ ପାଇ ମଧ୍ୟ

ହରାଇ ବସିଛୁ ଏବଂ ସ୍ୱର୍ଣ୍ଣମଣିର ସ୍ପର୍ଶଲୋଭରେ ସ୍ୱର୍ଗ ମର୍ତ୍ତ୍ୟ ପାତାଳ ପର୍ଯ୍ୟନ୍ତ ଖୋଜୁଥାଉଁ। ଏଣେ ସ୍ପର୍ଶମଣିର ସ୍ପର୍ଶରେ ଲୌହ ସ୍ୱର୍ଣ୍ଣ ହୋଇ ସାରିଲାଣି ଏ କଥା ମାଲୁମ ନାହିଁ। ପୁଣି ଖୋଜିବାହିଁ ସାର। ତେବେ ପ୍ରାପ୍ତିର ମୂଲ୍ୟ ଅବଧାରଣ କରିବାର ମନୋବୃତ୍ତି ଅନୁଶୀଳନ ନ କରି କେବଳ ପାଗଳଙ୍କ ପରି ଖୋଜି ବୁଲିବା ବିଡ଼ମ୍ବନା ମାତ୍ର। ପରଲୋକରେ ଯାହା ଅଛି ତାହା ଏ ଲୋକରେ ମଧ୍ୟ ଅଛି। ତେବେ କେବଳ ଟିକିଏ ସଜାଗ ହୋଇ ରହିଲେହିଁ ହେବ। ସୁତରାଂ ଏପରି କବିକୁ ଉତ୍କୃଷ୍ଟ ଆନନ୍ଦବାଦୀ କହିବାହିଁ ସମୀଚୀନ। ଏହିମାନେହିଁ ବାସ୍ତବିକ ନିତ୍ୟାନନ୍ଦ ପରିବାରର ସଦାନନ୍ଦପନ୍ଥୀ। ଏମାନେହିଁ ବାସ୍ତବିକ ମଙ୍ଗଳମୟ ପ୍ରଭୁଙ୍କର କରୁଣାବତାର ପ୍ରେମମୟ ମହାପୁରୁଷ। ଏମାନଙ୍କର ପ୍ରେମାମୃତ ପରିବେଷଣ ପରିପାଟୀରେ ଦେବାସୁର ଉଭୟ ପରିତୃପ୍ତ। ଏମାନଙ୍କ ମୋହିନୀ ରୂପରେ ସମସ୍ତେ ମୁଗ୍ଧ। ସଂସାର ସମୁଦ୍ରୋତ୍‌ଥିତ ବିଷମ ବିଷ ପାନ କରି ସମସ୍ତେ ଆଜି ନୀଳକଣ୍ଠ; ସମସ୍ତେହିଁ ମୃତ୍ୟୁଞ୍ଜୟ ହେବାର ଆଶା ହୃଦୟରେ ପୋଷଣ କରନ୍ତି ଏମାନଙ୍କର ସଙ୍ଗସୁଖରୁ।

ସେହିପରି Shakespear ଙ୍କ ବିରହାତ୍ମକ ନାଟକ (Tragedy)ର ଉପଜୀବ୍ୟ ବିରହର ସ୍ୱରୂପ ସନ୍ଧାନରେ ମନୋନିବେଶ କଲେ ଜଣାଯିବ ଯେ ସେ ବିରହ କେବଳ ତିକ୍ତ ଅଶ୍ରୁଧାରାରେ ପର୍ଯ୍ୟବସିତ ନୁହେଁ। ସେ ବିଚ୍ଛେଦର ହାହାକାର ମଧ୍ୟରେ ଗୋଟିଏ ଆଶା ଆଶ୍ୱାସନାର ମୂର୍ଚ୍ଛନା ମଧ୍ୟ ଅଛି—ସାନ୍ତ୍ୱନାର କୋମଳ ସ୍ପର୍ଶର ସ୍ନିଗ୍ଧତା ମଧ୍ୟ ଅନୁଭବନୀୟ। ପରସ୍ପର ମଧ୍ୟରେ ଉତ୍କୃଷ୍ଟ ମନୋମାଳିନ୍ୟ, ପରିଶେଷରେ ମୃତ୍ୟୁ ଯବନିକା ଅନ୍ତରାଳରେ ଚିରକାଳପାଇଁ ଛାଡ଼ିବାଡ଼ିର ସମ୍ବାଦ ମଧ୍ୟରେ ଗୋଟିଏ ମଧୁର ମିଳନର ସମ୍ବାଦ ମଧ୍ୟ ମିଳେ। ତାଙ୍କର ପ୍ରେମକାବ୍ୟ ଓଥେଲୋରେ ସେ ନବବିବାହିତା ପ୍ରେମିକ ଓ ପ୍ରେମିକାଙ୍କର ନବଜାତ ପ୍ରେମକଳ୍ପଲତାକୁ ଗୋଟିଏ ନରପିଶାଚର ବିଷାକ୍ତ ଛୁରିକାଦ୍ୱାରା କାଟି ଦେବାର ଚେଷ୍ଟା କରିଛନ୍ତି। କିନ୍ତୁ ତାଙ୍କର କାର୍ଯ୍ୟପରିଣରେ ଛିନ୍ନ ଲତାଟି ପୁଣି ଯୋଡ଼ି ହୋଇଗଲା ପରି ଲାଗେ। ଓଥେଲୋ ନିଜର ପ୍ରାଣ

ବନମଧ୍ୟରେ ନିଜର ସେହି ଅଜ୍ଞାନକୃତ ମାରାତ୍ମକ ଭ୍ରମ-ପ୍ରମାଦର ପ୍ରାୟଶ୍ଚିତ୍ତବିଧାନ କରି ପ୍ରେୟସୀଙ୍କ ସହଗମନ କରିବାବେଳେ ପ୍ରାଣ-ପ୍ରିୟାଙ୍କର ପ୍ରେମ ଯେ ନିର୍ମଳ, ବିଶୁଦ୍ଧ ଓ ନିଷ୍କଳଙ୍କ ଏହାର ପ୍ରମାଣସ୍ୱରୂପ ସେ ପ୍ରିୟାଙ୍କ ଗଣ୍ଡସ୍ଥଳରେ ଇହଜଗତର ଶେଷ ଚୁମ୍ବନ-ରୂପ ମୁଦ୍ରିକା ମାରି ପ୍ରିୟାଙ୍କ ସହଗାମୀ ହେଲେ । ପ୍ରେମର ଜୟ ହେଲା ।

ଉଭୟ ହୃଦୟର ଏକନିଷ୍ଠ ପ୍ରେମ ପୂର୍ଣ୍ଣଗାଢ଼ତାପ୍ରାପ୍ତ ହେଲେ ଏବଂ ଦୁଇଟି ଅଭିନ୍ନ ହୃଦୟବୀଣା ଏକସ୍ୱରରେ ବାଜି ଉଠିଲେ, ଏହି ଭୌତିକ ଦେହଜନିତ ପାର୍ଥକ୍ୟଟା ଅସହ୍ୟ ହୋଇ ଉଠେ । ସେମାନେ ତ ପ୍ରେମପ୍ରାବଲ୍ୟରୁ ସର୍ବତୋଭାବେ ଅଭିନ୍ନହୃଦୟ ଅର୍ଥାତ୍ ଏକ ହୋଇ ଗଲେଣି, ତେବେ ଏ ପାଞ୍ଚଭୌତିକ ବାଧାଟା ଅପସାରିତ ନ ହେଲେ ଉଭୟ ହୃଦୟର ଏକୀକରଣ ଅସମ୍ଭବ । ତେଣୁ ସେହି ପଞ୍ଚଭୂତରେ ଗଢ଼ା ଦେହରୂପ ବାଧାଟା କିପରି ଅପସାରିତ ହେବ, ଏହାହିଁ କେବଳ ଚେଷ୍ଟା । ତେଣୁ ଦେହପାତ ନ ହେବାଯାଏ ମିଳନର ପୂର୍ଣ୍ଣପରିଣତି ଅସମ୍ଭବ । ଏହି ସୁମଧୁର ମହାମିଳନର ସଙ୍କେତ ଦେଇ କବି ନୀରବ ହୋଇଛନ୍ତି ।

ସେହିପରି ବୃଦ୍ଧ ଲିୟାର ହଠାତ୍ ମନେ କଲେ ଯେ କର୍ଡ଼ିଲିୟା ମରି ନାହିଁ—ବଞ୍ଚିଅଛି ; ସୁତରାଂ ସେହି ଆନନ୍ଦଟା ଏପରି ପ୍ରବଳ ହୋଇ ଉଠିଲା ଯେ, ତାଙ୍କର ହୃଦୟରେ ତାହା ସମ୍ଭାଳି ନ ହେବାରୁ ହୃଦୟସ୍ପନ୍ଦନଟି ଆନନ୍ଦାତିଶଯ୍ୟରୁ ହଠାତ୍ ସ୍ଥଗିତ ହୋଇଗଲା । ଲିୟାର ଆନନ୍ଦରେ ଇହଧାମରୁ ବିଦାୟ ନେଲେ । ସୁତରାଂ (Shakespear)ଙ୍କ ବିରହାତ୍ମକ ନାଟକରୁ ମଧ୍ୟ ଅନ୍ତଃସଲିଳା ଆନନ୍ଦମନ୍ଦାକିନୀର ସନ୍ଧାନ ମିଳେ । କିନ୍ତୁ ଆଉ ଶ୍ରେଣୀର ଲୋକ ଅଛନ୍ତି, ସେମାନେ ନିପଟ ଦୁଃଖବାଦୀ ଏବଂ ଘୋର ନୈରାଶ୍ୟବାଦୀ । ସେମାନେ ବିଶ୍ୱସୃଷ୍ଟିର ଶୃଙ୍ଖଳାରେ ବିଶ୍ୱାସ କରନ୍ତି ନାହିଁ । ତାଙ୍କର ଧାରଣା ଯେ ଜଗତରେ ବିଶ୍ୱବିଧାନର ନାମଗନ୍ଧ ନାହିଁ ଓ ଅନ୍ଧ ଭାଗ୍ୟବିଧାତାଙ୍କ ଖାମଖିଆଲି ଦ୍ୱାରା ସାରା ବିଶ୍ୱବ୍ରହ୍ମାଣ୍ଡ ପରିଚାଳିତ ହେଉଅଛି । କୌଣସି ନୀତି, ସତ, ନିୟମ,

ବିଧିବିଧାନର ଶୃଙ୍ଖଳା ନାହିଁ । "ଆଜ ଯେ ରାଜେନ୍ଦ୍ର ।ବନେ, କାଲି ସେ ଫକୀର" ଓ "ଦଇବ ଦଉଡ଼ି ମଣିଷ ଗାଈ, ଯେଣିକି ଟାଣଇ ତେଣିକି ଯାଇ" । ଏ ଦୈବ ପୁଣି ଏପରି ଅନ୍ଧ ଯେ ଦୋଷାଦୋଷ ଗୁଣାଗୁଣର ସନ୍ଧାନ ରଖେ ନାହିଁ । ସୁତରାଂ କର୍ମୀକର୍ମର ଫଳ ମଧ୍ୟ ବିଗୃହ କରିବାର ଅବସର ତାର ନାହିଁ । ଅକସ୍ମାତ୍ ଯାହା ହେବାର ହେବ, କେହି ତାହାର ଭାବୀ ସୂଚନା ଦେଇ ପାରିବେ ନାହିଁ । ସୁତରାଂ ମନୁଷ୍ୟ ସେତେ ସଜାଗ ହେଉ ନା ତାହି କି, ଯେ କୌଣସି ମୁହୂର୍ତ୍ତରେ ତାହାର ମୁଣ୍ଡରେ ବଜ୍ରପାତ ହୋଇ ପାରେ । ସୁତରାଂ ଜୀବନ ଯେ ଘୋର ଅଶାନ୍ତିମୟ, ସେଥିରେ ସନ୍ଦେହ ନାହିଁ । ତେଣୁ ବିପଦ ଉପରେ ବିପଦ ପଡ଼ିଲେ ମନୁଷ୍ୟର ଆଉ ଉପାୟ କଅଣ ? ଏହାର କୌଣସି ପ୍ରତିକାର ମଧ୍ୟ ନାହିଁ । ସୁତରାଂ ମନୁଷ୍ୟଜୀବନ ଭାରୀ ଦୁଃଖମୟ ଓ ଅଶାନ୍ତିରେ ପୂର୍ଣ୍ଣ ।

ଭାଗ୍ୟକୁ ଏ ଧାରଣାଟା ସତ୍ୟ ନୁହେଁ; ଭାରୀ ଭ୍ରମାତ୍ମକ ଓ ସତ୍ୟ ହୋଇଥିଲେ ମଧ୍ୟ କଳାନୁମୋଦିତ ନୁହେଁ । କାରଣ କଳାର ଉଦ୍ଦେଶ୍ୟ ହୃଦୟଦୌର୍ବଲ୍ୟକୁ ଦୂର କରି ହୃଦୟକୁ ସବଳ କରିବା । ଯଦି ମନୁଷ୍ୟର ଦୁର୍ଭାଗ୍ୟର ସୀମା ନାହିଁ ଓ ତାହାର ପ୍ରତିକାର ମଧ୍ୟ ନାହିଁ, ତେବେ ଗୁଡ଼ାଏ ଉପନ୍ୟାସ ଲେଖି କମ୍ବା କବିତା ଲେଖି ସେହି ପ୍ରତିକାର-ଶୂନ୍ୟ ଦୁର୍ଭାଗ୍ୟର କଥା କବିଗଣଙ୍କ ମନୁଷ୍ୟକୁ ବାରମ୍ବାର ଚେତାଇ ଦେଇ ତାହାର ଦୁର୍ବଳହୃଦୟକୁ ଦୁର୍ବଳତର କରି ଲାଭ କଅଣ ? ସେଥିରେ ବା କି ସାନ୍ତ୍ୱନା ତାହା ପାଇଁ ବାଡ଼ିବାକୁ ଲେଖନୀ ଚାଳନ କରାଯାଏ ? ଯେ ନିଶ୍ଚୟ ମରିବ ତାର ମୃତ୍ୟୁର ଦିନ କାଳଟାର ଆୟୁର୍ଦା ସାଧି ରଖିବାର ଫଳ କଅଣ ? ଯଦି ଜଣେ ଶୁଣେ ଯେ ସେ କାଲି ନିଶ୍ଚୟ ମରିବ, ସେ ଆଜ ରାତିରେ ଯେ ସହସ୍ରବାର ମରିବାର ଯନ୍ତ୍ରଣା ଭୋଗ କରିବ ସେଥିରେ ସନ୍ଦେହ ନାହିଁ । ମନୁଷ୍ୟର ସ୍ୱଭାବସିଦ୍ଧ ଦୁର୍ଭାଗ୍ୟକୁ କାବ୍ୟକଳାରେ ଅତିରଞ୍ଜିତ କରି ଓ ତଦ୍ଦ୍ୱାରା ତାହାର ହୃଦୟକୁ ସ୍ପର୍ଶ କରି କଳା ମନୁଷ୍ୟର ପରମ ଶତ୍ରୁ ହେବ । ସୁତରାଂ ଏପରି ଭ୍ରାନ୍ତ ଧାରଣା-ଜନିତ (Pessimism) ଦୁଃଖ-ନୈରାଶ୍ୟବାଦ ଭାରୀ ଦୁଃଖମୟ ; ଏହାକୁ

ଜଳାନୁମୋଦିତ ନୁହେଁ ବୋଲି ପରିତ୍ୟାଗ କରି ରବୀନ୍ଦ୍ରନାଥଙ୍କ ପୂର୍ଣ୍ଣାନନ୍ଦବାଦ ସଙ୍ଗରେ ସାଧାରଣ ଆଶାବାଦର ତୁଳନା କରାଯାଉ । ସାଧାରଣଙ୍କ ଆଶାବାଦ ଇହଜଗତର ଦୁଃଖ ଯନ୍ତ୍ରଣାକୁ ସ୍ୱୀକାର କରି ପ୍ରବୃତ୍ତି ମାର୍ଗପରିତ୍ୟ ମୁଖ ହୋଇ ନିବୃତ୍ତିମାର୍ଗର ଉପଦେଶ ଦିଏ । ପୃଥିବୀର ଭୋଗସ୍ପୃହା ବର୍ଜ୍ଜନ କରି ଅନ୍ତର୍ମୁଖୀ ନ ହେଲେ ପାରଲୌକିକ ପରମାନନ୍ଦର ଅଧିକାରୀ ହେବା କଠିନ ; କାରଣ ମୃତ୍ୟୁର ପରେ ପରଲୋକରେ ମଧ୍ୟ ଦୁଃଖ ଯନ୍ତ୍ରଣା ଅଛି, ତେବେ ସମୟରେ ତାହାର ଆତ୍ୟନ୍ତିକ ନିବୃତ୍ତିର ଭରସା ଅଛି, ମାତ୍ର ତାହା ବହୁ ସାଧନାସାପେକ୍ଷ—ବହୁ ଅନୁଶୀଳନ ଉପରେ ନିର୍ଭର କରେ; ସୁତରାଂ ମୃତ୍ୟୁର ଅବ୍ୟବହିତ ପରେ ଉକ୍ତ ଆନନ୍ଦସମ୍ଭୋଗର ନିଶ୍ଚୟତା ନାହିଁ । ଜନ୍ମ ଜନ୍ମାନ୍ତର ଅନୁଶୀଳନ ପରେ ତାହା ହିଁ ଅବଶ୍ୟ ପ୍ରାପ୍ୟ ଏହା ହିଁ ସାଧାରଣ ଆଶାବାଦ । ଯେ ଯେତେ ଶୀଘ୍ର ଅନ୍ତର୍ମୁଖୀ ହୋଇ ଆତ୍ମୋତ୍କର୍ଷ ସାଧନରେ ସଫଳମନୋରଥ ହେବ, ସେ ସେତେ ଶୀଘ୍ର ଉକ୍ତ ଅଧିକାର ଦାବି କରି ପାରିବ । ଅର୍ଥାତ୍ ବହୁରଙ୍ଗ ଦୁଃଖଶୋକର ତପ୍ତ ବୈତରଣୀ ପାର ହୋଇ ପରାନନ୍ଦ ସିନ୍ଧୁରେ ଅବଗାହନ କରିବ । ତେଣୁ ଏହା ଇହଜନ୍ମରେ ମଧ୍ୟ ନ ହେବ କାହିଁକି ? ଯେ ପୂର୍ବ ପୂର୍ବ ଜନ୍ମରେ ଏହାର ଅନୁଶୀଳନ କରି ସାରିଛି ଏବଂ କରୁଣାମୟଙ୍କ କୃପାରୁ ତାହାର ଏହି ଜନ୍ମରେ ହିଁ ସ୍ୱରୂପ ଉପଲବ୍ଧିଜନିତ ହେଉ ବା ବହିର୍ଜଗତର ଅଭ୍ୟନ୍ତରସ୍ଥ ଆନନ୍ଦ ମନ୍ଦାକିନୀର ସନ୍ଧାନ ପାଇବାରୁ ହେଉ, ସେ ପ୍ରେମଚକ୍ଷୁ ଲାଭ କରି ସମସ୍ତ ଆନନ୍ଦମୟ ଦେଖିଲେ ଦେଖି ପାରନ୍ତି । ସେ ସେହି ପରାନନ୍ଦ ସାଗରରେ ବୁଡ଼ି ସମସ୍ତ ଦୁଃଖଯନ୍ତ୍ରଣାକୁ ତୁଚ୍ଛ ମନେ କରି ପକାନ୍ତି । ରବୀନ୍ଦ୍ରନାଥଙ୍କୁ ସେହି ଶ୍ରେଣୀର କବି ବୋଲି ମନେ ହୁଏ । ସେ ନିପଟ ଆନନ୍ଦବାଦୀ କବି ଅଟନ୍ତି । ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟରେ ସେହି ଆନନ୍ଦବାଦର ସମ୍ବାଦ ସୁସ୍ପଷ୍ଟ ।

ଭଞ୍ଜକାବ୍ୟାନୁଭୂତିରେ ଦୁଃଖବାଦ, ନୈରାଶ୍ୟବାଦ ବା ନିରାନନ୍ଦବାଦର ଛାୟା ପଡ଼ି ନାହିଁ । ଆନନ୍ଦ ବ୍ରହ୍ମର ଉପାସକ ଓ ମଧୁବ୍ରହ୍ମର ନିଷ୍ଠାପର ସେବକ କବି ନିରାନନ୍ଦର ସମ୍ବାଦ ଦେଇ ଦୁଃଖଦୈନ୍ୟଭାରାକ୍ରାନ୍ତ ମାନବ-

ଜୀବନକୁ ଦୁର୍ବହ କରିବେ କାହିଁକି ? ସେମାନେ ଶୋକଶେଲାଘାତ ହୃଦୟର ଅଶ୍ରୁ ଉପଶମ କାମନାରେ ଅମୋଘ ବିଶଲ୍ୟକରଣୀର ସନ୍ଧାନରେ ବାହାରି ସଦାସର୍ବଦାହିଁ ସ୍ୱ ସ୍ୱ ମସ୍ତକରେ ପରମାନନ୍ଦର ଗନ୍ଧମାଦନ ବହନପୂର୍ବକ ଦ୍ୱାରେ ଦ୍ୱାରେ ଯାଚି ବୁଲୁଛନ୍ତି । ଆମ୍ଭମାନଙ୍କ ମୁମୂର୍ଷୁ ପ୍ରାଣରେ ମୃତ୍ୟୁସଞ୍ଜୀବିନୀ ସୁଧା ସିଞ୍ଚନଦ୍ୱାରା ଶକ୍ତିସଞ୍ଚାରପ୍ରୟାସୀ ଏହି ମହାବୀରମାନଙ୍କର ଅଙ୍ଗବିଶେଷରେ ହୁତାଶନସଂଯୋଗପୂର୍ବକ ଦଶାନନବୃତ୍ତିର ଅତିଥିସତ୍କାରର ପୁନରାବର୍ତ୍ତନ ଆମ୍ଭମାନଙ୍କ ପକ୍ଷରେ ଶୋଭନୀୟ କି ? ଯୁଗୋଚିତ ବାନରମେଧ ଯଜ୍ଞର ବ୍ୟାହୃତି ଦେଇ ଭରତଙ୍କ ପରି ବଜ୍ରଳକ୍ଷ୍ୟାନକ୍ଷେପପୂର୍ବକ ଭ୍ରାତୃ-ପ୍ରାଣ-ରକ୍ଷା ବ୍ରତୀଙ୍କ ପ୍ରତି ମହାବୀରୋଚିତ ସମ୍ବର୍ଦ୍ଧନା ସମୀଚୀନ କି ? କିମ୍ବା ଏତଦ୍‌ଭିନ୍ନ ସେମାନଙ୍କ ପ୍ରତି ଯୁଗୋଚିତ କୃତଜ୍ଞତାଜ୍ଞାପନର ତୃତୀୟ ପନ୍ଥା ମଧ୍ୟ ଥାଇ ପାରେ, ଏହା ବିଚାର କରି ଦେଖିବା ନିମନ୍ତେ ପ୍ରାଚୀନ ପରିପନ୍ଥୀ ଆଧୁନିକ ପ୍ରଗତିପନ୍ଥୀମାନଙ୍କୁ ମୋର ବିନୀତ ଅନୁରୋଧ । କବି ସୌନ୍ଦର୍ଯ୍ୟର ଦ୍ରଷ୍ଟା ଓ ସ୍ରଷ୍ଟା । ସ୍ୱଭାବସିଦ୍ଧ ସୌନ୍ଦର୍ଯ୍ୟବୋଧରୁ କବି ନିଜେ ଆନନ୍ଦ ଉପଭୋଗ କରି ଅନ୍ୟକୁ ତାହା ଭୋଗ କରାଇବାର କଳାନୁମୋଦିତ ପ୍ରଚେଷ୍ଟା କରେ । ଏହି ଆଧିବ୍ୟାଧିମୟ ଜୀବନର ନିରାନନ୍ଦମୟ ପରିସ୍ଥିତିକୁ ଶିବ ଏ ଆନନ୍ଦମୟ କରିବା ବ୍ରତରେ ସେ ଲେଖନୀ ଚାଳନ କରେ । ତାହାର ପ୍ରଚେଷ୍ଟା କେତେଦୂର ସାଫଲ୍ୟମଣ୍ଡିତ ହୋଇଅଛି, ତାହା ସହାନୁଭୂତିର ଦୃଷ୍ଟିରେ ଉପଲବ୍‌ଧି କରି ସମ୍ୟକ୍ ଆସ୍ୱାଦନ କରିବାହିଁ ସୁସମାଲୋଚନା । କବିଙ୍କର କୃତିତ୍ୱ କୌଣସି ପନ୍ଥା, ପ୍ରଣାଳୀ ବା ପଦ୍ଧତି ଉପରେ ନିର୍ଭର କରେ ନାହିଁ ; ତାହା କେବଳ ପ୍ରତିଭା ସାପେକ୍ଷ ।

ଏହିପରି ବାସ୍ତବବାଦ (Realism), ଆଦର୍ଶବାଦ (Idealism), ରହସ୍ୟବାଦ ବା ଅତୀନ୍ଦ୍ରିୟବାଦ ( Mysticism ), ପ୍ରତୀକବାଦ (Symbolism) ଏବଂ ଅଧ୍ୟାତ୍ମବାଦ (Spiritualism) ପ୍ରଭୃତି ନାନା ଦୃଷ୍ଟିକୋଣରୁ କାବ୍ୟାମୃତରସ ଆସ୍ୱାଦନୀୟ ହୋଇଥାଏ ।

---

# ଉପାଧି ବର୍ଜନ ଓ ବାବଡାଲୀୟ ନ୍ୟାୟ

ସ୍ୱାଧୀନତା ଅର୍ଜନ ସଙ୍ଗେ ସଙ୍ଗେ ଉପାଧିବର୍ଜନର ପ୍ରୟୋଜନୀୟତା ହୃଦୟଙ୍ଗମ ହେଲା । କେହି କେହି ବର୍ଜନ କଲେ, କେହି କେହି ଉପାଧି ଅର୍ଜନର ପନ୍ଥା ଏକାବେଳକେ ରୁଦ୍ଧ ଦେଖି ଅଶ୍ରୁବିସର୍ଜନ ପର୍ଯ୍ୟନ୍ତ କଲେ ଓ କରିବାର ମଧ୍ୟ କଥା । ଦୈନନ୍ଦିନ କର୍ମପ୍ରେରଣାରେ ମାଦକତା ନାହିଁ; ପ୍ରଭୁଭକ୍ତିରେ ଉନ୍ମାଦନା ନାହିଁ; ଦେଶପ୍ରୀତିର ନିଶା ଖୁବ୍ କମ—କର୍ମପିଷ୍ଟ ଜୀବନଟା ଭାରି ଗଦ୍ୟମୟ ହୋଇଗଲା; ଆଲୋକସ୍ତମ୍ଭ ଅଭାବରେ କର୍ତ୍ତବ୍ୟ-ତରୀ ବା ଚଡ଼ରେ ବାଧି ହେବ—ଇତ୍ୟାଦି ନାନା ଦୁର୍ଭାବନା ଯୁଗପତ୍ ହୃଦୟରେ ଉଦୟ ହେଲେ କିଏ ସ୍ଥିର ରହି ପାରେ ? ବସ୍ତୁତଃ ଉପାଧିର ଶୁଭଙ୍କରୀ ମୂର୍ତ୍ତିଟା ଭୁଲିବାର କଥା ନୁହେଁ । ଉପାଧିର ସୁଦୂର ଆଶାରେ ଆଶାନ୍ୱିତ ଲୋକରହୃଦୟରେ ରାଜଭକ୍ତି, ପ୍ରଭୁଭକ୍ତି, କର୍ତ୍ତବ୍ୟନିଷ୍ଠା ଯେପରି ସହଜରେ ଅଙ୍କୁରିତ ହୁଏ ଅନ୍ୟଥା ତାହା ସମ୍ଭବ କି ? ପୁଣି ଉପାଧିର ରଞ୍ଜନ କିରଣରେ ଔପାଧିକଙ୍କର ପ୍ରତିଭା ଦିବ୍ୟଚକ୍ଷୁଷ୍ମତୀ ହୋଇ ଉଠେ । ଉପାଧିର ତୀବ୍ର ନିଶାରେ ସେ ନିଜକୁ ତ୍ରିକାଳଜ୍ଞ ଋଷି ମନେ କରି ସର୍ବଜ୍ଞ ଚୂଡ଼ାମଣିର ବଡ଼ ସୁନ୍ଦର ଅଭିନୟ କରନ୍ତି । ଏପରି ସଦନୁଷ୍ଠାନ ମୂଳରେ ହଠାତ୍ ଏପରି କୁଠାରଘାତ ହେବାର ଦେଖି କର୍ତ୍ତବ୍ୟୈକନିଷ୍ଠ କାହାର ହୃଦୟ ବା ବ୍ୟଥିତ ନ ହେବ ? ଉପାଧି ସର୍ଜନ ତଥା ଅର୍ଜନ, ଉଭୟର ପଥ ବନ୍ଦ; ସଙ୍ଗେ ସଙ୍ଗେ ବର୍ଜନର ବ୍ୟବସ୍ଥା ମଧ୍ୟ ହେଲା । ଯେଉଁ ଯେଉଁ-ମାନେ ଉପାଧି ବର୍ଜନ କରିବାକୁ ଇଚ୍ଛୁକ ହେଲେ, ସେମାନେ ଦେଶାତ୍ମ୍ୟର ଓ ଯୁଗଧର୍ମର ଦୋହାଇ ଦେଇ ପାରିଲେ, ଏଥିରୁ ଆମ୍ଭମାନଙ୍କୁ ମିଳିବ କଅଣ ? କେହି କେହି ଭାବିଲେ ଏ ବର୍ଜନ ମୂଳରେ କିଛି ଅର୍ଜନର ଉପାୟ ସର୍ଜନ ନ କଲେ ଚଳିବ କିପରି ? ସେମାନେ ତାଙ୍କର କ୍ଷୁଦ୍ର ସ୍ୱାର୍ଥରେ ଜଳାଞ୍ଜଳି ଦେଇ ବୃହତ୍ତର ସ୍ୱାର୍ଥ ସନ୍ଧାନରେ ବ୍ରତୀ ହେଲେ । କ୍ଷୁଦ୍ର ମତ୍ସ୍ୟକୁ ଟୋପ କରି ବୃହତ୍ତର ମତ୍ସ୍ୟକୁ କରଗତ କରାଯାଇ ପାରେ । ଅନେକେ କିନ୍ତୁ ଉପାଧି ବର୍ଜନ କଲେ ନାହିଁ । ଅନ୍ତତଃ ମୋର ଜନୈକବନ୍ଧୁ

ତାଙ୍କର ଉପାଧି ବର୍ଜନ ନ କରିବାର କାରଣ ମୋତେ କହିଲେ । ସେ କହିଲେ ମୁଁ ଶଙ୍କରାଚାର୍ଯ୍ୟଙ୍କ ବେଦାନ୍ତ ଭାଷ୍ୟ ଦେଖୁଥିଲି—ସେ କହନ୍ତି ପ୍ରପଞ୍ଚମୂଳକ ତାବତୀୟ ଉପାଧିର ନିରସନ ନ ହେଲେ ନିରୁପାଧିକ ସତ୍ତାର ଉପଲବ୍ଧି ଅସମ୍ଭବ; ତେଣୁ ସ୍ୱରୂପ ଉପଲବ୍ଧି ଉଡ଼ୁମ୍ବର କୁସୁମଚୟନ ପରି ନିରର୍ଥକ । ଯେଉଁ ସବୁ ଉପାଧି ବର୍ଜନ କଲେ ନିଃଶ୍ରେୟସ ପ୍ରାପ୍ତିର ପଥ ସୁଗମ ହୁଏ, ମୁଁ ସେଆଡ଼େ ତ କିଛି କରି ନାହିଁ; ଏହି ରାଜଦତ୍ତ ଉପାଧି ବର୍ଜନ କଲେ ମିଳିବ କଅଣ ? ରାଜସରକାରଙ୍କ ପ୍ରତି ଅସମ୍ମାନ ଓ କୃତଘ୍ନତାପ୍ରଦର୍ଶନ ହେବ ନାହିଁ କି ?" ବନ୍ଧୁ ମୋର ଏପରି ବୃଦ୍ଧ-ବୟସରେ ବେଦାନ୍ତୀ ଅବସ୍ଥାରେ ବେଦାନ୍ତର ଚର୍ବିତଚର୍ବଣ କରୁ କରୁ ଏମନ୍ତ ବେଦାନ୍ତୀ ବ୍ୟବସ୍ଥା ବାଢ଼ି ବସିଲେ, ମୁଁ ଶୁଣି ଖୁସି ହୋଇ କହିଲି, "ତୁମେ ଭାରି ସୂକ୍ଷ୍ମଦର୍ଶୀ ଦେଖୁଛି । ଉପାଧିର ଲୋଭ ସମ୍ବରଣ କରି ନ ପାରି ଏକାବେଳକେ ଶଙ୍କରାଚାର୍ଯ୍ୟଙ୍କଠାରୁ ଅନୁଜ୍ଞାପତ୍ର ( permit ) ହାସଲ କଲ ?" ଇନ୍ଦ୍ରପ୍ରସ୍ଥର ରାଜଦରବାରର ଉପାଧି ବର୍ଜନ ପ୍ରସ୍ତାବକୁ ଯେତେ-ବେଳେ ସମସ୍ତେ ଗ୍ରହଣ କରିବାକୁ କୁଣ୍ଠିତ ହେଲେ, ଉପଧା ବର୍ଜନ ତ ଆମ ଘରକଥା । ସାହିତ୍ୟକ୍ଷେତ୍ରରେ ଏହାକୁ ସାଦରେ ବରଣ କରିବା କାଠିକର ପାଠ । ତେବେ କେହି କେହି କହନ୍ତି—ଚେଷ୍ଟା କରିବାରେ ଦୋଷ କଅଣ ? କେହି କେହି ଉପଧାବର୍ଜନର ବାହାଦୁରୀ କରି ମୌଳିକ କବିଭାବରେ କୌଣସି ବିଶିଷ୍ଟ ଉପାଧି ଅର୍ଜନର ପନ୍ଥା ଲୋଡ଼ୁଥିବାର ଶୁଣାଯାଏ । ବର୍ଜନହିଁ ଅର୍ଜନର ପ୍ରକୃଷ୍ଟ ପନ୍ଥା । ପୁଣି ମା ସାରଳା ଉପଧା ଅଳଙ୍କାରଟି କିନ୍ତୁ ତାଙ୍କ ପିଲାକାଳରୁ ଦେଇ ଆସୁ ନ ଥିଲେ । ଏହା ତ ଶଙ୍ଖା, ଖଡ଼ୁ ଏବଂ ମୟୂରକଣ୍ଠୀ ଶାଢ଼ୀଯୁଗର ଅଳଙ୍କାର ନୁହେଁ । ଏଟା ବୋଧହୁଏ ଅପେକ୍ଷାକୃତ ଆଧୁନିକ ଯୁଗର ମନଗଢ଼ା ଆଭରଣ ମାତ୍ର । ତାଙ୍କର କୌଣସି କୌଣସି ସେବାବ୍ରତ କହନ୍ତି—ମା ସାରଳା କୁଆଡ଼େ ସେହି ଉପଧା ଅଳଙ୍କାରଟି ଯାଚି ଭଲ ପାଆନ୍ତି । ତେବେ ତାଙ୍କର ଗେହ୍ଲା ପୁଅଙ୍କ ମଧ୍ୟରୁ କେହି ଯଦି ଜିଦ୍ ଧରି ବସନ୍ତି, କିବା ଧାରଣା ଦେଇ ପଡ଼ନ୍ତି, ସ୍ନେହମୟୀ ମା କଅଣ ଜିଦ୍‌ଖୋର ଗେହ୍ଲା ଢଅରଙ୍କ ଅଳଟ ପଣରେ

ଭୁଲିବେ ନାହିଁ ? ତେବେ କଥା ଏତିକି ଯେ ତାଙ୍କର ଅନ୍ୟ ଗୋଟିଏ ଯୋଡ଼ିଏ ପୁଅ ଯଦି ଅପର ଦ୍ୱାରରେ ଅଧା ଦେଇ ଟିକ୍ ଓଲଟା ଧରି ବସନ୍ତି, ତେବେ ମାଆଙ୍କର ସେଥିରେ ଉପାୟ କଅଣ ? ତାଙ୍କ ଅବସ୍ଥା ପରଶୁରାମଙ୍କ ଅବସ୍ଥାକୁ ବଳିଯିବ ନାହିଁକି ? ପରଶୁରାମଙ୍କର ଟିକିଏ ହେଲେ ସୁବିଧା ଥିଲା ଯେ ପିତାମାତାଙ୍କ ଗୁରୁ; ସୁତରାଂ ତାଙ୍କ ମତରେ ପିତାଜ୍ଞା ପାଳନଟା ହେଲା ଅଭ୍ରାନ୍ତ କର୍ତ୍ତବ୍ୟ—କିନ୍ତୁ ମା ସାରଳାଙ୍କ ସ୍ନେହମୟ ଚକ୍ଷୁରେ ତାଙ୍କର ଦୁଇ ଅଜାଡ଼ ପୁଅ ତ ସମାନ—ସେ ଏପରି ସଙ୍କଟାବସ୍ଥାରେ କାହାକୁ ତାଡ଼ିବେ କାହାକୁ ବା ମାରିବେ ? ସୁତରାଂ ଏପରି ସ୍ଥଳରେ ଭାଇ ଭାଇ ମଧ୍ୟରେ ଗୋଟିଏ ରଫାନାମା ହୋଇଗଲେ ମାଆଙ୍କୁ ଆଉ ଭାବିବାକୁ ପଡ଼ନ୍ତା ନାହିଁ । ଉପଧାଳଙ୍କାରଟି ଶୀତଳେଇବାର ଦରକାର ହେଲେ ସ୍ନେହମୟୀ ମା ନିଜର ସ୍ୱାର୍ଥରେ ଜଳାଞ୍ଜଳି ଦେଇ ସନ୍ତାନବାତ୍ସଲ୍ୟର ଅମୂଲ୍ୟ ନିଦର୍ଶନସ୍ୱରୂପ ଉପଧା ବର୍ଜନ କରିବାକୁ ରାଜି ହୋଇ ଯାଆନ୍ତେ । ସୁତରାଂ ରାଜିନାମା ପାଇଁ ଦୁଇପକ୍ଷରୁ ନିଜର ଦାଖଲ କରି ଅରଜ ପେଶ୍ କରିଗଲେ କଥାଟା ସହଜ ହୋଇ ପଡ଼ନ୍ତା । କେହି କେହି କହନ୍ତି, ଉପଧା ଯେ ଭାବପ୍ରକାଶର ଗୋଟାଏ ପ୍ରଧାନ ଅନ୍ତରାୟ ଏଟା ସ୍ୱତଃସିଦ୍ଧ କଥା, ସୁତରାଂ ତାହାର ପ୍ରମାଣର ଆବଶ୍ୟକତା ନାହିଁ । ତାହାର ଜ୍ୱଳନ୍ତ, ଜୀବନ୍ତ ଓ ଦେଦୀପ୍ୟମାନ ଦୃଷ୍ଟାନ୍ତମାନ ସେମାନେ ଦେଇଛନ୍ତି । ସେମାନେ କହନ୍ତି, କବି ଭାବପ୍ରକାଶ କରିବାକୁ ଯାଇ ଉପଧାରୂପ ଶୃଙ୍ଖଳରେ ଛନ୍ଦି ହୋଇ ଭୀଷଣ କଷ୍ଟରେ ପଡ଼ନ୍ତି । ତ୍ରେତାଯୁଗରେ ବାଲ୍ମୀକିଙ୍କର ସେମାନେ ମନ୍ତ୍ରୀରାବଣର ନାଗପାଶ ବନ୍ଧନରେ ପଡ଼ି ସେପରି ହୋଇ ନ ଥିବେ । ମୁଁ ଜଣେ ଅନୁଭବୀ କବିଙ୍କୁ ଅତିଉପଧାପ୍ରିୟ ଜାଣି ପଚାରିବାରୁ ମୋତେ ସେ କହିଲେ, "ଉପଧା ସଂରକ୍ଷଣରେ ମୋର କଷ୍ଟ ହେବା ଦୂରେ ଥାଉ ବରଂ ଆନନ୍ଦ ହୁଏ" । ସୁବିଖ୍ୟାତ କବିରାଜ ଲଲମୋହନ ସାହୁ ଶଙ୍ଖନିଧିଙ୍କ କଥା ମନେ ପଡ଼ିଲା । ସେ ଜଣେ ରୋଗୀକୁ ପଚାରିଲେ, ମୁଁ ଯେଉଁ ଔଷଧଟି ଦେଇଥିଲି ସେଥିରେ ତୁମର ଗୁଡ଼ାଏ ବାନ୍ତି ହୋଇ ଯାଇଥିବ । ରୋଗୀ କହିଲା—ନା ମୋର ତ କାହିଁ ବାନ୍ତି ହୋଇ ନାହିଁ । କବିରାଜ ମହାଶୟ

ଗମ୍ଭୀର ଭାବରେ କହିଲେ; ତାହା କ ହୋଇ ପାରେ, ତୁମର ମସ୍ତିଷ୍କ ବିକୃତ ହୋଇଥିବ, ତୁମେ ବୋଧହୁଏ କାର୍ଯ୍ୟାନ୍ତରରେ ବ୍ୟସ୍ତ ଓ ଅନ୍ୟମନସ୍କ ଥିବାରୁ ବୁଝି ପାରି ନ ଥିବ । ରୋଗୀଭାଗ୍ୟରେ କହିଲା, ହେଲେ ହୋଇଥିବ ! ମୋତେ କିନ୍ତୁ ଜଣା ନାହିଁ । ସେହିପରି ଶଂସିତ ଉପଧାପ୍ରିୟ କବିଟି ବୋଧ-ହୁଏ ଉପଧାସଂରକ୍ଷଣଜନିତ ଆନନ୍ଦରେ ଆତ୍ମହରା ହୋଇ ତଜ୍ଜନିତ କ୍ଳେଶକୁ ଲକ୍ଷ୍ୟ କରି ନାହାନ୍ତି—ଉପଧାରକ୍ଷା ଯେ କାବ୍ୟଜଗତର ଗୋଟିଏ ଉନ୍ନତିକର ବ୍ୟାପାର, ତାହା ପୂର୍ବଧାବାଦୀ ମାନେ ନିଃସଙ୍କୋଚରେ ସ୍ୱୀକାର କରିବେ ଓ ଆମ୍ଭମାନଙ୍କୁ ମାନିନେବାକୁ ହେବ । କାରଣ ଏହା ସ୍ୱତଃସିଦ୍ଧ, ସୁତରାଂ ଏହାର ପ୍ରମାଣ ଖୋଜିବା ବିଡ଼ମ୍ବନା ମାତ୍ର । ଏହାହିଁ ସେମାନଙ୍କର ବିଶ୍ୱାସ ।

ବର୍ତ୍ତମାନ ଦେଖାଯାଉ, ଭାବ ପ୍ରକାଶରେ ଯଦି କୌଣସି ତ୍ରୁଟି ଦେଖାଯାଏ, କାଳ୍ପନିକ ହେଉ ବା ବାସ୍ତବିକ ହେଉ, ତାହା ଯେ କେବଳ ଉପଧାରକ୍ଷା ଦୋଷରୁହିଁ ସମ୍ଭବ ହେଲା, ଏହା ନିଃସନ୍ଦେହରୂପେ ଜାଣିବାର ଉପାୟ କଅଣ ? କେଉଁ ଉପସର୍ଗରୁ ରୋଗଟିର ଉତ୍ପତ୍ତି ନ ଜାଣି ବ୍ୟବସ୍ଥା କଲେ ତାହା କଅଣ ଆମ୍ଭ ଫଳପ୍ରଦ ହେବ ? କେବଳ ଉପଧା ଛଡ଼ା କାବ୍ୟତ୍ରୁଟିର ଅନ୍ୟ କାରଣ ମଧ୍ୟ ଥାଇ ପାରେ । ଏପରି କାକତାଳୀୟ ନ୍ୟାୟାବଲମ୍ବନରେ ଭାବପ୍ରକାଶଜନିତ ତ୍ରୁଟିଟି ଉପଧାମୁଣ୍ଡରେ ସିଧା ସଳଖ ଲଦି ଦେବା ନୈୟାୟିକର କାର୍ଯ୍ୟ ନୁହେଁ । ଉପଧା ଯଦି କାରଣ ନ ହୁଏ, ତେବେ ତାକୁ କାରଣ ବୋଲି ଧରିନେଇ ଅକାରଣ ତାର ନିରାକରଣର ଚେଷ୍ଟା କରି ଅବମୃଷ୍ୟକାରିତାର ପରିଚୟ ଦେବା ସମୀଚୀନ ହେବ କି ?

ବର୍ତ୍ତମାନ ଦେଖାଯାଉ—ଉପଧା ରଖିବାକୁ ଯାଇ କବି କିପରି ଭାବ-ପ୍ରକାଶରେ ଅକ୍ଷମ ହୋଇ ପଡ଼ିଛନ୍ତି । 'କ' ନାମକ କୌଣସି କବି ୧୦୦ ପଂକ୍ତିରେ ଉପଧା ରକ୍ଷା କରିବାକୁ ଯାଇ ଖୁବ୍ ବେଶୀ ହେଲେ ୨୦ ପଂକ୍ତିରେ ଭାବପ୍ରକାଶଜନିତ ତ୍ରୁଟି କରିଛନ୍ତି ବୋଲି ଧରି ନିଆ-ଯାଉ । ପୁଣି 'ଖ' ନାମକ ଅନ୍ୟ ଏକ କବି ୧୦୦ ପଂକ୍ତିରେ ଉପଧା ବର୍ଜ୍ଜନ

କବି ୨୦ ପଂକ୍ତିରେ ଭାବପ୍ରକାଶଜନିତ ତ୍ରୁଟି କରିଅଛନ୍ତି ବୋଲି ଧରି ନିଆଯାଉ । ତେବେ ଏପରି ସ୍ଥଳରେ ଭାବପ୍ରକାଶଜନିତ ତ୍ରୁଟି କପରି ଉପଧାରକ୍ଷଣ ବା ବର୍ଜନ ଉପରେ ନିର୍ଭର କରୁଛି ବୁଝି ହେଉ ନାହିଁ । ଏପରି କବି ମଧ୍ୟ ଖୁବ ବିରଳ ନୁହନ୍ତି, ଯେଉଁମାନେ ଉପଧା ବର୍ଜନ କରି ସୁଦ୍ଧା ଶତକଡ଼ା ପାଞ୍ଚ କୋଡ଼ି ପଂକ୍ତିରେ ଭାବ ପ୍ରକାଶରେ ଅକ୍ଷମ ହୋଇ ବାକୀତକ ପଂକ୍ତିନିଚୟରେ ଶବ୍ଦମନ୍ତ୍ରର ଗଭୀର ପରିଚୟ ଦିଅନ୍ତି । ଅଣୁକବି ରବୀନ୍ଦ୍ରନାଥ ଏତେ ଲେଖି ସୁଦ୍ଧା ଓ ସର୍ବଦା ଉପଧାର ସମ୍ୟକ ଆଦର କରି ସୁଦ୍ଧା କଦାପି ଭାବ ପ୍ରକାଶରେ ଅକ୍ଷମତାର ପରିଚୟ ଦେଇଛନ୍ତି ବୋଲି ମୋର ଧାରଣା ନାହିଁ । ପୁଣି ତାଙ୍କର ସେହି କାଳ୍ପନିକ ଅକ୍ଷମତା ଯେ ଉପଧାଜନିତ ହୋଇ ପାରେ, ତାହା କପରି କଳ୍ପନା କରିବି ? ରାଧାନାଥ-ଙ୍କର ବିଶାଳ କାବ୍ୟକଳା ମଧ୍ୟରେ ଶତକଡ଼ା ୨୦ଟା ପଂକ୍ତି କି କେହି ଦେଖାଇ ପାରେ ଯେଉଁଠାରେ କି ଭାବପ୍ରକାଶଜନିତ ତ୍ରୁଟି ରହିଯାଇ ଅଛି ଏବଂ ସେଟା କେବଳ ଉପଧା ରକ୍ଷାର ବାତୁଳ-ପ୍ରୟାସ-ପ୍ରସୂତ ? ଯଦି ସାମାନ୍ୟ କତିପୟ ପଂକ୍ତିରେ ବିଶେଷ ଦୋଷଦୃଷ୍ଟିରେ ଦେଖିଲେ ସାମାନ୍ୟ କିଛି ତ୍ରୁଟି ଦେଖାଯାଏ ଏବଂ ତାହା ଉପଧା ଦୋଷରୁ ସ୍ୱୀକାର କଲେ ସୁଦ୍ଧା ବାକୀ ସମସ୍ତ ପଂକ୍ତିରେ ଉପଧା ସଙ୍ଗେ ସଙ୍ଗେ ଭାବପ୍ରକାଶର ମନୋହର ସାମଞ୍ଜସ୍ୟ ଦେଖି ଉପଧା ବର୍ଜ୍ଜନ ଲାଗି କିଏ ବଦ୍ଧପରିକର ହେବ ? ଉପଧା ବର୍ଜ୍ଜନ କରିଥିଲେ କବି ରାଧାନାଥ କଅଣ ଭାବ ପ୍ରକାଶ ପରୀକ୍ଷାରେ ୧୦୦ ରୁ ୧୦୦ ନମ୍ବର ପାଇଥାନ୍ତେ ? ତାହାହେଲେ ନିଶ୍ଚୟ ସମ୍ପୂର୍ଣ୍ଣ ଉପଧାବର୍ଜକ କବି କାବ୍ୟକଳାର ପରିପୂର୍ଣ୍ଣତା ବା ସର୍ବାଙ୍ଗୀନ ପରିଣତିର ଆଦର୍ଶରୂପେ କେବଳ କବିକଳ୍ପନାର ବାସିନ୍ଦା ନ ହୋଇ ବାସ୍ତବ ଜଗତର ସ୍ଥୂଳବାତାବରଣରେ ଗୋଚରୀଭୂତ ହୁଅନ୍ତା । ଉପଧା ବର୍ଜକ କବିଙ୍କ ମଧ୍ୟରେ ଉପେନ୍ଦ୍ର ଭଞ୍ଜଙ୍କ ସ୍ଥାନ ଖୁବ ଉଚ୍ଚତର ହେଲେହେଁ ସେ ତ ବହୁଦିନରୁ ସିଂହାସନଚ୍ୟୁତ ହୋଇ ନିରୁଦ୍ଦେଶ ଭାବରେ ଅଜ୍ଞାତ-ବାସ କରୁଅଛନ୍ତି । ସେ ପୁଣି ଅନେକଙ୍କ ମତରେ ଅର୍ଦ୍ଧରଥୀ ମାତ୍ର ଥିଲେ ।

କିନ୍ତୁ ଉତ୍କଳର ମୌଳିକ ଅବଦାନରୂପୀ ସୁବୁଣାକାଳୀ ପାଲ୍ଲବାଲ୍ଲ-ମାନେ ଅଦ୍ୟାପି ତାଙ୍କୁ ସାରଳାପୀଠର ପଞ୍ଚପୁଟବେଷ୍ଟିତ ସ୍ଥାନରେ ଉତ୍କଟ ଉକ୍ତି-ପ୍ରଦର୍ଶନ ପୂର୍ବକ କପଟ ଗଜମୂର୍ଖବହୁଳ ବିରାଟ ଜନତା ଆଗରେ ତାଙ୍କର ଯମକବହୁଳ ପଦାବଳୀ ପରିବେଷଣ କରୁଁ କରୁଁ ବିକଟ ହୁଙ୍କାଟ ମାରି ଉଦ୍‌ଭଟ ନୃତ୍ୟଦ୍ୱାରା ପ୍ରାଣକୁ ଉଚ୍ଚାଟନ କରିଦିଅନ୍ତି । ଏକ ସମୟରେ ଏହି ଗାୟକ ଥାଟହିଁ ଉତ୍କଳରେ ସାହିତ୍ୟସମ୍ରାଟ ରୂପେ ପୂଜା ପାଉଥିଲେ । ଆଜି ପ୍ରାଚୀନପନ୍ଥୀ ପ୍ରାଚୀ ସାହିତ୍ୟସଂଘର ପ୍ରଚୁର ପରିଚର୍ଯ୍ୟାରୂପ ଅନଧିକାରଚର୍ଚ୍ଚା ଫଳରେ ତାଙ୍କୁ ଅନଙ୍ଗପଞ୍ଜନନାମା ପତିତ ଉଦ୍‌ବାନ୍ତ ଭୂଖଣ୍ଡର ବାସୁଦେବ ରାଜଚକ୍ରବର୍ତ୍ତୀ ରୂପେ କିଛି ବୃତ୍ତି ଖଞ୍ଜି ଦେଇଛନ୍ତି । ତେଣୁ ସେ ନବୀନପନ୍ଥୀଙ୍କର ଚକ୍ଷୁଃଶୂଳ ହୋଇଛନ୍ତି, କିନ୍ତୁ ତାଙ୍କ କାବ୍ୟ ସାହିତ୍ୟରେ ଭାବପ୍ରକାଶ ଜନିତ ନାନାବିଧ ତ୍ରୁଟି ମଧ୍ୟ ଥିଲା—ତାହା ଅନ୍ୟ କାରଣରୁ । ଉପଧାସେବୀ କବିମାନଙ୍କ ମଧ୍ୟରେ ରବୀନ୍ଦ୍ରନାଥଙ୍କ ଭାବପ୍ରକାଶଜନିତ ତ୍ରୁଟି ଅଛି ବୋଲି ମୋର ଧାରଣା ନାହିଁ । ରାଧାନାଥଙ୍କର ସାମାନ୍ୟ ଯାହା ତ୍ରୁଟି ବୋଲି ଧରାଯାଉଛି, ତାହା ଉପଧାଜନିତ ନୁହେଁ । ପୁଣି ମଧୁସୂଦନ, ନନ୍ଦକିଶୋର, ଗଙ୍ଗାଧର ପ୍ରଭୃତିଙ୍କ ତ୍ରୁଟି କେବଳ ଉପଧାଜନିତ ନୁହେଁ । ଅପରନ୍ତୁ ଉପଧା ବର୍ଜନ କରି ଏପର୍ଯ୍ୟନ୍ତ କେହି କାବ୍ୟକଳାର ପରାକାଷ୍ଠା ଦେଖାଇ ନାହାନ୍ତି । ଉପଧା ବର୍ଜକ କବିମାନେ କେହି ହେଲେ ଏପର୍ଯ୍ୟନ୍ତ ସମ୍ପୂର୍ଣ୍ଣରୂପେ ଦୋଷଶୂନ୍ୟ ନୁହନ୍ତି । ଏଥିରୁ ସ୍ପଷ୍ଟ ପ୍ରମାଣିତ ହେବ ଯେ କବିଙ୍କ ଭାବପ୍ରକାଶଜନିତ ଶଂସ୍ରିତ ତ୍ରୁଟି ସଙ୍ଗରେ ଉପଧାର ବିଶେଷ କିଛି ସମ୍ପର୍କ ନାହିଁ । ଅକ୍ଷମତାହିଁ ତାହାର ମୁଖ୍ୟ କାରଣ । ସବୁ କବି ସବୁ ଭାବ ଗଦ୍ୟ ସାହିତ୍ୟରେ ମଧ୍ୟ ପ୍ରକାଶ କରି ପାରନ୍ତି ନାହିଁ ? ଗଦ୍ୟ ସାହିତ୍ୟରେ ତ ବାଧା ବନ୍ଧନ ଖୁବ କମ । ଏହି ଅକ୍ଷମତାର ଗୋଟାଏ ପ୍ରଧାନ ହେତୁ ଏହି ଯେ ଚିନ୍ମୟ ଅନ୍ତରାଜ୍ୟର ଭାବରାଶିକୁ ଭାଷାର ସ୍ଥୂଳ ଉପାଦାନ ସାହାଯ୍ୟରେ ପୂର୍ଣ୍ଣରୂପେ ମୂର୍ତ୍ତିମାନ୍ କରିବା ଭାରି କଠିନ ; ସୁତରାଂ ସୁଦକ୍ଷ ବକ୍ତାଣୀ ମଧ୍ୟ ଥରେ

ଥରେ ନିଜ ଅକ୍ଷମତାର ପରିଚୟ ଦେଇ ଥାଆନ୍ତି । ଯଦି ସୁବିଧାବାଦୀ-ମାନେ ଉପଧାକୁ କାରଣ ବୋଲି ଧରି ଉପଧାବର୍ଜନର ପକ୍ଷପାତୀ ହୁଅନ୍ତି, ସେମାନେ କଅଣ ସୁବିଧାବାଦର ଦୋହାଇ ଦେଇ ଏକାବେଳକେ ଭାଷାର ସ୍ଥୂଳ ବ୍ୟବଧାନଟା ବର୍ଜନ କରି ନୀରବ କବିତ୍ୱାରେ ଅର୍ଜନରେ ମନ ଦେବେ ? "ମୂଳୁ ମାରିଲେ ଯିବ ସରି ! ଦେବଙ୍କ ସଙ୍ଗେ କିମ୍ପା କଳି ?" ତାହାହେଲେ କେବଳ ଉପଧା ବର୍ଜନ ନ କରି ଭାଷା ବର୍ଜନ କରିବାଟା ସବୁଠାରୁ ଭଲ ହୁଅନ୍ତା ।

ତାହା ଯଦି ସମସ୍ତଙ୍କର ମନଃପୂତ ନ ହୁଏ, ବାଧାବନ୍ଧନହୀନ ଗଦ୍ୟ ସାହିତ୍ୟରେ ମଧ୍ୟ ଭାବ ପ୍ରକାଶ ଖୁବ୍ ସହଜ ନୁହେଁ—କାରଣ ଭାଷାର ସ୍ୱାଭାବିକ ସ୍ଥୂଳତ୍ୱହିଁ ଗୋଟିଏ ଅପରିହାର୍ଯ୍ୟ ଅନ୍ତରାୟ ଏବଂ ଅନିବାର୍ଯ୍ୟ ବାଧାରୂପେ କାବ୍ୟକଳାର ପଥକୁ ଦୁର୍ଗମ କରେ । ପଦ୍ୟ ସାହିତ୍ୟର କଥା ସ୍ୱତନ୍ତ୍ର । ସେଥିରେ ଶୃଙ୍ଖଳର ସୀମା ନାହିଁ । ବନ୍ଧନର ଅନ୍ତ ନାହିଁ—ପଦେ ପଦେ ନିୟମାନୁବର୍ତ୍ତିତା ପ୍ରଭୃତି ନାନା ଜଟିଳତାର ମଧ୍ୟଦେଇ କାବ୍ୟକଳା ଗଢି ଉଠେ । ଅବର୍ଣ୍ଣବାଦରେ ସୁବିଧାବାଦର ସ୍ଥାନ ନାହିଁ । ସୁବିଧାବାଦର ଦୋହାଇ ଦେଲେ କବିତା ଲେଖିବାର ପ୍ରୟୋଜନ କଅଣ ? ଯଦି ଉପଧା ବର୍ଜନ କରାଗଲା, ତେବେ କବିତାର ଅନ୍ୟାନ୍ୟ ବନ୍ଧନ ବା ରହିବାର ପ୍ରୟୋଜନ କଅଣ ?

ଉପଧା ରଖିବାକୁ ଯାଇ କୌଣସି କବି ଟିକିଏ ଅସୁବିଧା ବୋଧ କରୁଥିଲେ ଯଦି ଉପଧା ବର୍ଜନ ଶ୍ରେୟସ୍କର ମନେ କରାଯିବ, ତେବେ ଛନ୍ଦରେ ଦୁଇ ପଂକ୍ତି ବା ସମାନ ହେବ କାହିଁକି ? ସେଥିରେ ପୁଣି ଯଥା-ସ୍ଥାନରେ ଯତିପାତର ବ୍ୟବସ୍ଥା ରହିବ କାହିଁକି ? ଦୁଇ ପଂକ୍ତିର ଶେଷ ବର୍ଣ୍ଣ ଯୋଡ଼ିକର ସାମ୍ୟ ରକ୍ଷା କରିବାର ଚେଷ୍ଟା ବା ହେବ କାହିଁକି ? ଅମିତ୍ରାକ୍ଷରରେ ଯତିପାତ-ପ୍ରାଚୁର୍ଯ୍ୟର ପ୍ରୟୋଜନ କଅଣ ? ନିରଙ୍କୁଶ ଗଦ୍ୟରଚନା ନିଖିଲ ବାଧାବନ୍ଧନହୀନ ହୋଇ ସୁବିଧାବାଦର

ଶୀର୍ଷସ୍ଥାନ ଅଧିକାର କରିବ ନାହିଁ କାହିଁକି ? ତେଣୁ ନଟବାଣୀ, କେଦାର ଚକ୍ରକେଳି, କଳହଂସ କେଦାର, ରସକୁଲ୍ୟା ଓ ଶ୍ରେଣୀ ପ୍ରଭୃତି ଛନ୍ଦର ଜଟିଳତାର ପ୍ରୟୋଜନ କଅଣ ? ସେ ଗୁଡ଼ିକ ତ ଜଞ୍ଜାଳ-ଜାଲ-ମାଳା ମାତ୍ର । ଭାବ ପ୍ରକାଶ କରିବାକୁ ଯାଇ କବି ଛନ୍ଦବନ୍ଧମଧ୍ୟରେ ଛନ୍ଦ ହୋଇ ଧନ୍ଦ ହେବେ ନାହିଁ କି ? ତାଙ୍କର ସ୍ୱଚ୍ଛନ୍ଦବିହାରରେ ନିଃସନ୍ଦେହରୂପରେ ବାଧା ପଡ଼ିବ । ଉପେନ୍ଦ୍ର ଭଞ୍ଜ ପ୍ରଭୃତି ପ୍ରାଚୀନକବିମାନେ ଶ୍ରେଣୀରେ ଦୁଇଟିମାତ୍ର ମେଳରେ ଖୁସି ହୋଇଥିଲେ, ମାତ୍ର "ଗଙ୍ଗାଧର" ତୃତୀୟ ମେଳଟିର ମୋହରେ ପଡ଼ି ସେଥିରେ ପୁଣି ଉପଧାରକ୍ଷାରୂପ ଶୃଙ୍ଖଳଟି ପିନ୍ଧି, "ମଙ୍ଗଳେ ଅଇଲ୍ଲ ଉଷା ବିକଚ ରାଜୀବତୃଷା ଜାନକୀ ଦର୍ଶନତୃଷା ହୃଦୟେ ବନ୍ଧି," ପ୍ରଭୃତି ଗାଇ ପୂର୍ଣ୍ଣ ଶ୍ରେଣୀର ଅବତାରଣା କରି କି ଦୁଃଖ ପାଇ ନ ଥିବେ ? ଭାବପ୍ରକାଶ ତ ବୋଧହୁଏ ସେପରି ସୁବିଧାରେ ହୋଇ ପାରି ନ ଥିବ । "ଆପଣା ହସ୍ତେ ଜିହ୍ୱା ଛେଦି, କେ ଅଛି ତାର ପ୍ରତିବାଦୀ" । ମୁଁ ନିଜେ ଗଙ୍ଗାଧରଙ୍କ ପଦାଙ୍କ ଅନୁସରଣ କରି ଖୁବ୍ କମରେ ୨୦୦୦ ପଂକ୍ତିର ପୂର୍ଣ୍ଣ ଶ୍ରେଣୀ ଲେଖିବାବେଳେ ଉପଧାରୂପ ଉପାଧାନଦ୍ୱୟ ଅବଲମ୍ବନ କରି ନିରବଲମ୍ବ-କଳନାବିଳାସରେ ଆତ୍ମହରା ହୋଇପଡ଼ୁଥିଲି । ଏଣେ ହେଲେ ଭାବ ପ୍ରକାଶରେ ଅଭାବଗ୍ରସ୍ତ ହୋଇ ପଡ଼ିବାର ଦୁର୍ଭାବନା ମୋତେ ସ୍ପର୍ଶ କରି ନାହିଁ । ଅପରନ୍ତୁ ପୂର୍ଣ୍ଣ ଶ୍ରେଣୀର ପଂକ୍ତିଦ୍ୱୟର ଉପଧାମଲ୍ଲିନାଥମେଳାରେ ଉତ୍କଟ ଗଞ୍ଜିକା ସେବନ କରି ଭାବ ପ୍ରକାଶରେ ଅକ୍ଷମ ହେବା ତ ଦୂରର କଥା ; ବରଂ ପ୍ରଗଲ୍ଭ ବାଚାଳତା ଦୋଷରେ ଲିପ୍ତ ହୋଇ ପ୍ରଳାପମତ୍ତତା ବ୍ୟାଧି ଅର୍ଜନ କରିଥିଲି । ଉପଧା ପାଇଁ ପ୍ରାୟ ମୋତେ ବେଗ ପାଇବାକୁ ହୋଇ ନାହିଁ କହିଲେ ସତ୍ୟର ଅପଳାପ ହେବ ନାହିଁ । ତେବେ କାହାରି ହେଉ ନ ଥିବ ଏପରି କହିବା ଅନୁଦାରତାର ପରିଚାୟକ ହେବ । ମୁଁ ସ୍ୱୀକାର କରେଁ ଉପଧା ରଖିବାକୁ ଯାଇ ଯେପରି ଶ୍ରମ ସ୍ୱୀକାର କରିବାକୁ ପଡ଼େ, ସେହିପରି ଯତିପାତ ପ୍ରଭୃତି ନାନା ନିୟମ ମାନିବାକୁ ମଧ୍ୟ ବହୁଶ୍ରମ ସ୍ୱୀକାର

କରିବାକୁ ଚାହାଇଥାଏ । ପାଲବଣ୍ଡା ମନ୍ତ୍ରୀ ପରି ମୂର୍ଦ୍ଧକୁ ବଣ୍ଡାଟି କାଢ଼ିନେଲେ କବିତା ଅନର୍ଗଳ ଅନାବିଳ ଧାରାରେ ପ୍ରବାହିତ ହେବାଟା କେବଳ କବିକଳ୍ପନା ମାତ୍ର । ଯେ ସେହି ଭ୍ରମଟିକୁ ସ୍ୱୀକାର କରିବାକୁ କୁଣ୍ଠିତ ସେ କାହିଁକି ବା ବାଗ୍‌ଦେବୀମନ୍ଦିରର ଭକ୍ତ ମଧ୍ୟରେ ଷଣ୍ଢ ରଡ଼ି ଛାଡ଼ିବ ? ଯେ ଗଦ୍ୟର ଧର୍ମଶାଳାରେ ବସି ସୃଷ୍ଟିକର ଚୂଡ଼ାରସା ହାଣ୍ଡି ଭାଙ୍ଗିଲା ନ କରି ମନ୍ଦିର ଭିତରର ରସାବଳୀ ଶ୍ଲୋକରେ ଜିହ୍ୱାକୁ ଲେଲିହାନ କଲେ ଭବ୍ୟତାର ସୀମାଲଙ୍ଘନ ହେବ ନାହିଁକି ? ଗବେଷଣାର ଅନୁସନ୍ଧରେ ପୈତୃକ ପ୍ରାଣ ପ୍ରତିପୋଷଣ କରିବାଟା ବରଂ ତାହାଠାରୁ ଢେର ଆତ୍ମସମ୍ମାନସୂଚକ ହେବ । "ମନ୍ଦକବିଯଶଃପ୍ରାର୍ଥୀ ଉଦ୍‌ବାହୁରିବ ବାମନଃ" ହୋଇ ହାସ୍ୟାସ୍ପଦ ହେବାରେ କି ସୁଖ ? ଅନେକ ଲବ୍‌ଧପ୍ରତିଷ୍ଠ ଓ ଆଧୁନିକ କବି ଯଥା—ରବୀନ୍ଦ୍ରନାଥ, ଉପଧାକୁ ଅଳଙ୍କାରରୂପେ ଗ୍ରହଣ କରିଅଛନ୍ତି ଓ ଉପଧା ଯେ ମଣ୍ଡନକଳାର ଗୋଟିଏ ପ୍ରଧାନ ଉପକରଣ, ତାହା ତାଙ୍କ କବିକୃତିରୁ ସ୍ପଷ୍ଟ ଜଣାଯାଏ । ଏଠାରେ କେହି ଯଦି ପୂର୍ବ ପକ୍ଷ କରି କହନ୍ତି—ହଁ, ରବୀନ୍ଦ୍ରନାଥଙ୍କ କାବ୍ୟରେ ସୁରେନ୍ଦ୍ରନାଥଙ୍କ ଅନର୍ଗଳ ବାଗ୍ଲତା ତଥା ଅନାବିଳ ଭାବପ୍ରକାଶ ଅଛି ସତ୍ୟ; କିନ୍ତୁ ତାଙ୍କ ପ୍ରତିଭାର ଅନୁରୂପ କାବ୍ୟକଳାର ମହାପ୍ରକାଶ ତ ସମ୍ଭବପର ହୋଇ ନାହିଁ । ଜାଲିୟାନାୱାଲାବାଗ୍‌ର ନୃଶଂସ ହତ୍ୟାକାଣ୍ଡର ପ୍ରତିବାଦସ୍ୱରୂପ ସେ ଯେପରି Sir, Kinght (ବୀରେନ୍ଦ୍ର) ଉପାଧି ପ୍ରତ୍ୟାହାର କଲେ, ସେ ଯଦି ସେହିପରି ଯଥା ସମୟରେ ଉପଧା ବର୍ଜନ କରିଥାନ୍ତେ, ତାହାହେଲେ ସେ କବିଭାବରେ ନିଶ୍ଚୟ ତୁଷାରଧବଳ ବିଶଦତର କୀର୍ତ୍ତି ଅର୍ଜନ କରି ପାରିଥାନ୍ତେ । ଭାଗ୍ୟକୁ ତାଙ୍କର ଗୀତାଞ୍ଜଳିର ଇଂରାଜୀ ଅନୁବାଦରେ ଉପଧାର ନାମଗନ୍ଧ ସୁଦ୍ଧା ନ ଥିଲା । ଥିଲେ କଅଣ ହୋଇଥାନ୍ତା ତାହା ଅନୁମାନ କରିବା ଅତି କଠିନ । ଉପଧାବର୍ଜିତ କାଳନିକ କବୀନ୍ଦ୍ରଙ୍କ ମହାପ୍ରକାଶର କଳନାର କଥା ଛାଡ଼ି, ଉପଧାମଣ୍ଡିତ କାବ୍ୟକଳାର ବାସ୍ତବିକ ରବୀନ୍ଦ୍ରଙ୍କ କାର୍ଯ୍ୟକଳାପରୁ ଜଣାଯାଏ, ହୁଏ ତ ସେ ଶଙ୍ଖନାଦୀଙ୍କର

ଶ୍ରେଣୀ ପରି ଉପଧାଜନିତ ଅସୁବିଧା ବୁଝି ପାରି ନ ଥିଲେ କମ୍ବା ବୁଝି ପାରି ଥିଲେହେଁ ସେ ଅସୁବିଧାଟିକୁ ନଗଣ୍ୟ ବୋଲି ମନେ କରିଥିଲେ କମ୍ବା ଉପଧାକୁ ଗୋଟିଏ ଅଳଙ୍କାର ମଣି ତାହାର ସଦ୍‌ବ୍ୟବହାର କରିଥିଲେ । ଏହା ବିବେଚନାର ବିଷୟ ଯେ, ଅଦ୍ୟାପି କେହି ଉପାଧି ବର୍ଜନକାରୀ କବି ଭାବପ୍ରକାଶରେ ରବୀନ୍ଦ୍ରନାଥ ଓ ରାଧାନାଥଙ୍କ ଠାରୁ ଶ୍ରେଷ୍ଠ ଦକ୍ଷତାର ପରିଚୟ ଦେଉଅଛନ୍ତି ବୋଲି ମୋତେ ଜଣା ନାହିଁ । ଅନ୍ତତଃ ରବୀନ୍ଦ୍ରନାଥ କାବ୍ୟଜଗତରେ ଏ ଦିଗରେ ଅପ୍ରତିଦ୍ୱନ୍ଦ୍ୱୀ ସମ୍ରାଟ ଏହା ସମସ୍ତେ ମୁକ୍ତକଣ୍ଠରେ ସ୍ୱୀକାର କରିବେ ।

ଉପଧା ମଣ୍ଡନକଳାର ଗୋଟିଏ ଉପକରଣ; ତେଣୁ କାବ୍ୟକଳାର ଅଳଙ୍କାରରୂପେ ଲବ୍‌ଧପ୍ରତିଷ୍ଠ କବିମାନେ ତାହାକୁ ଗ୍ରହଣ କରିଅଛନ୍ତି । ଅଳଙ୍କାର କେବେହେଁ ଭାବପ୍ରକାଶର ଅନ୍ତରାୟ ନୁହେଁ, ବରଂ ଏହା ଭାବପ୍ରକାଶରେ ପ୍ରଭୂତ ସହାୟତା କରେ । ଭାବପ୍ରକାଶର ଅର୍ଥ କଣ ପୁଣି ଥରେ ବିଚାର କରାଯାଉ । କାବ୍ୟରେ ଭାବପ୍ରକାଶର ଗୋଟିଏ ବିଶିଷ୍ଟତା ଅଛି । ବେଦ, ବେଦାଙ୍ଗ, ଉପନିଷଦ୍, ଦର୍ଶନ ଓ ଗୀତା ପ୍ରଭୃତିରେ କେତେ ପାରମାର୍ଥିକ ତତ୍ତ୍ୱର ବ୍ୟାଖ୍ୟା ଅଛି, କେତେ ଭାବ ଓ ମହାଭାବର ସ୍ୱରୂପ ନିର୍ଣ୍ଣୟ କରି ଯାଇଅଛି । ଗୀତାର ମହାବାକ୍ୟରେ ଷଡ଼୍‌ଦର୍ଶନର ସମସ୍ତ ତଥ୍ୟ ବିଶଦଭାବରେ ବ୍ୟାଖ୍ୟା କରାଯାଇଅଛି । ଦାର୍ଶନିକର ଏହି ଭାବପ୍ରକାଶ ସଙ୍ଗରେ କବିଙ୍କର ଭାବପ୍ରକାଶର ପାର୍ଥକ୍ୟ ଅଛି । ଦାର୍ଶନିକ ସତ୍ୟ-ଶିବଙ୍କର ସନ୍ଧାନରେ ବ୍ୟସ୍ତ । ଦାର୍ଶନିକର ଗବେଷଣା ସତ୍ୟ ପରମାର୍ଥର ସନ୍ଧାନରେ, ଜୀବର ଚରମ ଓ ପରମ ନିଃଶ୍ରେୟସର ଅନ୍ୱେଷଣରେ ନିଯୁକ୍ତ ଦାର୍ଶନିକଙ୍କର ସେହି ସତ୍ୟଶିବଙ୍କର ସନ୍ଧାନ ପାଇ କଳାବିତ୍ କବି ତାଙ୍କୁ ଚିରସୁନ୍ଦର ହୃଦୟରଞ୍ଜନ ରୂପରେ ଜନସମୀପରେ ଉପସ୍ଥାପିତ କରେ । ସୁତରାଂ କବିଙ୍କର ଭାବପ୍ରକାଶର ବିଶିଷ୍ଟତା ଏହି ଯେ ସେ ଭାବର ସତ୍ୟ-ମଙ୍ଗଳ ମୂର୍ତ୍ତିକୁ ପରମସୁନ୍ଦରରୂପେ ସଜାଇ ପରେ ଭାବର ଅନ୍ତର୍ନିହିତ ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟ ଉଦ୍‌ଘାଟନ କରେ । ଭାବ ଏକ ଦିଗରେ ଯେପରି ସତ୍ୟ ଓ ମଙ୍ଗଳର ଆଧାର, ସେହିପରି ଅନ୍ୟ ଦିଗରେ

ସେ ମାଧୁର୍ଯ୍ୟ ଓ ସୌନ୍ଦର୍ଯ୍ୟର ସମାବେଶ । କାବ୍ୟକଳା ଏହି ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟର ଆବରଣ ମୋଚନ କରି ଭାଷାର ଭଙ୍ଗୀଦ୍ୱାରା ତାହା ପ୍ରକଟ କରେ । ଭାବକୁ ସୁନ୍ଦରରୂପେ ପ୍ରକାଶ କରିବାକୁ ଗଲେ ମଣ୍ଡନକଳା-ନିପୁଣ କବି ନାନା ଅଳଙ୍କାର ଲୋଡ଼ନ୍ତି । ଉପଧା ଗୋଟିଏ ଅଳଙ୍କାର ବୋଲି ବରେଣ୍ୟ କବିଚୂଡ଼ାମଣିମାନେ ସାଦରେ ବରଣ କରି ନେଇ ଅଛନ୍ତି । ସୁତରାଂ ଏହା ଭାବପ୍ରକାଶର ସହାୟତା କରେ—ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟର ଦ୍ୟୋତକରୂପେ । ମନେ କର, ଦୁଇଜଣ କବି ଭାବପ୍ରକାଶରେ ସମାନ ଦକ୍ଷତା ଲାଭ କରି ଜଣେ ଉପଧା ପରିହାର କଲେ ଏବଂ ଅନ୍ୟ ଜଣକ ଉପଧା ବରଣ କରି ଅବିକଳ ସମଭାବାପନ୍ନ ଦୁଇଟି କବିତା ଲେଖିଲେ । ଦୁଇଟି କବିତା ଅନ୍ୟାନ୍ୟ ସବୁ ବିଷୟରେ ସମଶ୍ରେଣୀ ହେଲେହେଁ ଉପଧା ବିବର୍ଜିତ କବିତାଠାରୁ ଉପାଧିମଞ୍ଜୁଳ କବିତାଟି ଯେ ବେଶୀ ସୁନ୍ଦର ଓ ହୃଦୟରଞ୍ଜକ ହେବ ଏଥିରେ ସନ୍ଦେହ କଅଣ ? କିନ୍ତୁ ଯଦି ଜଣେ କବି କୌଣସି କବିତାରେ ସ୍ଥଳବିଶେଷରେ ମନେ କରନ୍ତି ଯେ ଉପଧା ପରିତ୍ୟାଗ କଲେ ଭାବପ୍ରକାଶ ସୁଗମ ହେବ, ଭାବପ୍ରକାଶକୁ ଗୌଣ କରି ଉପଧାକୁ ମୁଖ୍ୟ କରି ଗ୍ରହଣ ନ କରିବାହିଁ ଉଚିତ । ଉପଧା ଯଦି ସ୍ଥଳବିଶେଷରେ ଭାବପ୍ରକାଶର ମଣ୍ଡନ ନ ହୋଇ ଖଣ୍ଡନ ହୁଏ ତେବେ ତାହା ପରିତ୍ୟାଜ୍ୟ । ତାହା ବୋଲି ଅଳଙ୍କାର ବର୍ଜନ କରି ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟ ବର୍ଦ୍ଧନ ଚେଷ୍ଟା ମଧ୍ୟ ପଣ୍ଡଶ୍ରମ ମାତ୍ର । ଉପଧା ବର୍ଜନ କରି ଅନ୍ୟାନ୍ୟ ଅଳଙ୍କାର ସହଯୋଗରେ ଭାବ ପ୍ରକାଶ ସମ୍ଭବ ହୋଇ ପାରେ ସତ୍ୟ; ଉପାଧି ସାହାଯ୍ୟରେ ସୌନ୍ଦର୍ଯ୍ୟ ବର୍ଦ୍ଧନ ଅବଶ୍ୟମ୍ଭାବୀ । ସବୁ ସୁନ୍ଦରୀ କିଛି ସବୁବେଳେ ସବୁ ଅଳଙ୍କାର ଘେନନ୍ତି ନାହିଁ । ତେବେ କବିତାସୁନ୍ଦରୀଙ୍କ ଅଙ୍ଗରେ ଉପଧାଳଙ୍କାର ଦେଖିଲା ମାତ୍ରକେ ବେହାରୁ ବିର ଲେଉଟି ଯିବେ; ଏପରି ବାତିକା ମସ୍ତିଷ୍କବିକାରର ଲକ୍ଷଣ ମାତ୍ର । ତେବେ ଅଳଙ୍କାରର ମର୍ଯ୍ୟାଦା ପ୍ରଚଳିତ ରୀତି ବା ଦେଶାଚାରର ଉପରେ ନିର୍ଭର କରେ । ଆଧୁନିକ ଯୁଗର କବିମାନେ ଉପଧାକୁ ଅପରିହାର୍ଯ୍ୟ ଅଳଙ୍କାରରୂପେ ଗ୍ରହଣ କରିଥିବାର ପ୍ରତ୍ୟକ୍ଷରେ ଦେଖୁଥାଉଁ । ସେମାନଙ୍କ ମଧ୍ୟରେ ଯୁଗପ୍ରବର୍ତ୍ତକ ଏବଂ ପ୍ରଗତିପନ୍ଥୀ

ଦେବମାନଙ୍କର ସାକ୍ଷାତ୍‌ଗୁରୁରୂପେ ଅଭିନନ୍ଦିତ ବିଶ୍ୱକବି ରବୀନ୍ଦ୍ରନାଥଙ୍କ ଅସମୋର୍ଦ୍ଧ୍ୱ କଳାନୈପୁଣ୍ୟ ସ୍ୱୀକାର କରି ମଧ୍ୟ ତାଙ୍କର ପରମ ଆଦରଣୀୟ ଉପମାଲଙ୍କାରଟି ଶତଧା ଖଣ୍ଡବିଖଣ୍ଡ କରି ଏବଂ କବିତାସୁନ୍ଦରୀଙ୍କ ଲଳିତ କୋମଳ ଅଙ୍ଗଲତାରୁ ଏହି ଯୁଗଳ ଶୃଙ୍ଖଳକୁ ମୁକ୍ତ କରିବା ଲାଗି ଯେଉଁ ଉଚ୍ଛୃଙ୍ଖଳତାର ଅଭିନୟ ଆରମ୍ଭ ହେଲାଣି ସେଥିରେ ହିରଣ୍ୟକଶିପୁଙ୍କ ତନୁଭଙ୍ଗ ସଙ୍ଗେ ସଙ୍ଗେ ନଖାଘାତରୁ ପ୍ରହ୍ଲାଦଙ୍କ ପ୍ରାଣରକ୍ଷା କଠିନ ହୋଇ ପଡ଼ିବ । କାରଣ ଅମ୍ଭମାନଙ୍କର ଆଧୁନିକ ଯୁଗର ନରସିଂହ-ମାନଙ୍କ ଦଂଶନଠାରୁ ଆସ୍ଫାଳନହିଁ ବେଶୀ ଭୟାବହ ।

କି ଆଶ୍ଚର୍ଯ୍ୟର କଥା, ଯେଉଁମାନେହିଁ ରବିଠାକୁରଙ୍କ ଆଦର୍ଶ ବରଣ କରି ପାରିଛନ୍ତି ବୋଲି ଗର୍ବରେ ଧରାକୁ ସରାଜ୍ଞାନ କରନ୍ତି ଓ "ରବିବାବୁଚ୍ଛାୟା ତଳେ ବୈଠକ ହୁଇ ବାହାକୁ, ରବିତଳେ ଜବାପଣେ ନ ମଣନ୍ତି କାହାକୁ ।" ଆଜି ସେହିମାନେହିଁ ବିଶ୍ୱକବି ଆଦର୍ଶକୁ କପଟ ସମ୍ମାନ କରନ୍ତି ତାହାହିଁ ଭାବିବାର କଥା । ରବୀନ୍ଦ୍ରନାଥ ନିଜେ ଉପମାର ପ୍ରଗାଢ଼ ନିଷ୍ଠାପର ସେବକ । ଅଥଚ ତାଙ୍କର ସ୍ତାବକମାନେ ତାଙ୍କର ଆଦର୍ଶକୁ ବର୍ଜନ କରୁଛନ୍ତି, ଏହାହିଁ ହେଲା ଯୁଗଧର୍ମ । ପୂର୍ବରେ କହିଛି ମହାତ୍ମାଙ୍କ ଆବିର୍ଭାବର ଅନ୍ତରଙ୍ଗ କାରଣ—ରାଜନୀତି, ଧର୍ମ ଓ ଜୀବନଯାତ୍ରାର ଏକ ଅପୂର୍ବ ସମନ୍ୱୟ—ଅହିଂସା ନୀତି ଓ ସତ୍ୟାଗ୍ରହ ଉପରେ ଗଠିତ ମହାବିଶ୍ୱପ୍ରେମରାଜ୍ୟର ପ୍ରତିଷ୍ଠା । ତାଙ୍କର ଅନ୍ତରଙ୍ଗ ଅନ୍ତେବାସୀମାନେ ତାଙ୍କର ବହିରଙ୍ଗ କାର୍ଯ୍ୟକଳାପ ସବୁ ବରଣ କରି କେବଳ ତାଙ୍କର ଧର୍ମପ୍ରାଣତା ଓ ମହାପ୍ରାଣତା ଏବଂ ଦୀନବତ୍ସଳତା ପରିତ୍ୟାଗ କଲେ । ସାରାଂଶ ବାଦ ଦେଇ ଅସାରାଂଶ ଗ୍ରହଣ କରିବାଟା ଗୋଟାଏ ସଂକ୍ରାମକ ବ୍ୟାଧିରୂପରେ ପ୍ରବେଶ କରି ସମାଜକୁ ଅନ୍ତଃସାରଶୂନ୍ୟ କରି ଦେଉଛି । କେହି କେହି ମହାତ୍ମାଜୀଙ୍କ ପଟ୍ଟଶିଷ୍ୟ ଅମ୍ଳାନ ବଦନରେ ଠିକ୍ ସ୍ୱଚକ୍ଷୁରେ ଦେଖିଲାଭଳି କହି ଦେଉଛନ୍ତି ଯେ ଭାରତର ପତନ ଆରମ୍ଭ ହେଲା ଯେଉଁ ଦିନଠାରୁ ଭାରତୀୟମାନେ ଶୌର୍ଯ୍ୟବୀର୍ଯ୍ୟ ପରିହାର କରି ଧର୍ମଧ୍ୱଜୀ ହୋଇପଡ଼ିଲେ । ଉତ୍କଳର କଥା ତ ଜ୍ୟାମିତିର ସୁପ୍ରସିଦ୍ଧ

ସ୍ୱତଃସିଦ୍ଧ ପରି ପ୍ରମାଣ ଲୋଡ଼ୁ ନାହିଁ । ଜଣେ ସ୍ୱଦେଶପ୍ରେମୀ ବୁଝନ୍ତେ ତାଙ୍କର ଐତିହାସିକ ଦିବ୍ୟଦୃଷ୍ଟିବଳରେ ଅବଲୋକନ କଲେ ଯେ ଯେତେବେଳେ ଶ୍ରୀ ଶ୍ରୀ ଗୌରସୁନ୍ଦର ସନ୍ନ୍ୟାସ ଗ୍ରହଣ କରି ଶ୍ରୀ ଶ୍ରୀ ନୀଳାଦ୍ରି-କନ୍ଦରରେ ଉପସ୍ଥିତ ହୋଇ ଉତ୍କଳର ଗଜପତି ସମ୍ରାଟ ପ୍ରତାପରୁଦ୍ର ଦେବଙ୍କୁ ଅଙ୍ଗୀକାର କରି ଆତ୍ମସାତ୍ କଲେ, ଠିକ ସେହି ସମୟରେହିଁ ଉତ୍କଳର ସୌଭାଗ୍ୟରବି ମଧ୍ୟାହ୍ନ ଆକାଶରେ ପୂର୍ଣ୍ଣ ପ୍ରଭାବ ବିସ୍ତାର କରି ବିରାଜମାନ କରୁଥିଲେ । ସେ ଏପରି ଗୋଟିଏ ବିସଦୃଶ ଘଟନାବଲୋକନରେ ଭୟ ବିଚଳିତ ହୋଇ ନିଜର ସପ୍ତାଶ୍ୱନିଷେବିତ ସ୍ୟନ୍ଦନରୁ ମାଳଜ୍ଛଟ୍ ମାରି (Somersault) ସାରଥି ଅରୁଣଦେବଙ୍କୁ ଉଲ୍ଲଙ୍ଘନପୂର୍ବକ ଏକାବେଳକେ ଏକ ଲମ୍ଫରେ ଅସ୍ତାଚଳ ଶିଖରରେ ପଡ଼ି ସାନୁଦେଶକୁ ଗଡ଼ିଗଲେ । ଶୁଣାଯାଏ ଉକ୍ତ ଭୈରବପତନରୁ ଗୌରବରବିଙ୍କ ଉତ୍ଥାନଶକ୍ତି ରହିତ ହୋଇଯିବାରୁ ସେ ଆଉ ଉଦୟାଚଳକୁ ମଣ୍ଡନ କରି ନ ଥିଲେ । ତେଣୁ ଦେଶରେ ହାହାକାର ପଡ଼ିଯିବାରୁ ଉତ୍କଳର ଶୌର୍ଯ୍ୟ, ବୀର୍ଯ୍ୟ ସବୁ ତତ୍କାଳୀନ ମୂର୍ଚ୍ଛିତ ଅଶ୍ରୁଜଳର ବନ୍ୟାରେ ଅଠରନଳାର ଅଷ୍ଟାଦଶ ପ୍ରଣାଳୀ ଦେଇ ହଠାତ୍ ବଙ୍ଗୋପସାଗରର ଅତଳ ଗର୍ଭରେ ଲୀନ ହୋଇଗଲା । ସୁତରାଂ ମହାମନୀଷୀମାନେ ଶ୍ରୀମନ୍ ମହାପ୍ରଭୁଙ୍କ ପ୍ରେମଧର୍ମକୁହିଁ ଉତ୍କଳର ଅଶ୍ରୁପତନର ଏକମାତ୍ର କାରଣ ବୋଲି ଅବଧାରଣ କଲେ । ସ୍ୱର୍ଗକୁ ନିଶୁଣୀ ନାହିଁ, ବଡ଼ଲୋକକୁ ଜବାବ ନାହିଁ । ସୁତରାଂ ଏବମ୍ବିଧ ଗବେଷଣା ଚୂଡ଼ାମଣିଟି ଜନସମାଜରେ ସହଜରେ ବରଣୀୟ, ଆଦରଣୀୟ ତଥା ଆଚରଣୀୟ ହୋଇଗଲା । କେହି ଥରେ ହେଲେ ତାହାର ସମୀଚୀନତା ବିଚାର କରିବାପାଇଁ ସୂଚ୍ୟଗ୍ରପରିମିତ ସ୍ଥାନ ପାଇ ନ ଥିଲେ । ସର୍ବବାଦସମ୍ମତ ସିଦ୍ଧାନ୍ତ ସବୁକୁ ଅଗ୍ରାହ୍ୟ କରାଗଲା । କେହି ଭାବିଲେ ନାହିଁ, ପ୍ରଥମତଃ କୌଣସି ଧର୍ମପ୍ରଚାର ଦ୍ୱାରା ଦେଶବିଦେଶର କ୍ଷତି ହୁଏ କି ନା—ଦ୍ୱିତୀୟତଃ ଧର୍ମପ୍ରାଣ ମହାତ୍ମାଜୀଙ୍କ ଆଚରଣ ତଥା ଉପଦେଶରୁ ଏପରି ଭାବନା ଶୋଭନୀୟ କି ନା ? ବିଶେଷତଃ ତାଙ୍କର ଅତିଅନ୍ତରଙ୍ଗ ଅନ୍ତେବାସୀମାନଙ୍କ ପକ୍ଷରେ

ଭୂତାପୂର୍ବତଃ ମହାପ୍ରଭୁଙ୍କ ଆଗମନପୂର୍ବରୁ ଉତ୍କଳରେ ବୈଷ୍ଣବଧର୍ମର ପ୍ରାଦୁର୍ଭାବ ଲକ୍ଷିତ ହୋଇଥିଲା କି ନା, ଚତୁର୍ଥତଃ ମହାପ୍ରଭୁ ପ୍ରେମଧର୍ମ ପ୍ରଚାର ନିମନ୍ତେ କି କି ପନ୍ଥା ଅବଲମ୍ବନ କରି ଉତ୍କଳକୁ ଆସିଥିଲେ, ଏହା କେହି ହେଲେ ଥରେ ଘୁଣାକ୍ଷରରେ ଭାବି ନ ଥିଲେ ।

ମହାପ୍ରଭୁଙ୍କର ଅଭ୍ୟୁଦୟର ବହୁପୂର୍ବରୁ ଶ୍ରୀ ଶ୍ରୀଧରସ୍ୱାମୀପାଦ ବୈଷ୍ଣବ ଜଗତରେ ଶ୍ରୀମଦ୍‌ଭାଗବତରେ ଅସଂଖ୍ୟ ଟୀକାକାରଙ୍କ ମୁକୁଟମଣି-ରୂପେ ପୂଜା ପାଉଥିଲେ ଏବଂ ଶ୍ରୀ ଜୟଦେବ ଗୋସ୍ୱାମୀ ମଧ୍ୟ ବହୁପୂର୍ବରୁ ତାଙ୍କର 'ଗୀତଗୋବିନ୍ଦ' ରଚନା କରି ଶ୍ରୀ ବଡ଼ଠାକୁରଙ୍କୁ ଶୁଣାଉଥିଲେ ଏବଂ ଅତିବଡ଼ି ଜଗନ୍ନାଥ ଦାସ ତାଙ୍କ ଆଗମନର ବହୁପୂର୍ବରୁ ତାଙ୍କର ଭାଗବତର ନବାକ୍ଷରୀ ଅନୁବାଦ ପ୍ରଚାର କରି ବୈଷ୍ଣବଜଗତରେ ସୁନାମ ଅର୍ଜନ କରିଥିଲେ । ପୁଣି ମହାପ୍ରଭୁଙ୍କ ସଙ୍ଗରେ ସାକ୍ଷାତ କରିବା ପୂର୍ବରୁ ଶ୍ରୀ ରାୟ ରାମାନନ୍ଦ ନିଜେ ପ୍ରେମଧର୍ମ ଯାଜନ କରି ବୈଷ୍ଣବୋଚିତ ସର୍ବୋଚ୍ଚ ପଦବୀ ଲାଭ କରିଥିଲେ । ଏମନ୍ତ କି ତାଙ୍କର ଭୌତିକ ଦେହ ଚିନ୍ମୟତ୍ୱ ପ୍ରାପ୍ତ ହୋଇଥିବାରୁ ସେ ସ୍ତ୍ରୀପୁରୁଷ ଭେଦଜ୍ଞାନ-ବିବର୍ଜିତ ପରମହଂସ ଅବସ୍ଥାରେ ପ୍ରତିଷ୍ଠିତ ଥାଇ ଦେବଦାସୀମାନଙ୍କ ଅଙ୍ଗସେବା କରି ନିର୍ବିକାର ହୃଦୟରେ ସେମାନଙ୍କୁ ନୃତ୍ୟକଳା ଶିଖାଉ-ଥିଲେ । ଏସବୁ ସର୍ବବାଦସମ୍ମତ ଐତିହାସିକ ତଥ୍ୟାବଳୀ । ଏଥିରୁ ଏହା ସ୍ପଷ୍ଟ ଦେଖାଯାଏ ଯେ ମହାପ୍ରଭୁ ଶାକ୍ତ-ଅନାଚାର-ବହୁଳ ଗୌଡ଼ମଣ୍ଡଳର ବାତାବରଣକୁ ତାଙ୍କ ପ୍ରେମଧର୍ମଯାଜନର ଅନୁକୂଳ ମନେ ନ କରି ବୈଷ୍ଣବ ପ୍ରଧାନ ଉତ୍କଳକ୍ଷେତ୍ରରେ ପ୍ରେମଧର୍ମାନୁଶୀଳନକୁ ସମୀଚୀନ ମନେ କରିଥିଲେ । ବସ୍ତୁତଃ ମହାପ୍ରଭୁଙ୍କ ପ୍ରକଟ ହେବାର ବହୁପୂର୍ବରୁ ସମଗ୍ର ଭାରତ ମଧ୍ୟରେ ଉତ୍କଳର ସ୍ଥାନ ବୈଷ୍ଣବ ଜଗତରେ ଭାରି ଉଚ୍ଚ ଥିଲା । ଶ୍ରୀଧର ସ୍ୱାମୀଙ୍କ ପ୍ରଶସ୍ତିରେ ବାକ୍ୟ ଅଛି—

(ଶିବ) ଅହଂ ବେଦ୍ମି ଶୁକୋ ବେତ୍ତି ବ୍ୟାସୋ ବେତ୍ତି ନ ବେତ୍ତି ବା
ଶ୍ରୀଧରଃ ସକଳଂ ବେତ୍ତି ଶ୍ରୀ ନୃସିଂହପ୍ରସାଦତଃ ।

ଶ୍ରୀଧର ସ୍ୱାମୀଙ୍କ ଏକମାତ୍ର ଶ୍ରୀଭାଗବତର ସମଜଦାର ରସିକ ଓ ଭକ୍ତ ଟୀକାକାର । ପୁଣି ରାୟ ରାମାନନ୍ଦଙ୍କ ମୁଖରୁହିଁ ମହାପ୍ରଭୁ ବୈଷ୍ଣବଧର୍ମର ଶେଷ କଥା ଶୁଣି ଆପ୍ୟାୟିତ ହୋଇଥିଲେ । ରାୟ ରାମାନନ୍ଦ ବକ୍ତା ଓ ଶ୍ରୀମାନ୍ ମହାପ୍ରଭୁ କେବଳ ଶ୍ରୋତା ମାତ୍ର ଥିଲେ । ତାଙ୍କର ମୁଖନିଃସୃତ ସିଦ୍ଧାନ୍ତହିଁ ଗୌଡ଼ୀୟ ବୈଷ୍ଣବମାନଙ୍କର ସର୍ବଶ୍ରେଷ୍ଠ ଆଦର୍ଶରୂପେ ଗୃହୀତ ହୋଇଅଛି । ତେଣୁ ମହାପ୍ରଭୁ ନୂତନ କଅଣ ପ୍ରଚାର କଲେ ?

ଆହୁରି ପ୍ରେମଧର୍ମଯାଜନ କରି ଚିନ୍ମୟ ଦେହପ୍ରାପ୍ତିହିଁ କେବଳ ଗୋପୀଭାବଲବ୍ଧଚିତ୍ତ ରାୟ ରାମାନନ୍ଦଙ୍କ ପକ୍ଷରେ ସମ୍ଭବ ହୋଇଥିବାର ଶୁଣାଯାଏ । ତାହା ମଧ୍ୟ ମହାପ୍ରଭୁଙ୍କ ଆଗମନର ବହୁପୂର୍ବରୁ ତାଙ୍କର ସମ୍ପାଦିତ ହୋଇ ସାରିଥିଲା । ପୁଣି ମହାରାଜା ପ୍ରତାପରୁଦ୍ର ମଧ୍ୟ ବହୁ ପୂର୍ବରୁ ବୈଷ୍ଣବଧର୍ମରେ ଦୀକ୍ଷିତ ହୋଇ ଭାଗବତର ଗୋପୀଗୀତା ପ୍ରଭୃତି କଣ୍ଠସ୍ଥ କରି ସାରିଥିଲେ । ଶ୍ରୀଜଗନ୍ନାଥ ଦାସଙ୍କ ଅତିବଡ଼ ଉପାଧିରୁ ପ୍ରକାଶ—ସେ ମଧ୍ୟ ପ୍ରେମଧର୍ମରେ ଅଗ୍ରସର ହୋଇ ଖୁବ୍ ଉଚ୍ଚକୋଟୀ ସାଧନର ଅଧିକାରୀ ଥିଲେ । ଏପରି ସ୍ଥଳରେ ମହାପ୍ରଭୁଙ୍କ ପ୍ରେମଧର୍ମକୁ ଉତ୍କଳର ଅଧଃପତନର ଦାୟୀ କରିବା ମହାକବିସୁଲଭ କଳ୍ପନାବିଳାସ ହୋଇ ପାରେ; କିନ୍ତୁ ବିଶୁଦ୍ଧ ଐତିହାସିକ ସତ୍ୟ ନୁହେଁ ।

ପୁଣି ଧର୍ମପ୍ରାଣ ମହାପ୍ରାଜୀଙ୍କ ଶିଷ୍ୟମାନେ କିପରି ଧର୍ମକୁ ଜାତି-ବିଶେଷର ପତନର କାରଣ ବୋଲି ନିର୍ଦ୍ଦେଶ କରୁଛନ୍ତି ? ସେ ପରା ରାଜନୀତିକୁ ଧର୍ମର ଅଙ୍ଗୀଭୂତ ମନେ କରି ରାଜନୀତିକୁ ସତ୍ୟାଗ୍ରହ ଉପରେ ଓ ଧର୍ମବିଶ୍ୱାସ ଉପରେ ପ୍ରତିଷ୍ଠିତ କରିବାର ଚେଷ୍ଟା କରୁଥିଲେ । ତାଙ୍କର ଏହି ଉପଦେଶର ଏହି ଅତି ସାର ଅଂଶଟି ବାଦ ଦେଇ ତାଙ୍କର ଅସାର ଅଂଶ ଗ୍ରହଣ କରିବା ଯେପରି ଯୁଗଧର୍ମ ହେଲାଣି, କାବ୍ୟ ଜଗତରେ ସେହିପରି କବିଚୂଡ଼ାମଣି ରବୀନ୍ଦ୍ରନାଥଙ୍କର ଅନୁକରଣକାରୀ-ମାନେ ତାଙ୍କର ନବଶୈଳୀର ସାର ଅଂଶ ଉପଧା ବର୍ଜନ କରି ସେହିପରି ତାଙ୍କର ଅସାର ଅଂଶ ଗ୍ରହଣରେ ମାତି ଉଠିଲେଣି ।

ସାରାଂଶ ବର୍ଜନ କରି ଅସାରାଂଶ ଗ୍ରହଣ କରିବାଟା ଗୋଟାଏ କୁସ୍ଥିତସମ୍ୟ ବ୍ୟାଧିରୂପରେ ଜାତିର ଅସ୍ଥିମଜ୍ଜାଗତ ହେବାରୁ ବସିଲାଣି। ଜୀବନର ଦୈନନ୍ଦିନ ଯୋଜନାର ପ୍ରତ୍ୟେକ ସ୍ତରରେ ଏହାର ପ୍ରଭାବ ପ୍ରକଟ ହୋଇ ପଡ଼ୁଅଛି। ପୁରୁଣାକାଳିଆ ଜାତିଭେଦ ପ୍ରଥାଟା କେବଳ ଏହି ଜାତୀୟ ମନୋଭାବକୁ ଆଶ୍ରୟ କରି ଗୋଟିଏ ସଦନୁଷ୍ଠାନରୁ ଆସି ଗୋଟାଏ ବିପାକ୍ତ ବିସ୍ଫୋଟକସମ ଜାତିର ମେରୁଦଣ୍ଡକୁ ଖଣ୍ଡବିଖଣ୍ଡ କରି ଦେବାକୁ ବସିଲା। ଗୁଣକର୍ମବିଭାଗ ଉପରେ ପ୍ରତିଷ୍ଠିତ ବର୍ଣ୍ଣାଶ୍ରମବିଧି ଗୋଟାଏ ମଙ୍ଗଳମୟ ଅନୁଷ୍ଠାନ ଥିଲା। ସାରସାରର ସ୍ୱାଭାବିକ ତାରତମ୍ୟ ଲୋପ ହେବାରୁ ତାହା ବିଷାକ୍ତ ବିଶୃଙ୍ଖଳା ପରି ବିଭୀଷିକାପ୍ରଦ ହୋଇ ଉଠିଲା। ବ୍ରହ୍ମଜ୍ଞାନବିବର୍ଜିତ ବେଦୋଜ୍ଝିତା—ବୃତ୍ତିବିସ୍ମୃତ—ବର୍ଣ୍ଣଶ୍ରେଷ୍ଠ ଦ୍ୱିଜାତି କେବଳ ଉପବୀତଧାରଣକୁହିଁ ସ୍ୱପ୍ରାଧାନ୍ୟର ବୀଜମନ୍ତ୍ର ମନେ କରି ସିଂହାସନଚ୍ୟୁତ ହେଲା। ସେହିପରି କେବଳ ତିଳକ ଛାପା ଧାରଣହିଁ ମର୍କଟବୈରାଗ୍ୟାକ୍ରାନ୍ତ ଧର୍ମଧ୍ୱଜୀ ବୈଷ୍ଣବଂମନ୍ୟ କପଟାଶ୍ରମୀମାନଙ୍କର ଧର୍ମଭୀରୁ ଜନତାକୁ ଠକି ଖାଇବାର ଏକମାତ୍ର ପ୍ରଶସ୍ତ ପନ୍ଥା ହୋଇ ପଡ଼ିଲା। ସେହିପରି ପୁଣି ଗୁଣ-ମାହାତ୍ମ୍ୟର ପରିଚାୟକ-ରୂପ ରାଜଦତ୍ତ ଉପାଧିଗୁଡ଼ିକ ସମୟ ସମୟରେ କେବଳ ନିର୍ଗୁଣ ବ୍ରହ୍ମମାନଙ୍କର ସ୍ୱାଭାବିକ ନିରୁପାଧିକ ସତ୍ତାର ବାହ୍ୟାବରଣ ରୂପରେ ବରଣୀୟ ହୋଇ ରହିଛି। ଏସବୁ ସଦନୁଷ୍ଠାନଗୁଡ଼ିକ କାଳକ୍ରମେ ଅତି ଅନ୍ତଃସାରଶୂନ୍ୟ ହୋଇପଡ଼ିବାରୁ ସେଗୁଡ଼ିକର ବିଷାକ୍ତ ପ୍ରଭାବରୁ ଜାତିର ମେରୁଦଣ୍ଡକୁ ମୁକ୍ତ କରି ସତେଜ କରିବାର ଶୁଭଙ୍କରୀ ଚେଷ୍ଟା ହୋଇଅଛି। କିନ୍ତୁ ଧର୍ମପ୍ରାଣ ମହାତ୍ମାଜୀଙ୍କ ଧର୍ମଭୀରୁତାକୁ ବର୍ଜନ କରି ତାଙ୍କର ଅନ୍ତେବାସୀମାନେ ଧର୍ମବିରୁଦ୍ଧରେ ଯେଉଁ ଅଭିଯାନ ଚଳାଉଛନ୍ତି, ସେଥିରେ ମହାତ୍ମାଙ୍କ ମାହାତ୍ମ୍ୟ ଖଣ୍ଡନ ହେଉ ନାହିଁ କି? ଧର୍ମପ୍ରାଣତା କଣ ମହାତ୍ମାଙ୍କ ଅବଦାନର ଗୋଟିଏ ସାର ଅଂଶ ନୁହେଁ? ତାହାକୁ ପରିହାରପୂର୍ବକ ଓ ସତ୍ୟାଗ୍ରହକୁ ଗୌଣ କରି ଏବଂ ସ୍ୱାର୍ଥତ୍ୟାଗର ସ୍ମୃତିକୁ ଅଭିନୟସ୍ୱରୂପ କେବଳ ଖଣ୍ଡେ ଖଦର ଓ ଗାନ୍ଧିଟୋପି ମୁଣ୍ଡରେ

ଲଗାଇ ବିଶ୍ୱର ନମସ୍ୟତ୍ୱବରେ ଜନତାର ଭକ୍ତିଭାଜନ ପାତ୍ର ହେବା ଖୁବ୍ ଶୋଭନୀୟ କି ? ଉପବୀତ ଯେପରି ବ୍ରାହ୍ମଣର ବ୍ରାହ୍ମଣତ୍ୱର ପରିଚାୟକ ନୁହେ, ଗୈରିକ ଆଲଖାଲ୍ଲା ଯେପରି ସର୍ବତ୍ର ଚୂଡ଼ାମଣିତ୍ୱର କଣ୍ଠୀଯୁକ୍ତ ନୁହେ, ସେହିପରି ଖଦଡ଼ ମଧ୍ୟ ମହାତ୍ମାଜୀଙ୍କ ମାହାତ୍ମ୍ୟର ପରିମାପକ ନୁହେ—କି ତାଙ୍କର ପଟ୍ଟଶିଷ୍ୟମାନଙ୍କର ସ୍ୱାର୍ଥତ୍ୟାଗ ବା ବିଚକ୍ଷଣତାର ସୂଚକ ନୁହେ । ସେଦିନ ଜଣେ କୃତବିଦ୍ୟ ସନ୍ତାନ ଭୂତାବିଷ୍ଟ ସଭ୍ୟତାର ଭୂତକେଳି ସନ୍ଦର୍ଶନ ଲାଳସାରେ ମଦାଳସା-ନନ୍ଦେବିତ କଲିକାତାସ୍ଥଳୀରୂପୀ ପାନ୍ଥାବାସରେ ବାସ କରୁଥିବା ବେଳେ ସଂପ୍ରାପ୍ତଯୌବନା ରମ୍ଭାଉର୍ବଶୀମାନଙ୍କର ବସନ୍ତବିଜୟୀ ଉଦ୍ୟାନଶୋଭୀ ସ୍ୱଳ୍ପାବୃତ ରୂପଲାବଣ୍ୟଛଟା ଦେଖି ଯେପରି ସ୍ୱଚ୍ଛନ୍ଦ ବିହାରର ଅଭିବର୍ଦ୍ଧ ଯେ ଆମ୍ଭମାନଙ୍କର ଏ ଦେଶର ଦୁର୍ଦ୍ଦଶାର ଅନ୍ୟତମ କାରଣ ତାହା ସ୍ଥିର କଲେ ; କିନ୍ତୁ ସେ ଦେଶରେ ଯେ ସାଧାରଣ ପୁସ୍ତକାଗାରରେ ତାଲା ପଡ଼େ ନାହିଁ କି ଖବର କାଗଜ ବିକ୍ରେତାକୁ ଖବର କାଗଜ ଗଦାଠାରେ ଉପସ୍ଥିତ ରହିବାକୁ ପଡ଼େ ନାହିଁ; ଅଥଚ କୌଣସି ଚୋରି ବା ଜୁଆଚୋରିର ଆଶଙ୍କା ନ ଥାଏ; ଜାତିର ଏ ସାର ଅଂଶଟି ତାଙ୍କ ଆଖିରେ ପଡ଼ିଲା ନାହିଁ । ସେ ଦେଶରେ ପୁଣି ଏ ଦୁର୍ମୂଲ୍ୟର ଦିନରେ ମଧ୍ୟ ରେଲଯାତ୍ରୀମାନେ ପ୍ରକୋଷ୍ଠସ୍ଥ ସିଗାରେଟ୍ ବାକ୍ସ କେହି ହେଲେ ଆତ୍ମସାତ୍ କରନ୍ତି ନାହିଁ । ଏପରି ଜାତୀୟତାବୋଧହିଁ ସେତାଙ୍ଗ-ଚରିତ୍ରର ବିଶିଷ୍ଟ ସାର ଅଂଶ । ସେଥିରେ ଆଖି ନ ପଡ଼ି, ପଡ଼ିଲା ଯାଇ ସେମାନଙ୍କର ବୀଭତ୍ସ ଭୂତକେଳିରେ—ସେମାନଙ୍କର ଜାତୀୟ ଦୁର୍ବଳତା ଉପରେ—ସେମାନଙ୍କ ଅନୁକରଣୀୟ ସୃଷ୍ଟି ଉପରେ ।

ରାଜନୀତିକ୍ଷେତ୍ରରେ ହେଉ ବା ସାହିତ୍ୟକ୍ଷେତ୍ରରେ ହେଉ କିମ୍ବା ଧର୍ମ କ୍ଷେତ୍ରରେ ହେଉ ଯାହାଙ୍କୁ ଗୁରୁରୂପେ ବରଣ କରି ଯାହାଙ୍କ ପଦାଙ୍କ ଅନୁସରଣ କରି ଜୀବନଯାତ୍ରାପଥରେ ଅଗ୍ରସର ହେବାକୁ ସ୍ୱତଃପ୍ରବୃତ୍ତ ହୋଇ କୃତସଙ୍କଳ୍ପ ହେଲୁ, ତାଙ୍କ ସଦ୍‌ଗୁଣାବଳୀକୁ କଣ୍ଠ ଦେଲେ ସାଧ୍ୟାନୁସାରେ ଗ୍ରହଣ କରିବାର ଇଚ୍ଛା ନ ଥିଲେ, ବୃଥାରେ ସେପରି

ଗୁରୁ ବରଣ କରିବା ବସ୍ତୁତଃ ବିଡ଼ମ୍ବନା ମାତ୍ର । ମହାତ୍ମାଜୀଙ୍କ ମାହାତ୍ମ୍ୟର ସାରାଂଶ ଗ୍ରହଣ କରିବାକୁ ଗଲେ ପ୍ରବଳ ସ୍ୱାର୍ଥତ୍ୟାଗ ଲୋଡ଼ା, ପ୍ରଗାଢ଼ ନିଷ୍ଠା ଲୋଡ଼ା, ପ୍ରେମପ୍ରବଣ ହୃଦୟର ଔଦାର୍ଯ୍ୟ ଲୋଡ଼ା ଓ ଧର୍ମରେ ଅଚଳା ଭକ୍ତି ଓ ଈଶ୍ୱରବିଶ୍ୱାସ କାମ୍ୟ । ତେଣୁ ସୁବିଧାବାଦୀମାନେ ସେହି ସାରାଂଶଗୁଡ଼ିକୁ ବାଦ ଦେଇ ଅସାରାଂଶ ଗ୍ରହଣ କରନ୍ତି ମାତ୍ର । ସେହିପରି ରବୀନ୍ଦ୍ର ପ୍ରତିଭାର କୁହୁକରେ ପଡ଼ି ତାଙ୍କର ମୋହାନ୍ଧ ସ୍ତାବକମାନେ ତାଙ୍କର ବିଶାଳ ପ୍ରତିଭାର ମହତ୍ତ୍ୱ ସମ୍ୟକ୍ ଉପଲବ୍ଧି କରି ନ ପାରି ତାଙ୍କର ଅନୁକରଣରେ ମାତ୍ର ନିଜ ଧୃଷ୍ଟତା ତଥା ଅବିମୃଷ୍ୟ-କାରିତାର ପରିଚୟ ଦିଅନ୍ତି । କିନ୍ତୁ ଯେଉଁମାନଙ୍କର ବୋଧଶକ୍ତି ଅକ୍ଷୁଣ୍ଣ ରହିଛି, ସେମାନେ ରବୀନ୍ଦ୍ରନାଥଙ୍କ ଭାବ୍ୟହିମାଚଳର ଅଭ୍ରଂକଷ ଗୌରୀଶୃଙ୍ଗାବଲୋକନରେ ଭୀତ ଓ ବିସ୍ମିତ ହୋଇ ସମ୍ଭ୍ରମରେ, "ନମୋ ଦେବାତ୍ମନେ ଶ୍ରୀ ଗୌରୀଗୁରବେ" କହି କହି ତାଙ୍କ ପାଖ ଘଷିବାକୁ ସାହସ କରନ୍ତି ନାହିଁ—ଅନୁକରଣ ତ ଦୂରର କଥା । କିନ୍ତୁ ଯେଉଁ-ମାନେ ତାଙ୍କ ପ୍ରତିଭାର ବିଶାଳତ୍ୱ ଉପଲବ୍ଧି କରିବାର କ୍ଷମତା ଲଭ କରି ନାହାନ୍ତି ସେହିମାନେ ହିଁ ତାଙ୍କୁ ଅନୁକରଣ କରିବାକୁ ଯାଇ ଦିଅଁ ଗଢ଼ୁ ଗଢ଼ୁ ବାନର ଗଢ଼ି ବସିଲେ ଏବଂ କେହି କେହି ମଧ୍ୟ ତାକୁ ଭକ୍ତପ୍ରବର ପବନ-ନନ୍ଦନଙ୍କର ଶାଳଗ୍ରାମ ବିଗ୍ରହର ଗୋଟିଏ ଅଭିନବ ସଂସ୍କରଣ ମନେ କରି ପୂଜା କରିବାକୁ ଲାଗିଲେ । ତେଣୁ ଏହି ଅନୁକରଣକାରୀଙ୍କର ନିବିଡ଼ ବଂଶୁକବନରେ ଗୋଟିଏ ଯୋଡ଼ିଏ "ସ୍ୱନିତୁ-ପୁଷ୍ପିତ ଚୁରଅନା" ବୃକ୍ଷର ମଧ୍ୟ ସନ୍ଧାନ ମିଳିଥିଲା । କିନ୍ତୁ ଆମ ଦେଶର ଦୁର୍ଭାଗ୍ୟରୁ ସେପରି ବାରମାସୀ ଗଛରେ ଆଉ ଫୁଲ ଧରୁ ନାହିଁ, କେବଳ କାଞ୍ଚନମୟ ସୁପକ୍ୱ ଫଳସ୍ତବକରେ ନମ୍ର ହୋଇ ଅଶୋକବଲ୍ଲରୀର ଅଭିନୟ କରୁଛି ମାତ୍ର । ପତ୍ର ଗହଳରେ ସେଗୁଡ଼ିକ ଆମ୍ବ କି ଅମୃତା ଦୂରରୁ ବାରିବା କଠିନ । ମୋଟ ଉପରେ ରବୀନ୍ଦ୍ରକାବ୍ୟକଳାର ଅନୁକରଣ କୃଷି ଯେ ଖୁବ ଭଲ ହୋଇ ନାହିଁ, ଏହାହିଁ ମୋର ବକ୍ତବ୍ୟ ଏବଂ ନ ହେବାର କାରଣ ମଧ୍ୟ ଅଛି ।

ରବୀନ୍ଦ୍ରନାଥଙ୍କ କଳାନୈପୁଣ୍ୟ ଅନୁକରଣୀୟ ନୁହେ । କିନ୍ତୁ ଯେଉଁ ସ୍ରାବକମାନେ ଏହା ହୃଦୟଙ୍ଗମ କରି ପାରି ନ ଥିଲେ ସେମାନଙ୍କର ସେହି ଦୁଃସାହସିକତା ହେଲା ଓ ସେମାନେ ରବୀନ୍ଦ୍ରଙ୍କ ମୋହରେ ପଡ଼ି ଭାରି ଏକଦେଶଦର୍ଶୀ ହୋଇ ପଡ଼ିଲେ ; ସୁତରାଂ ଉପେନ୍ଦ୍ରଭଞ୍ଜ, ରାଧାନାଥ ପ୍ରଭୃତି ଉତ୍କଳୀୟ କବି ଓ ସେମାନଙ୍କ ଗୋଷ୍ଠୀର ଅନ୍ୟାନ୍ୟ କବିଙ୍କୁ ଘୃଣାର ଚକ୍ଷୁରେ ଦେଖିବାକୁ ଲାଗିଲେ । ଏପରି କି ଅନ୍ୟାନ୍ୟ ନବୀନପନ୍ଥୀମାନଙ୍କ କାବ୍ୟରେ ରାଧାନାଥଙ୍କର ସାମାନ୍ୟ ଛାୟା ପଡ଼ିଥିବାର କଳ୍ପନା କରି ସେମାନଙ୍କ ପ୍ରତି ନାସିକା କୁଞ୍ଚନ କରିବାକୁ ଲାଗିଲେ । ରବୀନ୍ଦ୍ରଙ୍କ ଅସ୍ତିକ-ବାଦର ମୁଖପତ୍ର ସ୍ୱରୂପ ତାଙ୍କର ଗୀତାଞ୍ଜଳି ପାଠ କରି ରବୀନ୍ଦ୍ରପନ୍ଥୀମାନେ ଗୀତାଞ୍ଜଳିର ପାରମାର୍ଥିକ ମୂଲ୍ୟ ନିର୍ଦ୍ଧାରଣରେ ଅକ୍ଷମ ହେଲାରୁ ଅ-ରବୀନ୍ଦ୍ର-ପନ୍ଥୀମାନଙ୍କ କାବ୍ୟରେ ଧର୍ମର 'ଧ' ଦେଖିଲାକ୍ଷଣି ସେମାନଙ୍କୁ ମାରଧର କରିବାକୁ ଉଦ୍ୟତ ହେଲେ । ଅବଶ୍ୟ ଗତ ନବକଳେବରୋତ୍ସବ ସମୟରେ ସନ୍ନ୍ୟାସୀମାନଙ୍କୁ ନବକଳେବର ଧାରଣ କରାଇବାର ଯେଉଁ ବିପୁଳ ସମ୍ବର୍ଦ୍ଧନାର ବ୍ୟବସ୍ଥା ହେଲା, ତାହାର ଅଭୂତପୂର୍ବ ପ୍ରାବଲ୍ୟ ସେଥିରେ ନ ଥିଲା । କିନ୍ତୁ ପୁଣି ଦେଖାଗଲା ସେମାନେ ରବୀନ୍ଦ୍ରଙ୍କ ମଠରୁ ତନ୍ତ୍ରାକମ୍ବଳ ବୋଝ ତେଜ ଉଠାଇବାର ବ୍ୟବସ୍ଥା କଲେଣି । ସେମାନେ ପରି ନବୀନପନ୍ଥୀ ଓ ପ୍ରଗତିପନ୍ଥୀ ଓ ସଦାସର୍ବଦା ଗତିଶୀଳ—ସ୍ଥିରବାସ-ସ୍ଥାନସ୍ଥାନ କେଳାଙ୍କ ପରି ଏକ ସ୍ଥାନରେ ସ୍ଥିର ହୋଇ ରହିବାର ଲୋକ ନୁହନ୍ତି । ସେମାନେ ସଦାସର୍ବଦା 'ନବ ନବ ବିଭ୍ରମଶାଳୀ' ଓ ନିତ୍ୟ-ନବ-ନବାୟମାନର ସନ୍ଧାନରେ ଧାବମାନ ହୁଅନ୍ତି—ମରୁମରୀଚିକା ହେଉ ପଛକେ ଦୂରରୁ ଅଭିନବ ଜଳଦବୃତ ଦେଖି ସେମାନେ ଉଦ୍ଭ୍ରାନ୍ତ ନୟନରେ ଧାଇଁବାକୁ ପସନ୍ଦ କରନ୍ତି । ରବୀନ୍ଦ୍ର କଳାକୁଞ୍ଜର ପୁଞ୍ଜୀଭୂତ ପୁଷ୍ପାପସାରରେ ଆଉ ମନ ଲାଗୁ ନାହିଁ ; ତେଣୁ ସେମାନେ ରବୀନ୍ଦ୍ର ଶୈଳୀର ସର୍ବଶ୍ରେଷ୍ଠ ଅବଦାନରୂପ ଉପଧାସୌନ୍ଦର୍ଯ୍ୟକୁ ଗୋଟିଏ ଦୋଷ ବୋଲି ଧାରଣା କରି ସାରିଲେଣି । ଉପଧାଳଙ୍କାର କବୀନ୍ଦ୍ରଙ୍କ ସାହିତ୍ୟ-ମଣିମଞ୍ଜୁଷାରେ କିପରି ଯତ୍ନସହକାରେ କବି ନିଜେ ସଜାଡ଼ି ରଖିଛନ୍ତି, ତାହା ପ୍ରଣିଧାନଯୋଗ୍ୟ । କେବଳ ପ୍ରାନ୍ତ ବର୍ଣ୍ଣର ପୂର୍ବସ୍ୱରସାମ୍ୟ ହାରାହିଁ

ଉପଧା ରକ୍ଷା ହୁଏ । ତାହାର ଗୌରବ ବଢ଼ାଇବାଲାଗି ପୁଷ୍ପର ଦୁଇ କମ୍ପା ଭଳି ସ୍ୱରରେ ସାମ୍ୟବିଧାନ କରିଥିବାର ଦୃଷ୍ଟାନ୍ତ ତାଙ୍କ କାବ୍ୟରେହିଁ ଅନେକ ମିଳେ । ଏପରି କି ଅମିତ୍ରାକ୍ଷରଯୁକ୍ତ କବିତାରେ ମଧ୍ୟ ସେ ଉପଧା—ରକ୍ଷାପୂର୍ବକ ଅନ୍ତ୍ୟବର୍ଣ୍ଣର ସାମ୍ୟବିଧାନ କରି ଅତି ଉପାଦେୟ କଳା-ନୈପୁଣ୍ୟ ଦେଖାଇଅଛନ୍ତି । ତେଣୁ ସେ ଯେ ଉପଧାକୁ ମଣ୍ଡନକଳାର ଗୋଟିଏ ସର୍ବଶ୍ରେଷ୍ଠ ଉପକରଣରୂପେ ବରଣ କରିଥିଲେ ଏହା ତାଙ୍କ ଲେଖାରୁ ସ୍ପଷ୍ଟ ଜଣାଯାଏ । ତାଙ୍କ କବିତାର ଛନ୍ଦ ଯେ ଶ୍ରୁତିମଧୁର ଓ ପୂର୍ଣ୍ଣ ସଙ୍ଗୀତମୟ ହୋଇଅଛି ତାହା ଉପଧାବାହୁଲ୍ୟରୁହିଁ ସମ୍ପାଦିତ ହୋଇଅଛି । ଅଥଚ ଏହି ରବୀନ୍ଦ୍ର ଯୁଗରେ ଏପରି ଅ-ରବୀନ୍ଦ୍ରୋଚିତ ଉପଧାବର୍ଜନ କପରି କଳ୍ପନା କରିଗଲା, ତାହାହିଁ ଭାବିବାର କଥା । ଯେତେବେଳେ ରବୀନ୍ଦ୍ରଶୈଳୀ ପ୍ରତି ଏପରି ଔଦାସୀନ୍ୟ ବା ତାଚ୍ଛିଲ୍ୟ, ସେତେବେଳେ ରାଧାନାଥ, ମଧୁସୂଦନ ଓ ସେମାନଙ୍କ ଗୋଷ୍ଠୀର ନନ୍ଦକିଶୋର, ଚନ୍ଦ୍ରାମଣି, ଗଙ୍ଗାଧର, ପଦ୍ମଚରଣ, ଚନ୍ଦ୍ରମଣି ପ୍ରଭୃତି ଶିଶୁଶାବକମାନଙ୍କ କଥା ପଗୁରେ କିଏ ?

ଉପେନ୍ଦ୍ର ଭଞ୍ଜଙ୍କ ଯୁଗରେ ଉପଧାର ପ୍ରଚୁର ନ ଥିଲା । ତେଣୁ ଯେଉଁମାନେ ଉପଧାରକ୍ଷା କରିବାକୁ ଯାଇ ଭାବପ୍ରକାଶରେ ଅକ୍ଷମ ହୋଇ ପଡ଼ନ୍ତି ସେମାନେ ଉପଧା ବର୍ଜନ କରି ଭାବପ୍ରକାଶ କରନ୍ତୁ । କିନ୍ତୁ ଯେଉଁମାନେ ଉପଧା ତଥା ଭାବପ୍ରକାଶ ଉଭୟର ପକ୍ଷପାତୀ ସେମାନଙ୍କ କର୍ଣ୍ଣରୁ ଉପଧାବର୍ଜନର ମହିମାକୀର୍ତ୍ତନ ସୁଖକର ହେବ କି ? ଲାଙ୍ଗୁଳ-ବିହୀନ ଶୃଗାଳର ଲାଙ୍ଗୁଳର ଅପକାରିତା ବିଷୟରେ ବକ୍ତୃତା ଦେଲା ପରି ହାସ୍ୟାସ୍ପଦ ହେବ ନାହିଁ କି ?

ଯେଉଁମାନେ ଉପଧାବର୍ଜନର ଉପାଦେୟତା ହୃଦୟଙ୍ଗମ କରି ରବୀନ୍ଦ୍ରଶୈଳୀ ପ୍ରତି ମଧ୍ୟ ବୀତସ୍ପୃହ ହେଲେଣି, ସେମାନେ ଯେ ଉପେନ୍ଦ୍ର-ଯୁଗର ଉପଧାବର୍ଜନକୁ ସ୍ନେହଚକ୍ଷୁରେ ଦେଖୁଛନ୍ତି ଏପରି ଭାବିବା ଭୁଲ । କାରଣ ଏମାନେ ନବବିଧାନର ପ୍ରଗତିପନ୍ଥୀ—ଅର୍ଥାତ୍ ପରଗତି-ପନ୍ଥୀ;ସୁତରାଂ ଏମାନେ କେବେହେଁ ପରଗତିପନ୍ଥୀ ହୋଇ ପାରନ୍ତି କି ?

ପରପଦାଙ୍କାନୁସରଣ କରି ଏମାନେ ସଦା ସର୍ବଦା ଅଗ୍ରଗତିପନ୍ଥୀ । ଏମାନେ ବୋଧ ହୁଏ ଗଦ୍ୟ ଓ ପଦ୍ୟର ସର୍ବବିଧ ନିଗଡ଼ମାନ ଗଡ଼ ଗଡ଼ କରି ଛଡ଼ାଇ ଗଦ୍ୟପଦ୍ୟର ଶୃଙ୍ଖଳବିବର୍ଜିତ କୌଣସି ଗୋଟିଏ ମେରୁଦଣ୍ଡହୀନ ଆଦର୍ଶର ଅନୁସନ୍ଧାନ କରୁଛନ୍ତି । ମାର୍କିନ ଦେଶର ଗଦ୍ୟ-ପଦ୍ୟ (Prose-Poetry) ନାମକ ଅଭିନବ ସୃଷ୍ଟି ଏମାନଙ୍କର ଦୃଷ୍ଟିପଥରେ ପଡ଼ିଥିବାର ଜଣାଯାଏ । ଏଠାରେ ଗଦ୍ୟପଦ୍ୟ ଦ୍ୱନ୍ଦ ସମାସ ନୁହେଁ । ଗଦ୍ୟହିଁ ପଦ୍ୟ ବା ପଦ୍ୟହିଁ ଗଦ୍ୟ ଏବମ୍ଭୂତ ଗଦ୍ୟପଦ୍ୟ ଗୋଟିଏ କିମ୍ଭୂତ କିମାକାର ସୃଷ୍ଟି । ଏହା ଏକାଧାରରେ ଗଦ୍ୟ ଓ ପଦ୍ୟ । ଶଶବିଷାଣ, ଓ ସୁନାର ପଥରବାଟିଆ କଳ୍ପନା କରାଯାଇ ପାରେ; କିନ୍ତୁ ଗଦ୍ୟ-ପଦ୍ୟ କଳ୍ପନାତୀତ ହେଲେହେଁ ପ୍ରତ୍ୟକ୍ଷୀଭୂତ ହେଲାଣି । ସେମାନେ କହିବେ ଏହା ଏକାଧାରରେ ଗଦ୍ୟ ଓ ପଦ୍ୟ; ତୁମେ କହି ପାର, ଏହା ଗଦ୍ୟ ନୁହେଁ କି ପଦ୍ୟ ନୁହେଁ । ଅଥଚ ଉଭୟଙ୍କ ଗୁଣେ ଅଭ୍ରାନ୍ତ ସତ୍ୟ । ଗୀତା କହେ, "ଜାୟତେ ବର୍ଣ୍ଣସଙ୍କରଃ" । ଏହି ବର୍ଣ୍ଣସଙ୍କରଙ୍କ ବର୍ଣ୍ଣବିନ୍ୟାସ-ଶୃଙ୍ଖଳିତଜନିତ କର୍ଣ୍ଣରସାୟନ ସଙ୍ଗୀତମାଧୁରୀର ଆକର୍ଷଣରେ ମୁଗ୍ଧ ହୋଇ ସେମାନେ ପ୍ରାଚୀନ ପ୍ରତି ଉଦାସୀନ ହେଉଅଛନ୍ତି । ବାଗ୍‌ଦେବୀଙ୍କ କଣ୍ଠରେ ନୂତନ ପୁଷ୍ପମାଳା ଦେଖି କିଏ ଖୁସି ନ ହେବ ? ତେବେ ନୂତନର ମୋହରେ ପଡ଼ି ପ୍ରାଚୀନ ପ୍ରତି ବୀତଶ୍ରଦ୍ଧ ହେବା ଉଚ୍ଛୃଙ୍ଖଳତାର ପରିଚାୟକ । ଏହି ଉଚ୍ଛୃଙ୍ଖଳତାର ପ୍ରସାର ଦିନକୁ ଦିନ ବଢ଼ି ଚାଲିଛି । କୌଣସି ଉଦ୍ୟାନରେ ଚନ୍ଦନବୃକ୍ଷ ଅନ୍ୱେଷଣ କରିବାକୁ ଯାଇ, ତଦ୍‌ବ୍ୟ ନିମ୍ବାଦି ଅନ୍ୟାନ୍ୟ ବୃକ୍ଷଗୁଡ଼ିକୁ ନିର୍ମୂଳ କରିଦେବା ଶୋଭନୀୟ ନୁହେଁ ; ଚନ୍ଦନ-ବନରେ ନିମ୍ବବୃକ୍ଷ ଅନ୍ୱେଷଣ କରିବାକୁ ଯାଇ ଚନ୍ଦନବୃକ୍ଷାବଳୀକୁ କାଟି ନିଃଶେଷ କରିଦେବା ମନୋବୃତ୍ତିକୁ କଅଣ କୁହାଯିବ ?

ପୂର୍ବରେ କୁହାଯାଇଅଛି ଉପଧା ଭାବ ପ୍ରକାଶର ଅନ୍ତରାୟ ନ ହୋଇ ବରଂ ଭାବର ସୌନ୍ଦର୍ଯ୍ୟବୃଦ୍ଧିରେ ସହାୟତା କରିଥାଏ । ସାମଞ୍ଜସ୍ୟ ଦୃଷ୍ଟିରେ ଉପଧାର ସ୍ଥାନ ସୌନ୍ଦର୍ଯ୍ୟ-ସୃଷ୍ଟି ଓ ପୁଷ୍ଟିରେ ଖୁବ ମହିମାମଣ୍ଡିତ । ଆମ୍ଭେମାନେ ବ୍ୟାବହାରିକ ଜୀବନରେ ସାମଞ୍ଜସ୍ୟରକ୍ଷା ପାଇଁ ସର୍ବଦା

ସଚେଷ୍ଟ । ତୋରଣର ଦୁଇଟି ସ୍ତମ୍ଭନିର୍ମାଣବେଳେ ସେ ଦୁଇଟିକୁ ଯଥାସମ୍ଭବ ସମଆୟତନ ଓ ସମଶୋଭାବନ କରିବାରେ କେହି ତ୍ରୁଟି କରେ କି ? ସ୍ଥାପତ୍ୟ ଓ ଭାସ୍କରବିଦ୍ୟାରେ ସାମଞ୍ଜସ୍ୟରକ୍ଷା ପାଇଁ ନାନା ମାପ ସୂତ୍ରର ପ୍ରୟୋଜନ ହୁଏ । କବିଙ୍କୁ ସେହି ସାମଞ୍ଜସ୍ୟ-ସଂସାଧନବ୍ରତୀ ହୋଇ ସୂତ୍ରଧାରଣ କରି ସୂତ୍ରଧର ହୋଇଏ । ପୂଜାପାର୍ବଣରେ ଶୁଭ-ଶକୁନ ସ୍ୱରୂପ ଦୁଇଟି ରମ୍ଭାତରୁ ରୋପଣରେ ମଧ୍ୟ ଯଥାସମ୍ଭବ ସାମଞ୍ଜସ୍ୟ-ରକ୍ଷାର ଚେଷ୍ଟା ହୋଇଥାଏ । ପ୍ରଗତିପନ୍ଥୀ କୌଣସି ଆଧୁନିକା ଏକ ହସ୍ତରେ ଏକରକମ ଚୂଡ଼ୀ ଓ ଅପର ହସ୍ତଟିରେ ବିଚିତ୍ରତାନିବନ୍ଧନ ଅନ୍ୟ ରକମର ଚୂଡ଼ୀ ପରିଧାନ କରିଥିବାର କେହି କେବେହେଲେ ଦେଖିଛନ୍ତି କି ? କୌଣସି ଅତିନବୀନପନ୍ଥୀ (Ultra-modern) କେହି ଦୁଇ ପଦରେ ଦୁଇ ରକମର ଚର୍ମାବରଣ ଧାରଣ କରନ୍ତି କି ? ତେବେ ନବୀନା କାବ୍ୟକଳାବତୀଙ୍କ ଦୁଇ ପାଦରେ ଉପଧାଳଙ୍କାରର ଚିର-ଚରିତ ସାମଞ୍ଜସ୍ୟ ବିଧାନରେ ଆପତ୍ତି କାହିଁକି ?

ଉପଧା-ବର୍ଜନ ବିଷୟରେ ତତ୍ପର ହୋଇ ଉପଧା ଯେ କେବଳ ଅସାଧ୍ୟ କି ଦୁଃସାଧ୍ୟ ନୁହେ ଓ ଭାବପ୍ରକାଶର ଅନ୍ତରାୟ ମଧ୍ୟ ନୁହେ ଏବଂ ଭାବର ସୌନ୍ଦର୍ଯ୍ୟବର୍ଦ୍ଧନ ଓ ସାମଞ୍ଜସ୍ୟବିଧାନରେ ମଧ୍ୟ ପ୍ରଭୂତ ସହାୟତା କରେ ଏ ଆଡ଼କୁ ଦୃଷ୍ଟି ନ ଦେଇ କେବଳ କାକତାଳୀୟ ନ୍ୟାୟର ଅବଲମ୍ବନରେ ପ୍ରମାଣ କରିବାର ଚେଷ୍ଟା କରାଯାଇଛି ଯେ ଉପଧା ବର୍ଜନ ନ କଲେ ଭାବପ୍ରକାଶରେ ତ୍ରୁଟି ଅନିବାର୍ଯ୍ୟ । ଯଦି ଜଣେ କବି ସହସ୍ରପଂକ୍ତି ଲେଖି ସାମାନ୍ୟ କେତେକ ସ୍ଥଳରେ ସାମାନ୍ୟ କିଛି ତ୍ରୁଟି କରିଥାଆନ୍ତି, ଏହା ଯେ ଉପଧାସମ୍ଭୂତ, ଏପରି ସ୍ଥିର କରିବା ସୁକଠିନ । ପୁଣି ଅନ୍ୟ ଜଣେ ଯଦି ଉପଧା ବର୍ଜନ କରି ସର୍ବାଙ୍ଗ ସମଭାବରେ ଭାବ ପ୍ରକାଶ କରି ନ ପାରେ, ତେବେ ତ୍ରୁଟି ଯେ ଉପଧାଜନିତ ନୁହେଁ ଏହା ସ୍ୱତଃସିଦ୍ଧ ହେବାରୁ ସେ ତ୍ରୁଟିର ଅନ୍ୟ କାରଣ ନିଶ୍ଚୟ ଅଛି । ସୁତରାଂ ସେ ତ୍ରୁଟି କବିର ଅକ୍ଷମତାଜନିତ । ପୁଣି ଉପଧା ରକ୍ଷା କରିବାକୁ ଯାଇ କବିଙ୍କୁ ଯେ ଟିକିଏ ଶ୍ରମ ସ୍ୱୀକାର କରିବାକୁ ପଡ଼େ, ତାହା

କାବ୍ୟସୃଷ୍ଟିର ଗୋଟାଏ ଅପରିହାର୍ଯ୍ୟ ଅଙ୍ଗବିଶେଷ । କାବ୍ୟସୃଷ୍ଟି ସାଧନାପ୍ରସୂତ; ସୁତରାଂ ପ୍ରତିପଦକ୍ଷେପରେ ଶ୍ରମ ଅନିବାର୍ଯ୍ୟ । ତାହା ବୋଲି କଅଣ କଳାବିତ୍ ପରାଙ୍ମୁଖ ହେବ ? ପୂର୍ବରେ କହିଛି, ଛନ୍ଦୋବଦ୍ଧ କବିତାର ସମସ୍ତ ନିୟମ ମାନିବାକୁ ଗଲେ ପ୍ରତି ପଦକ୍ଷେପରେ ସାଧନାର ପ୍ରୟୋଜନ । ସୁବିଧାବାଦୀ ଯଦି ଏ ଶ୍ରମଟିକୁ ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହନ୍ତି, ତେବେ ତାଙ୍କର ସ୍ଥାନ ଅନ୍ୟତ୍ର ; ବାଣୀଆରାଧନାପୀଠରେ ନୁହେ—ବାଗ୍‌ଦେବୀଙ୍କ ସାଧନାମନ୍ଦିରରେ ନୁହେ । କଳାନୈପୁଣ୍ୟ ପ୍ରଭୁତ ସାଧନାର ଧନ ; ପ୍ରଗାଢ଼ ଅଭିନିବେଶର ମୂଲ୍ୟ । କଳାର ଆଦର୍ଶ-ବାଦରେ ସୁବିଧାବାଦୀର ସୂଚ୍ୟଗ୍ରପରିମିତ ସ୍ଥାନ ନାହିଁ । କାକତାଳୀୟ ନ୍ୟାୟ ଆମ୍ଭମାନଙ୍କୁ ବିପଥରେ ପରିଚାଳିତ କରି ଶେଷରେ ମୋହଗର୍ତ୍ତରେ ନିକ୍ଷେପ କରେ, ମଦାନ୍ଧକାରରେ ନିବଦ୍ଧ କରି ରଖେ । କାକତାଳୀୟ ନ୍ୟାୟର ପକ୍ଷପାତିତା ଉଚ୍ଛୃଙ୍ଖଳ ସମାଜର ଗୋଟିଏ ଲକ୍ଷଣ ; କାକତାଳୀୟ ନ୍ୟାୟର ଦୁହାଇ ଦେଇ ସୁବିଧାବାଦୀ କବି ଭାବପ୍ରକାଶରେ ନିଜର ସ୍ୱାଭାବିକ ଅକ୍ଷମତାକୁ ଘୋଡ଼ାଇ ନିଜର ଅକ୍ଷମତାର ଗୁରୁବୋଝଟି ଉପଧାଶିରରେ ଲଦି ଦେବାକୁ ପ୍ରସ୍ତୁତ ହୁଏ । କିନ୍ତୁ ନିରପେକ୍ଷ ସମାଲୋଚକ ତାହାର ସହାନୁଭୂତିର ନିକ୍ତିରେ ଭଲ କରି ଓଜନ କରି ଦେଖେ, ବାସ୍ତବିକ ଦୋଷ କାହାର—ଉପଧାର ନା ଅକ୍ଷମତାର ? ରବୀନ୍ଦ୍ର ଶୈଳୀ-ମୌଳିମଣ୍ଡନ ଉପଧାଳଙ୍କାରର, ନା ଅସ୍ଥିରପାଦ ପ୍ରଭୁପାଦମାନଙ୍କର ପଙ୍ଗୁତାଜନିତ ଅପଟୁତାର ? ଏହା ଧୀରସ୍ଥିରଚିତ୍ତରେ ବିଚାର କରି ଶଂସିତ ରଚନାମାଟି ପାଇଁ ମା'ଙ୍କ ପଦପଙ୍କଜରେ ଆରଜି ଦାଖଲ କଲେ, କଥାଟ ସାଜନ୍ତା ଭଲ । ନତୁବା ଉପାଧ୍ୟ ପରି ଉପଧାର ବର୍ଜନ ବା ସର୍ଜନ ଯେନ ଦୁର୍ଜନୋଚିତ ଏବମ୍ବିଧ ଅମାର୍ଜନୀୟ ତର୍ଜନ ଗର୍ଜନ-ଲୀଳାଟିଏ ସୃଜନ କରି ବସିଲେ, ତାହା ଦେଖି ବାତ୍ସଲ୍ୟମୟୀ ମା ଟିକିଏ ଅପ୍ରସନ୍ନା ହେଲେହିଁ ତାଙ୍କର ପ୍ରସାଦକଣିକା ଲାଭର ଆଶାକୁ ଏକାବେଳକେ ବିସର୍ଜନ ଦେବାକୁ ହେବ ଏବଂ ପରିଶେଷରେ ହୁଏ ତ, ତାଙ୍କ ପରିତ୍ୟାଜ୍ୟ ଦୁଲାଳର ସ୍ୱନ-ରୂପରେ କାବ୍ୟଜଗତରେ ଅକାଳକୁଷ୍ମାଣ୍ଡର ଖ୍ୟାତି ଅର୍ଜନ କରିବାକୁ ପଡ଼ିବ ।

---

# କାବ୍ୟ ବା ସାହିତ୍ୟର ଆଦର୍ଶ

## ୧

କାବ୍ୟର ଆଦର୍ଶ କଅଣ ହୃଦୟଙ୍ଗମ କରିବାକୁ ଗଲେ ଜୀବନର ଆଦର୍ଶ କଅଣ ପ୍ରଥମେ ବୁଝିବା ଦରକାର; କାରଣ ଜୀବନ ଓ କାବ୍ୟ ମଧ୍ୟରେ ସମ୍ପର୍କ ଅତି ନିଗୂଢ଼ । ଲଳିତକଳା, ବିଶେଷତଃ କାବ୍ୟ, ଜୀବନର ଏକମାତ୍ର ପୋଷକ କହିଲେ ବିଶେଷ ଅତିରଞ୍ଜିତ ହେବ କି ? ଲଳିତକଳା ଜୀବନୋତ୍କର୍ଷର ସର୍ବୋତ୍କୃଷ୍ଟ ପନ୍ଥା । କଳାହୀନ ଜୀବନ ନୀରସ ଓ ଅନୁର୍ବର ହୋଇପଡ଼େ । ଏକଥା ପୂର୍ବରୁ ବିଶଦ କରାଯାଇଛି ।

ଜୀବନର ଆଦର୍ଶ ଶାରୀରିକ, ମାନସିକ ଓ ଆଧ୍ୟାତ୍ମିକ ଚରମ ଓ ପରମ ଉତ୍କର୍ଷ । ସଂକ୍ଷେପରେ କହିବାକୁ ଗଲେ ମନୁଷ୍ୟ ହୃଦୟର ବା ଆତ୍ମାର ସର୍ବାଙ୍ଗୀନ ଉନ୍ନତି ବା ପରିଣତି । ଏ ଦିଗରେ କଳାର ସ୍ଥାନ ଉଚ୍ଚ ।

କିନ୍ତୁ ହିତବାଦନୀତି-ପ୍ରଣୋଦିତ ଆଧୁନିକ ସଭ୍ୟତାରେ ମନୁଷ୍ୟର ଆଦର୍ଶ କଅଣ ? ଆଜି ସୁବିଧାବାଦୀ ମନୁଷ୍ୟ ବୁଝେଁ କଅଣ ? ପ୍ରତ୍ୟେକ କାର୍ଯ୍ୟରେ ତାହାର ପ୍ରଶ୍ନ—ଏଥିରୁ ମିଳିବ କଅଣ ? ଏପରି କରିବାରେ ଲାଭ କଅଣ ? ସେହି ଲାଭ ମାପିବାର ଗୋଟିଏ ମାନଦଣ୍ଡ ମଧ୍ୟ ନିଶ୍ଚୟ ଅଛି । ଲାଭ ବା କ୍ଷତି ମାପିବାକୁ ବସି ମନୁଷ୍ୟ ତାହାର ଭୌତିକ ଜୀବନର ବାତାବରଣ ଭୁଲି ପାରେ ନାହିଁ । ଉତ୍ତାନପାଦ ଯେପରି ସୁନୀତିଙ୍କୁ ବର୍ଜନ କରି ସୁରୁଚିଙ୍କୁ ସମାଦରରେ ଗ୍ରହଣ କଲେ, ଆମ୍ଭେମାନେ ମଧ୍ୟ ସେହିପରି ଶ୍ରେୟଃକୁ ଛାଡ଼ି ପ୍ରେୟରେ ମାତି ରହିଛୁଁ ଓ ପୁଣି କାଂସ ପରି ଅର୍ଥ ଓ ପ୍ରାପ୍ତି ଆମ୍ଭମାନଙ୍କର ଜୀବନସଙ୍ଗିନୀ ହୋଇ ରହିଛନ୍ତି । ସବୁବେଳେ ବିଚାର କରିବସୁଁ ଏଥିରୁ କଅଣ ମିଳିବ ଓ ଏଥିରେ ଲାଭ କଅଣ ? ଏମନ୍ତ କି ଯେଉଁମାନେ ଦେଶମାତୃକାପୀଠରେ ଆତ୍ମୋତ୍ସର୍ଗ କରି ମହାତ୍ୟାଗ ମନ୍ତ୍ରରେ ଦୀକ୍ଷିତ ବୋଲି ଜଗତରେ ପରିଗଣିତ, ସେମାନଙ୍କର ହୃଦୟର ଗଭୀରତମ

ପ୍ରତ୍ୟେକଟି ଅଣ୍ଡାଳ ଦେଖିଲେ ଅନେକ ସମୟରେ ମହାସ୍ୱାର୍ଥୀଗଣଙ୍କ ସାଧ୍ୟ ଭାବରେ ରହିଥିବାର ଦେଖାଯାଏ । ଜଣେ ନିଃସ୍ୱାର୍ଥପର ଦେଶପ୍ରେମୀଙ୍କୁ ହଠାତ୍ କାରାବରଣର ନିମନ୍ତ୍ରଣ ଆସିଲାରୁ ତାଙ୍କ ସହଧର୍ମିଣୀ ତାଙ୍କୁ ପଚାରିଲେ—ଏପରି ସ୍ୱାର୍ଥତ୍ୟାଗରେ ମିଳିବ କଅଣ ? ସେ ହୁଏତ କହିଥାନ୍ତେ, "ପ୍ରଚୁର ଫୁଲମାଳ ମିଳିବ"—କିନ୍ତୁ ସେ ଜାଣନ୍ତି ତାଙ୍କର ପ୍ରେମବିପଣୀରେ ସେପରି ଫୁଲମାଳାର ମୂଲ୍ୟ ଅତି କମ ଓ ସେ ଜାଣନ୍ତି ଯେ ତାଙ୍କର ମହାତ୍ୟାଗରୂପ କଳ୍ପତରୁରେ ଯେତେବେଳେ ବଉଳ ଧରିଲାଣି ନିଶ୍ଚୟ କିଛି ନା କିଛି ଫଳ ଦିନେ ହେଲେ ଫଳିବ; କିନ୍ତୁ କି ଫଳ ଫଳିବ, ତାହା ସେ ଠିକ୍ କରି ଜାଣି ନ ଥିବାରୁ ତୁନି ହୋଇ ରହିଲେ । କଳ୍ପତରୁ ତ କେବେହେଲେ ନିଷ୍ଫଳ ହେବାର ଦେଖାଯାଇ ନାହିଁ, ବରଂ ସ୍ଥାନ ମାହାତ୍ମ୍ୟରୁ ସ୍ଥଳବିଶେଷରେ ଲଗ୍ନ ବୃକ୍ଷଲତା ପ୍ରାପ୍ତ ହୋଇ ବାରମାସୀ ଫଳ ଧରେ । ଦେଶସେବା ମହାପ୍ରସାଦସେବା ପରି ପ୍ରାପ୍ତିମାତ୍ରେଣ ଭୋକ୍ତବ୍ୟ ହୋଇଥାଏ ।

ମୋର କହିବାର ଉଦ୍ଦେଶ୍ୟ ଏହି ଯେ ହିତବାଦମାନଙ୍କର ସଂକ୍ରାମକତା ଏପରି ବ୍ୟାପକ ଯେ ମହାତ୍ୟାଗବ୍ରତର ବ୍ୟପଦେଶରେ ମଧ୍ୟ ଫଳାକାଂକ୍ଷା ସାଧ୍ୟ ଭାବରେ ରହିଥାଏ । ମାନ, ସମ୍ଭ୍ରମ, ପ୍ରତିଷ୍ଠା, ନେତୃତ୍ୱ ପର୍ଯ୍ୟନ୍ତ ଗୋପନରେ ସେଥିରେ ଲୁଚି ରହିଥାଏ । କେହି ମହାତ୍ୟାଗବ୍ରତୀ ଦେଶ-ପ୍ରେମରେ ଭୋଳ ହୋଇ ଧନ, ମାନ, ବୟଃ, ବୁଦ୍ଧି ଏମନ୍ତ କି ଆୟୁ ପର୍ଯ୍ୟନ୍ତ ଅକୁଣ୍ଠିତରେ ବ୍ୟୟିତ କରି କୌଣସି ଗୋଟାଏ ସଦନୁଷ୍ଠାନ ଛିଡ଼ା କରିଦିଏ । ଜନତାର ନୟନରେ ତାଙ୍କର ସେହି ସ୍ୱାର୍ଥତ୍ୟାଗଟି ହିମାଳୟର ଅଭ୍ରଂକଷ ଶୈଳଶୃଙ୍ଗକୁ ଉଚ୍ଚତାରେ ଅତିକ୍ରମ କରିଯାଏ । ପରେ ଦେଖାଯାଏ ଯେ ଜନସାଧାରଣର ବ୍ୟୟରେ ଗଠିତ ଅନୁଷ୍ଠାନ ପ୍ରତି ସ୍ୱଦେଶପ୍ରେମିକଙ୍କର ମମତା ଏପରି ବଢ଼ିଯାଏ ଯେ ସେ ସ୍ନେହାନ୍ଧ ହୋଇ ତାକୁ ନିଜସ୍ୱ କରି ନିଅନ୍ତି—ସେ ଯେ ଗୋଟାଏ ସର୍ବସାଧାରଣ ଅନୁଷ୍ଠାନ ତାହା ଏକାବେଳକେ ବିସ୍ମୃତ ହୋଇଯାଆନ୍ତି । ପ୍ରେମ ଯେ ଅନ୍ଧ (Love is blind) ଏହାର ଗୋଟିଏ ପ୍ରମାଣ ବାଢ଼ି ବସନ୍ତି । ସେ ଅନୁଷ୍ଠାନଟିର ପରିଚାଳନାରେ ଦେଶମାତୃକାର ମଙ୍ଗଳ କାମନାକୁ ଗୌଣ କରି, ନିଜର

ଅସ୍ପୃଶ୍ୟତାର ପରିପୋଷଣ ଓ ପରିବେଶନକୁ ସ୍ଥିର ମୁଖ୍ୟ କରି ପକାନ୍ତି । ଏହା ନିଜର ଆତ୍ମୋତ୍କର୍ଷର ତଥା ଜନକଲ୍ୟାଣର ଅନ୍ତରାୟ ହୋଇ ଉଠେ । ଏପରି କପଟ ସ୍ୱାର୍ଥତ୍ୟାଗ ଭିତ୍ତି ଉଦ୍ୟାବଦ ଓ କୃଷ୍ଟିକସ୍ଥ ସଂକ୍ରାମକ ବ୍ୟାଧି ।

କବିଙ୍କ ଜୀବନକୁ ମଧ୍ୟ ଏହି ହିତବାଦନୀତି ଯେ ସଂକ୍ରାମିତ କରି ନାହିଁ, ଏକଥା ଆଜି କହିହେବ ନାହିଁ । କବି କବିତା ଲେଖେ । କାହିଁକି ଲେଖେ ? ଅର୍ଥାତ୍ ସେଥିରୁ ମିଳିବ କଅଣ ? ଏକଥା କବିପ୍ରଣୟିନୀ କବିଙ୍କୁ ଦିନେ ପଚାରିଲେ । କବି କିଛି ଉତ୍ତର ଦେଇ ନ ପାରି ଚିନ୍ତିତ ହେଲେ । ତାଙ୍କର କବିତା ତ ପାଠ୍ୟପୁସ୍ତକରୂପେ ଗୃହୀତ ହେବ ବୋଲି ସେ ଲେଖୁ ନାହାନ୍ତି । ସେଥିରୁ କିଛି ମିଳିବାର ଆଶା ସେ କିପରି ବା ପୋଷଣ କରିବେ ? ଏ ପର୍ଯ୍ୟନ୍ତ ତାଙ୍କ କବିତାରୁ ଧନ, ମାନ, ସମ୍ଭ୍ରମ ମିଳିପାରେ ବୋଲି ସେ ଘୁଣାକ୍ଷରରେ ସୁଦ୍ଧା ଭାବି ପାରି ନାହାନ୍ତି । ସେ ଯଦି କହନ୍ତେ ମୁଁ ଆନନ୍ଦ ପାଏଁ, ସେଥିରେ ତାଙ୍କର ସହଧର୍ମିଣୀଙ୍କର ବା ଲାଭ କଅଣ ? ସେ ତ ଆଜି କବି ନୁହନ୍ତି ଯେ ସେ କବିତାରସମାଧୁରୀ ପାନ କରି ଟିକିଏ ହେଲେ ସଂସାରଜ୍ୱାଳା ଉପଶମ କରନ୍ତେ ।

ଦିନେ କବିବର ଚିନ୍ତାମଣିଙ୍କ ସ୍ମୃତିତର୍ପଣର କଥା ଶୁଣି ଶଂକିତ କବି-ପ୍ରିୟା କବିଙ୍କି କହିଲେ "ସମସ୍ତଙ୍କର ସ୍ମୃତିତର୍ପଣ ହେଉଛି, ତୁମର ତ କିଛି ହେବାର ନାମଗନ୍ଧ ନାହିଁ" ! କବି ଶୁଣି ହସି ହସି କହିଲେ "ଆମ ଦେଶର ସନାତନପ୍ରଥା ବା ଦେଶାଚାର ହେଉଛି ମୃତ୍ୟୁ ପରେ କବିଙ୍କ ପ୍ରତି ପ୍ରଗାଢ଼ ଭକ୍ତି ଓ ସମ୍ମାନ ପ୍ରଦର୍ଶନ କରିବା" କବିପ୍ରେୟସୀ କହି ବସିଲେ, "ନା, ନା, ତୁମେ ଭୁଲ ବୁଝିଛ, ସମସ୍ତେ କହୁଛନ୍ତି ଚିନ୍ତାମଣି ଅମରକବି; ତୁମେ କେଉଁ ଚିନ୍ତାମଣିଙ୍କର କଥା ଭାବୁଛ—ବିଲ୍ୱମଙ୍ଗଳର ଚିନ୍ତାମଣି କଥା ନୁହେଁ ତ ?" "ନା ନା ପ୍ରିୟେ ! କବି ଚିନ୍ତାମଣି ଯଶୋଦେହରେ ଅମର ହୋଇଛନ୍ତି—ନରଦେହରେ ନୁହେଁ ।" ତାହା ହେଲେ ତୁମେ ବା ଏପରି ଲୋଭନୀୟ ସ୍ମୃତିତର୍ପଣର ଲୋଭ ସମ୍ଭାଳି ପାରି ଏପରି ଦୁର୍ବହ ଜୀବନର ଭାର ବହନପୂର୍ବକ ଜୀବନ୍ମୃତ ଅବସ୍ଥାରେ ନରଦେହରେ କିପରି ରହିଛ ? ମୁଁ ଭାବି ପାରୁ ନାହିଁ । ସ୍ମୃତିତର୍ପଣର ଲୋଭ ଥିଲେ

"ମର ଅମରତା ଲଭ ମଣ୍ଡାରେ ।" ହଁ କଥାଟା ଠିକ୍ କହୁଲ ପ୍ରିୟେ । କିନ୍ତୁ ସ୍ୱାର୍ଥତର୍ପଣଠାରୁ ତୁମ ସଙ୍ଗସୁଖରେ ଯେ ମୋର ଲୋଭ ବେଶୀ—" "ମୋର କିନ୍ତୁ ଠିକ୍ ବିପରୀତ । ତୁମ ସଙ୍ଗସୁଖଠାରୁ ତୁମର ସ୍ୱାର୍ଥତର୍ପଣ ପ୍ରତି ମୋର ଲୋଭ ବେଶୀ, ମୁଁ ଅନ୍ୟାନ୍ୟ ସ୍ତ୍ରୀଲୋକଙ୍କ ପରି ଏପରି ଆପଣା ଗରଜୀ ନୁହେଁ । ମୁଁ ତୁମ ସୁଖରେହିଁ ସୁଖୀ—ପୁଣି ଏହି ବିଧବା-ବିବାହ ଯୁଗରେ ମୁଁ ମୋର କଥା ସେତେ ଭାବେ ନାହିଁ । ତୁମେ ଏ ଜୀବନରେ ଏପରି ଲାଞ୍ଛିତ ଓ ନିପୀଡ଼ିତ ହୋଇ ପଡ଼ିଥିବ । ମୋତେ ଏଟା ଭଲ ଲଗେ ନାହିଁ । ବଞ୍ଚି ଥାଇ ଥାଇ ଯଦି ତୁମର ଲୋଭନୀୟ ସ୍ୱାର୍ଥତର୍ପଣ ଦେଖିବାର ପରମ ସୌଭାଗ୍ୟ ମୋର ହୁଏ, ତେବେ ମୁଁ ନିଜ ଜୀବନକୁ ଧନ୍ୟ ମଣିବି ।" ପ୍ରେୟସୀଙ୍କ ଏପରି ହିତୋପଦେଶରେ କବି କେତେଦୂର ଉତ୍ସାହିତ ହେଲେ ତାହା ଜଣା ନାହିଁ ।

କବିପ୍ରେୟସୀଙ୍କ ଉଲ୍ଲିଖିତ ମନୋଭାବରୁ ଏବଂ ସ୍ୱଦେଶପ୍ରେମିକାଙ୍କର ଅର୍ଥ-ପ୍ରାପ୍ତିର ନିଷ୍ଠାପରସେବାରୁ ଆମ ଦେଶର ଜନତାର ହିତବାଦ-ନିଷ୍ଠାର ପରିଚୟ ମିଳି ପାରେ । ଦେଖନ୍ତୁ ବିଶ୍ୱକବି ରବୀନ୍ଦ୍ରନାଥଙ୍କ ନୋବେଲ ପୁରସ୍କାରପ୍ରାପ୍ତି ଅଗରୁ ଲୋକେ ତାଙ୍କର ପ୍ରତିଭାର ମୂଲ୍ୟ କିପରି ଅବଧାରଣ କରିଥିଲେ । ଆଜିକାଲି କେତେଜଣ ବା 'ବାଣୀ' 'କଲ୍ୟାଣୀ'ର କବି ସ୍ୱର୍ଗତ ରଜନୀକାନ୍ତଙ୍କୁ ମନେ ରଖିଛନ୍ତି ? କିନ୍ତୁ ରବୀନ୍ଦ୍ରନାଥଙ୍କ ପୁରସ୍କାରଲାଭର ଅବ୍ୟବହିତ ପୂର୍ବେ ବଙ୍ଗଦେଶର ସାହିତ୍ୟଜଗତରେ ଗୋଟିଏ ଭୀଷଣ ଆନ୍ଦୋଳନ ସୃଷ୍ଟି ହୋଇଥିଲା । ଜାତୀୟ କବିରୂପେ ରବୀନ୍ଦ୍ରନାଥଙ୍କ ମୁଣ୍ଡରେ କି ରଜନୀକାନ୍ତଙ୍କ ମସ୍ତକରେ ଶାଢ଼ୀ ବନ୍ଧାଯିବ—ଏହା ଘୋର ଦଳାଦଳି ଆରମ୍ଭ ହେଲା । ଅବଶ୍ୟ ଆମ ଦେଶର ଇନ୍ଦ୍ରଧନୁ ବିଜୁଳି ଯୁଗର ବୀଭତ୍ସ ଅନ୍ତରିକତା ସେଥିରେ ନ ଥିଲା । ଏମନ୍ତ କି ଆମ୍ଭମାନଙ୍କ ପ୍ରାତଃ-ସ୍ମରଣୀୟ ନେତାଶ୍ରୀ ମଧ୍ୟ "ବଙ୍ଗ ଆମାର, ଜନନୀ ଆମାର, ଏମନ ଦେଶଟି କୋଥାୟ ଖୁଁଜେ ପାବେ ନା ଗୋ ତୁମି" ପ୍ରଭୃତି ବିଶୁଦ୍ଧ ଦେଶପ୍ରୀତି-ନିଷ୍ୟନ୍ଦନୀ ଗୀତିକା ପରିବେଶନକାରୀ ଦ୍ୱିଜେନ୍ଦ୍ରଲାଲଙ୍କୁ ରବୀନ୍ଦ୍ରନାଥଙ୍କଠାରୁ ବହୁ ଉଚ୍ଚରେ ସ୍ଥାନ ଦେଇଥିଲେ । ଠିକ୍ ଏହି ସମୟରେ ନୋବେଲ

ପୁରସ୍କାରର ଘୋଷଣା ହେଲା । ନୋବେଲ ପୁରସ୍କାରର ମୂଲ୍ୟ ଅର୍ଥନୀତଜ୍ଞଙ୍କ ମାପକାଠିରେ ତେର ବେଶୀ ଥିଲା, ତେଣୁ ଦେଶର ଲୋକେ ହିରଣ୍ମୟ ସ୍ୱପ୍ନ ଦେଖିବାକୁ ଲାଗିଲେ । ସୁତରାଂ ରଜନୀକାନ୍ତଙ୍କର ସେହି ତମସାଚ୍ଛନ୍ନ ପରାଜୟ ରଜନୀରେ ତାଙ୍କୁ କେଉଁ ସୁଦୂର ବିସ୍ମୃତିର ତମସାଗାରସ୍ଥ ବଲ୍ମୀକସ୍ତୂପ କନ୍ଦରରେ ଛାଡ଼ି ସେହିମାନେହିଁ ପୁଣି ରବୀନ୍ଦ୍ରନାଥଙ୍କ ପ୍ରତ୍ୟେକ କବିତାରେ, ପ୍ରତ୍ୟେକ ପଂକ୍ତିରେ, ପ୍ରତ୍ୟେକ ଶବ୍ଦବିନ୍ୟାସରେ, ପ୍ରତ୍ୟେକ ବର୍ଣ୍ଣଯୋଜନାରେ, ଏମନ୍ତ କି ପ୍ରତି କମା, ସେମିକୋଲନରେ ମଧ୍ୟ ଅଦ୍ଭୁତ କଳାନୈପୁଣ୍ୟ ଦେଖି ଦେଖି ଭୟ ଓ ବିସ୍ମୟରେ ଜଳା ପଡ଼ିଗଲେ ।

ଏମାନେ ଯେ କେବଳ ପୂର୍ବରୁ ରବୀନ୍ଦ୍ର ପ୍ରତିଭାର ମୌଳିକତା ସମ୍ୟକ୍ ହୃଦୟଙ୍ଗମ କରି ପାରି ନ ଥିଲେ—ଏହା ଭାବି ଭାବି ଲଜ୍ଜା ବା ବିଷାଦରେ ମଗ୍ନ ହେଲେ ନାହିଁ । କେହି କେହି ସେହି ହିରଣ୍ମୟ ସ୍ୱପ୍ନର ଭଉଁମାରେ ରବୀନ୍ଦ୍ର-ନାଥଙ୍କ ରୋମସ୍ୟୂପଲ୍ଲବରେ ମଧ୍ୟ ନନ୍ଦନବନର ମନ୍ଦାରମାଳାର ସୌରଭ ପ୍ରସରୁଥିବାର ଦେଖି ଭାରି ବିସ୍ମିତ ହେଲେ । ରବୀନ୍ଦ୍ରଙ୍କ ଏହି ବିଶ୍ୱ-ବ୍ୟାପିନୀ ପ୍ରତିଷ୍ଠାକୁ ବିଶ୍ଳେଷଣ କଲେ ସେଥିରେ ଶତକଡ଼ା ପ୍ରତିଭାଂଶ କେତେ ଓ ପୁରସ୍କାରାଂଶ କେତେ ସ୍ଥିର କରିବା କଠିନ । କିନ୍ତୁ ଏହା ଧ୍ରୁବ ସତ୍ୟ ଯେ ନୋବେଲ ପୁରସ୍କାର ପାଇ ନ ଥିଲେ ମଧ୍ୟ ରଜନୀକାନ୍ତ ଖୁବ ସହଜରେ ରବୀନ୍ଦ୍ରନାଥଙ୍କ ଅଭିଭବ କରି ପାରନ୍ତେ ନାହିଁ ସତ୍ୟ, କିନ୍ତୁ ଗତ ବର୍ଷର ଯୁଦ୍ଧ ପରି ଏହା ଯେ ହଜାକେତେ ଶୁଭୁଥାନ୍ତା ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । ଦୂରରୁ ବିଜୟାନନ୍ଦନଙ୍କ ପଞ୍ଚାଦାତର ଘୋର ଗର୍ଜ୍ଜନ ଶୁଣି, ରଜନୀକାନ୍ତଙ୍କ ପକ୍ଷର ଚତୁରଙ୍ଗ ସେନା ସମସ୍ତ ଭୁଜଙ୍ଗମ ପରି ରଣାଙ୍ଗନରୁ ଛତଭଙ୍ଗ ଦେଇ ରବୀନ୍ଦ୍ରନାଥଙ୍କ ସ୍ତାବକ ସଙ୍ଗରେ ନାନାରଙ୍ଗରେ ଯୋଗ ଦେବାକୁ ଲାଗିଲେ ଏବଂ କାଳୀୟପ୍ରଣୟିନୀମାନେ ଯେପରି କାଳୀୟଦମନ କୃଷ୍ଣଙ୍କ ସ୍ତୁତିଗାନ କରିଥିଲେ, ସେହିପରି ଏମାନେ ମଧ୍ୟ ରବୀନ୍ଦ୍ରନାଥଙ୍କ ସ୍ତବଗାନରେ ରଙ୍ଗଭୂମିକୁ ବାଧ୍ୟନତ କରିଦେଲେ ।

ଏ ତ ଗଲ୍ପ ପରଚର୍ଚ୍ଚା । ଘରଚର୍ଚ୍ଚାର ମଧ୍ୟ ଫଳ ଏକ । ଆମ ଦେଶର ଅଧୁନାତନ ଶିକ୍ଷିତ ସମାଜର ସାହିତ୍ୟିକ ରସାସ୍ୱାଦନ ଉପରୁ, ତାହା ଦେଖାଯାଉ । ପ୍ରକାଶ ଥାଉ କି, ହିତବାଦନୀତିପ୍ରଣୋଦିତ ଅସ୍ତି ଓ ପ୍ରାପ୍ତିର ପୂଜାହିଁ ଜୀବନର ବୀଜମନ୍ତ୍ର । ଏଥିରୁ କଥଣ ମିଳିବ—ଏହି ସମସ୍ୟାର ସମାଧାନହିଁ ଜୀବନର ଏକମାତ୍ର ବ୍ରତ । ଯଦି କୌଣସି ବାଗ୍‌ଦେବୀ ସେବକର ଭାଗ୍ୟରେ ପଞ୍ଚମ ବୃହସ୍ପତିଙ୍କ ଦଶା ପଡ଼ିଲା, ତେବେ ତାହାର କୃଚ୍ଛ୍ର ସାଧନାର୍ଥ ପାଠ୍ୟପୁସ୍ତକ ନିର୍ବାଚନମଣ୍ଡଳୀର ଶୁଭଦୃଷ୍ଟି ଆକର୍ଷଣ କଲା ଏବଂ ତାହା ପରେ ଅଷ୍ଟଭୂଜୀ କୃପାବୃଷ୍ଟିରୁ ଅସରଏ ହେଲା । ଶୁଭଗ୍ରହ ଭୁଞ୍ଜୀ ହେଲେ, ଯେପରି ହେବାର କଥା—କବିଙ୍କର ହିରଣ୍ମୟ ସ୍ୱପ୍ନ ସଫଳ ହେଲା । ମା ଲକ୍ଷ୍ମୀ ଟିକିଏ ବୈମାତୃକ ଭାବ ପରିହାର-ପୂର୍ବକ ମୁହଁ ଟେକି ଚାହିଁଲେ । ଧନ, ମାନ, ଆୟୁ ବୃଦ୍ଧି ସଙ୍ଗେ ସଙ୍ଗେ କବିଙ୍କର ସ୍ୱାସ୍ଥ୍ୟ ମଧ୍ୟ ସେହି ସ୍ୱର୍ଣ୍ଣଘଟିତ ମକରଧ୍ୱଜ ସେବନରେ ଭରି ସତେଜ ହୋଇ ଉଠିଲା ଓ କିଞ୍ଚିତ୍ ବାୟୁବୃଦ୍ଧିର ଲକ୍ଷଣ ମଧ୍ୟ ପରିଦୃଶ୍ୟ-ମାନ ହେବାକୁ ଲାଗିଲା । ଶ୍ରେଷ୍ଠୀଙ୍କ ଶ୍ରୀମତୀ ବୋଲି ଡାକିଲେ ସେ ଯେପରି ଗୋଡ଼ ବୁଲାଇ ବୁଲାଇ ପକାଏ ବୋଲି କିମ୍ବଦନ୍ତୀ ଅଛି, ପଙ୍ଗୁକବି ମଧ୍ୟ ସେହିପରି ପତଙ୍ଗ ପରି ଗତିଶୀଳ ହୋଇ ବିହଙ୍ଗ ପରି ସ୍ୱତଃସ୍ଫୂର୍ତ୍ତି ସଙ୍ଗୀତର ପ୍ରେରଣାରେ ଉନ୍ମତ୍ତ ହୋଇ ଉଠିଲେ । ବାସ୍ତବିକ ପ୍ରତିଷ୍ଠା ପରି ଉତ୍ତେଜକ ଦ୍ରବ୍ୟ ଭେଷଜରାଜ୍ୟରେ ନାହିଁ ଓ ନ ଥିବ । ଭିଧି ଉତ୍କଟ ମନମତାଣିଆ ନିଶା କରୁ ।

ଏହାର ନମୁନା ଖୋଜିବାକୁ ବହୁଦୂରକୁ ଯିବାକୁ ହେବ ନାହିଁ କିମ୍ବା କଳ୍ପନାର ଅଶ୍ୱଗତି ବ୍ୟୋମଯାନର ଲୋଡ଼ା ମଧ୍ୟ ହେବ ନାହିଁ । ସମ୍ମୁଖରେ ଦେଖୁଥାଇଁ, କେହି କେହି ମହାକବିଂମନ୍ୟ କବିଚୂଡ଼ାମଣି "ମହାଯାତ୍ରାର" କବି ରାଧାନାଥଙ୍କ ମହାଯାତ୍ରାକାଳୀନ ତାଙ୍କ କମ୍ବଳ ଓ କନ୍ଥା ଗୋଟାଇ ଦରକାରବେଳେ ସେଗୁଡ଼ିକ ଅଙ୍ଗରେ ଧାରଣ-ପୂର୍ବକ ଗୁରୁଜୀଙ୍କ ସମ୍ମାନ ଦାବୀ କରି ବିଶ୍ୱବିଦ୍ୟାଳୟର ଚରଣକୂଳ କୃପାଦ୍ୱାରରେ ଉପସ୍ଥିତ ହେଉଛନ୍ତି, କେହି ବା ହରିପନ୍ତ ମାନଗୋବିନ୍ଦଙ୍କ

ଅର୍ଦ୍ଧଭଗ୍ନାବସ୍ଥାର ମୂର୍ତ୍ତିଟି ଦେଖି ତାହାର ନିର୍ମମ ସ୍ଥପତି ନାମରେ ମାନହାନି ଅଭିଯୋଗର ସୁଯୋଗ ଲୋଡ଼ିବାକୁ ଅଗ୍ନିଶର୍ମା ହୋଇ ବାହାର ପଡ଼ନ୍ତେ ହଠାତ୍ ବ୍ୟାସସରୋବରର ନିବିଡ଼ ପଙ୍କରେ ପଦହସ୍ତ ବିଜଡ଼ିତ ହୋଇଗଲାରୁ ତଳେ ପଡ଼ି ଗଡ଼ାଗଡ଼ି ଦେଇଁ ଦେଇଁ କୋବାଳି ଛାଡ଼ୁଛନ୍ତି; କେହି ବା ବିଶ୍ୱବନ୍ଦନୀୟ ତାଜମହଲର ଅନିନ୍ଦ୍ୟସୁନ୍ଦର ଚୂଡ଼ାରେ ନିଜର ଶତଛିଦ୍ରବିଶିଷ୍ଟ ବୈଜୟନ୍ତୀଟି ଉଡ଼ାଇ ଭାରତପୁରନ୍ଧ୍ରୀଙ୍କର ନଗ୍ନସୌନ୍ଦର୍ଯ୍ୟଦର୍ଶନରେ ଉପେନ୍ଦ୍ରଭଞ୍ଜୀ ଲାଳସା ଘୋଷଣପୂର୍ବକ ମା ସାରଳାଙ୍କ ପାଇଁ କିଂଶୁକବନ୍ଧୁଳ ବୈଜୟନ୍ତୀଟି ଗୁନ୍ଥି ବସିଛନ୍ତି; କେହି ବା ଦୂରରୁ କର୍କଶ-କଙ୍କରମୟ ବାଲୁକା ଉପରେ ଅର୍କ-ଦେବାଳୟର ଦୁର୍ଦ୍ଦଶାବଲୋକନ କରି କୀର୍ତ୍ତି-କଳାପ ସଙ୍କୁଳ ପ୍ରାଚୀନ ଉତ୍କଳର 'ପୁରାଣମହିମା ଭାବି ଭାବି ପ୍ରଳାପ-ବିଳାପ-ସଲାପାଦିରେ ମୃତକଳ୍ପ ହୋଇ କାବ୍ୟକଳ୍ପଲତାର ଶ୍ରୀଚରଣତଳେ ଆଶ୍ରୟ କରିବାକୁ କୃତସଙ୍କଳ୍ପ ହେଲେ । କେହି ପୁଣି ୰ ଗୌରୀଶଙ୍କରଙ୍କ ପ୍ରତିଷ୍ଠିତ ଉତ୍କଳ ଦୀପିକାର ଶ୍ରୀବୃଦ୍ଧିରେ ପ୍ରୀତି ବଳାଇ ଏବଂ ନିଜ ପ୍ରତିଭାର ମହୋଜ୍ଜ୍ୱଳ ପ୍ରଭାବଳରେ ତାହାର ଆକ୍ଷରିକ ଉତ୍କଳାନୁବାଦ କରି ଗବେଷଣାରୂପ ଗୌରୀଶୃଙ୍ଗର ଉତ୍ତୁଙ୍ଗ ଶିଖରକୁ ସମଣ୍ଡିତ କଲେ, କେହି ବା ବେଦବାହ୍ୟ-ବିଗର୍ହିତ ନିର୍ବେଦ ଅବସ୍ଥାରେ ଅସ୍ଥିକଙ୍କାଳସାର ପାଶ୍ଚାତ୍ୟ ଦର୍ଶନମାନଙ୍କର କେବଳ ପଞ୍ଜରାସ୍ଥିର ଚର୍ବିତଚର୍ବଣ କରୁ କରୁ ନିଜର ମୁଖାଭ୍ୟନ୍ତରନିଃସୃତ ଶୋଣିତବିନ୍ଦୁକୁ ମକରନ୍ଦ ଭ୍ରମରେ ପାନ କରି ଓ ପ୍ରେମାନନ୍ଦରେ ଭୋଳ ହୋଇ ସତ୍ ସାହିତ୍ୟା-ନନ୍ଦ-ବିତରଣ-ମାନସରେ ମୁଖବ୍ୟାଦାନ କଲେ, କେହି ପୁଣି ଦେଶପ୍ରାଣ ରାଣା ପ୍ରତାପଙ୍କ ଆଟୋପଟି ସାଦରେ ବରଣପୂର୍ବକ ଏବଂ ସୁଭୁଣ୍ଡାକାଳିଆ ଗୃହଣପଟରେ ଘଟାଟୋପଟି ସଙ୍ଗେ ସଙ୍ଗେ ଅଙ୍ଗରେ ଧାରଣ କରି ଉପଧା ବର୍ଜନ ନ କରି ମଧ୍ୟ ଉପାଧି ଅର୍ଜନର ପନ୍ଥା ସୁଗମ କରି ଦେବାକୁ କନ୍ଧାକରି ବେଶରେ ପାଗ ବାନ୍ଧି ବସିଲେ; କେହି କେହି ପ୍ରେମପ୍ରାବଲ୍ୟରୁ ଭାବଶାବଲ୍ୟଦଶା ଲାଭ କରନ୍ତେ ସ୍ୱକୀୟ

କଳାବତୀଙ୍କ ଅଙ୍ଗବୈକଲ୍ୟ ପ୍ରତି ଟିକେ ହେଲେ ଭ୍ରୂକ୍ଷେପ ନ କରି କାବ୍ୟବୈକଲ୍ୟ-କଣିକା-ବିତରଣରୂପ ହୃଦୟଦୌର୍ବଲ୍ୟକୁ ଅବଲମ୍ବନ-ପୂର୍ବକ ନିରବଲମ୍ବ-କଳ୍ପନାବିଳାସରେ ମତ୍ତ ହେଲେ; କେହି କେହି ବା ଧର୍ମଗୁରୁ ଭାରତର ପଞ୍ଚକୋଷାଶ୍ରିତ ପ୍ରେତାତ୍ମା ପ୍ରତି ଚିରପୋଷିତ ଆକ୍ରୋଶବଶତଃ ତାହାର ଅନ୍ଧତମସାଚ୍ଛନ୍ନ କୁସଂସ୍କାରଗ୍ରନ୍ଥି ମଧ୍ୟରେ ଚିର-ତୁଷାରାବୃତ ଦେଶବିଶେଷର ତୁଷାରଧବଳ ସଭ୍ୟ ଶୁଭ୍ରାଙ୍ଗଙ୍କର ମନୋହୋଜ୍ଜ୍ୱଳ ରଶ୍ମି ସମ୍ପାତଦ୍ୱାରା ନିରୀଶ୍ୱରବାଦର ପ୍ରାଣପ୍ରତିଷ୍ଠା ନିମନ୍ତେ ବଳିଷ୍ଠ ଚେଷ୍ଟା ଓ ଯଥେଷ୍ଟ ସ୍ୱାର୍ଥତ୍ୟାଗପୂର୍ବକ ତାହାର ନିଷ୍ଠାପର ସେବକରୂପେ ଗରିଷ୍ଠ ପ୍ରତିଷ୍ଠା ଅର୍ଜନ କଲେଣି; ପୁଣି ଧର୍ମଗୁରୁ ଭାରତର ସନାତନ ଧର୍ମର ସମାଧି ଉପରେ ବିଶ୍ୱଶାନ୍ତି ପ୍ରତିଷ୍ଠାର ଐକାନ୍ତିକ ଚିନ୍ତାହିଁ କାହାରି କାହାରି ହୃଦୟର ଅନ୍ତରତମ ପ୍ରଦେଶକୁ ନିବିଡ଼ଭାବରେ ଆଲୋଡ଼ିତ କରିବାରୁ ସେମାନେ ନିତାନ୍ତ ଉପାୟାନ୍ତର ନ ଦେଖି ଏମନ୍ତ କି ଧର୍ମପ୍ରାଣ ମହାତ୍ମାଙ୍କ ଚୂଡ଼ାନ୍ତ ମାହାତ୍ମ୍ୟକୁ ପ୍ରକାରାନ୍ତରେ ଖଣ୍ଡନ କରି ମଧ୍ୟ ଅକ୍ଲାନ୍ତ ପରିଶ୍ରମ ସ୍ୱୀକାରପୂର୍ବକ ଅବିଶ୍ରାନ୍ତ ଲେଖନୀ ତଥା ରସନା ସଞ୍ଚାଳନଦ୍ୱାରା ଝମକାନ୍ତ ପଦାବଳୀରେ ଉଦ୍‌ଭ୍ରାନ୍ତ ପ୍ରେମର ରସାବଳୀ ପରିବେଷଣପୂର୍ବକ ଅଭ୍ରାନ୍ତ ପଥପ୍ରଦର୍ଶକ ଦେଶ-ନିୟନ୍ତାର ବୈଜୟନ୍ତୀ ଉଡ଼ାଇବାକୁ ବସିଲେଣି । କେହି କେହି ଅମ୍ଭମାନଙ୍କର "ଚିରହାହାମୟ" ଜୀବନର ଅଶାନ୍ତିବ୍ୟଞ୍ଜକ ବାତାବରଣକୁ ଶିବନିର୍ମାଲ୍ୟ ତୁଲ୍ୟ ପରିହାର କରି ଶାନ୍ତିନିକେତନର ନିଭୃତ ନିକୁଞ୍ଜବିହାର ସୁଖଶାନ୍ତିରେ ଭୁଲି ଉତ୍କଳର କବିକୁଳଗୁରୁସ୍ଥାନୀୟ ଉପେନ୍ଦ୍ର ଭଞ୍ଜଙ୍କ ଚତୁଭଙ୍ଗର ଗୁରୁତ୍ୱ ସୁଗୁରୁରୂପେ ହୃଦୟଙ୍ଗମ କରି ଚତୁର୍ଦ୍ଦଶ-ପଦିକା ପରିମିତ ଗଦା ଉତ୍ତୋଳନ ପୂର୍ବକ ଆସ୍ଫାଳନ କରି ବସିଲେଣି; କେହି କେହି ପୁଣି ଦିଗ୍‌ବିଜୟବ୍ୟାଜରେ ବିଜେ କରି କାଳୀଦାସଙ୍କ ବିଜୟ-ଗାଥା ଗାଇ ଗାଇ ହଠାତ୍ କବିକଳ୍ପନାର କାଞ୍ଚନଜଙ୍ଘାରେ ଆରୋହଣପୂର୍ବକ ମୁଦ୍ରିତ କାଞ୍ଚନର ସ୍ୱପ୍ନଉଡ଼ମାରେ ନିଦ୍ରିତାବସ୍ଥାରେ ପୁଣି ଗୌରବ-ଶୃଙ୍ଗ-ଗୌରବରେ ଭୈରବପତନ ବରଣ କରି ନୀରବ କବିର ସମ୍ବର୍ଦ୍ଧନାରେ ପରିତୋଷଲାଭପୂର୍ବକ ମୌନୀ ବାବା ସାଜି ବସିଗଲେଣି; କେହି କେହି

ପୁଣି ତାଙ୍କ ପ୍ରେମାନ୍ଧତାବଶତଃ ମହାକାବ୍ୟ ଓ ଦୃଶ୍ୟକାବ୍ୟ ଯେ ବସ୍ତୁନିଷ୍ଠ ପରସ୍ମୈପଦୀ ରଚନା ( Objective writing ) ଓ ଗୀତିକାବ୍ୟ (Lyric) ପରି ଆତ୍ମନେପଦୀ ରଚନା (Subjective composition) ନୁହେଁ, ଏକଥା ଭୁଲି ନିଜର ଗରିଷ୍ଠ ଦେଶପ୍ରୀତିକୁ ଯଥାସ୍ଥିତ କଳ୍ପ-ଭୂଷାରେ ପ୍ରକାଶପୂର୍ବକ ଯଥେଷ୍ଟ ନିଷ୍ଠାର ସହିତ ଜନତା ସମୀପରେ ଉପସ୍ଥାପିତ କରନ୍ତଃ ପରସ୍ମୈପଦୀକୁ ଆତ୍ମନେପଦୀରେ ପରିଣତ କରି ମହାକବିସୁଲଭ ପ୍ରଭୂତ ପ୍ରତିଷ୍ଠାପୂର୍ଣ୍ଣମଞ୍ଚର ଅଭିନୟ କରନ୍ତେ ଲବ୍ଧପ୍ରତିଷ୍ଠ ସାହିତ୍ୟରଥୀମାନେ ତଟସ୍ଥ ହୋଇ ସେମାନଙ୍କୁ ନାଟ୍ୟକାର ସମ୍ରାଟ୍ ରୂପରେ ପ୍ରତିଷ୍ଠିତ କରି କାବ୍ୟସିଂହାସନରେ ଅଧିଷ୍ଠିତ କଲେ । କେହି କେହି ପୁଣି ବନହାଙ୍କ ପରି ଅଗ୍ରଜ-ସୁହୃଦଗଣଙ୍କ ପ୍ରାପ୍ତିରେ ଅସନ୍ତୁଷ୍ଟ ହୋଇ ସ୍ୱଜାତୀୟ ଅସୂୟାପରବଶ ସ୍ୱଭାବରୁ କବିକୁଳର ଅଗଣନ ସୁଧାଧମ ଲାଳସାରେ କାଳିଦାସ, ଭବଭୂତିଙ୍କଠାରୁ ଆରମ୍ଭ କରି ଉପେନ୍ଦ୍ର, ରାଧାନାଥ ପ୍ରଭୃତିଙ୍କ ଦ୍ୱାରରେ ସୁନେଲି ବରଷିବର୍ଷ ଅଧା ପଢ଼ି ପଢ଼ି ଶେଷକୁ କୃତଘ୍ନ ଟିକାପ୍ଲବନରୂପ କୃଳଜୀବିକାକୁ ବରଣ କରି ଶାନ୍ତ ହେଲେ । କେହି କେହି ଷଣ୍ଢଜନ୍ମା ନରପୁଙ୍ଗବ "ଶୃଗାଳ-ବିକ୍ରୀଡ଼ିତ" ଛନ୍ଦରେ ନିଜର ସ୍ୱଚ୍ଛନ୍ଦ ବିହାରକୁ ପସନ୍ଦ କରି ମହାନନ୍ଦରେ ରବୀନ୍ଦ୍ରନାଥଙ୍କ ସୁଦୀର୍ଘ ଲାଙ୍ଗୁଳାଶ୍ରୟ ପୂର୍ବକ କାବ୍ୟାମ୍ବୁଧି ସନ୍ତରଣର ସୁଯୋଗ ପାଇ ଓ କବିବରଙ୍କ ରୋମଯୁକ୍ତଲାଙ୍ଗୁଳକୁ ନନ୍ଦନବନନିର୍ଷେବିତ ମନ୍ଦାକିନୀଧାରା ବିଚାରି ସେଥିରେ ପ୍ଲବନ, ମଜ୍ଜନ ଓ ସନ୍ତରଣାଦି ଲୀଳାରେ ଆତ୍ମହରା ହୋଇ ପଡ଼ିଛନ୍ତି । ଏହା ଗଲା "ପାଠ୍ୟପୁସ୍ତକ" ଲେଖକ ସାହିତ୍ୟ-ମହାକୁରୁକ୍ଷେତ୍ରର ମହାରଥୀଙ୍କ ରାଜଯୋଟକ କଥା ।

କିନ୍ତୁ ନଳରାଜାଙ୍କ ପରି ଯେଉଁମାନଙ୍କୁ "ଶନିପ୍ରସାଦ" ଛଡ଼ି ନାହିଁ ; ସେମାନଙ୍କ ଦୁର୍ଦ୍ଦଶାର କଥା କହିଲେ ନ ସରେ । ଅର୍ଥାତ୍ ଯେଉଁମାନେ ପାଠ୍ୟପୁସ୍ତକ ନ ଲେଖି, କେବଳ 'ଅପାଠ୍ୟ' ପୁସ୍ତକ ଲେଖାରେ ମନୋନିବେଶ କରିଛନ୍ତି, ସେମାନଙ୍କ ମଧ୍ୟରୁ କେହି ଜଣେ ପେଟଜ୍ୱାଳାରେ ଭୁଇଁଓଳ ସ୍ୱାଓଳ ତାଓଳ ହୋଇ ପରିଶେଷରେ ସୁକୁମାରମତି ଶିଶୁ-

ଶିଷ୍ୟମାନଙ୍କର କୋମଳ ମସ୍ତିଷ୍କ ସେବା କରୁଁ କରୁଁ ହଠାତ୍ ଉପେନ୍ଦ୍ର-ଭଞ୍ଜଙ୍କ ପ୍ରେତାତ୍ମା ତାଙ୍କ କୃପାଳ ସ୍କନ୍ଧରେ 'ସବାର' ହେବାରୁ ସେ ଭ୍ରମରେ ମା ସାରଳା ପ୍ରସନ୍ନ ହେଲେ ବୋଲି ବୈଦେହୀ-ବିଳାସର କଣ୍ଡୁଉପରେ ବିଶ୍ୱବିଦ୍ୟାଳୟର ସୁଧର୍ମା ସଭାରେ ଉପସ୍ଥିତ ହେଲେ । ସେମାନେ ତାଙ୍କ ଅକୁଣ୍ଠ-କଣ୍ଠରୁ ଗୁମୁସିଆ ଗନ୍ଧ ପ୍ରସରୁଥିବାର ବାରି ପାରିବାରୁ ଜବ ଚନ୍ଦ୍ରଙ୍କୁ ଅର୍ଦ୍ଧଚନ୍ଦ୍ର ଦେଇ ଟଙ୍କଗୁପ୍ତଙ୍କ ମହାସଙ୍ଘର ରାଜପ୍ରତିନିଧି (Ambassadar) ରୂପେ ବରଣ କରି ଶୀଘ୍ର ବିଦାୟ ଦେଲେ । ପୂର୍ଣ୍ଣ ଦେହ ବା ନିଜର ଅନ୍ନମୟ କୋଷର ଶ୍ରୀବୃଦ୍ଧିସଂସାଧନର ପ୍ରୟୋଜନ ବୁଝି ହଠାତ୍ କରଧୃତଲେଖନୀ ପରିବର୍ତ୍ତିରେ ଅସ୍ତ୍ରୋପଚାରକ୍ଷମ ଶାଣିତ ଛୁରିକା ଧରି ଆନନ୍ଦମୟ କୋଷରୁ ବିଜ୍ଞାନମୟ କୋଷକୁ ଅବତରଣପୂର୍ବକ ଅପରର ସମୃଦ୍ଧିମନ୍ତ ଅନ୍ତଃକୋଷର ଅଣୁକୃଶତା ସମ୍ପାଦନରେ ପରମ ପରିତୋଷ ଲଭିବାକୁ ବାଧ୍ୟ ହେଲେ ; କାରଣ ତାଙ୍କର କୋଷବୃଦ୍ଧିକର ବର୍ଦ୍ଧମାନ ରୋଗୀ ସୁଧାକରଙ୍କ ଉଦ୍ଧାରରୁ ପରାଙ୍ମୁଖ ହୋଇ ସୁବିଜ୍ଞପ୍ରସିଦ୍ଧ ସୁଚୁଣାଟାଙ୍ଗିଆ, ଚନ୍ଦ୍ରୋଚ୍ଚାରଣକୁ ମୁଖ୍ୟ କରି ବସିଲେ, ଦୁଃସ୍ଥମୃତ୍ୟୁଦଶା-ସୁଲଭ କୃଚ୍ଛ୍ରତା ନିବାରଣାର୍ଥେ ଭିକ୍ଷାପାତ୍ର କକ୍ଷରେ ନେଇ ଦାତାକର୍ଣ୍ଣଙ୍କ ପ୍ରତ୍ୟକ୍ଷ ପ୍ରତିନିଧିସ୍ୱରୂପ ଓ ମା ଲକ୍ଷ୍ମୀଙ୍କ ସାକ୍ଷାତ୍ ବରପୁତ୍ରରୂପୀ ପ୍ରଖ୍ୟାତ-ଯଶା ରାୟବାହାଦୁରପ୍ରମୁଖ ଦେଶର ମୁଖ୍ୟଲୋକଙ୍କ ସମ୍ମୁଖରୁ ବିମୁଖ ହୋଇ ଫେରିବାହିଁ ଜୀବନର ମୁଖ୍ୟ ଅନୁଭୂତି ହେବ । ଏଥିପାଇଁ ଅନୁଭବୀ କବି ଗଭୀରଦୁଃଖରେ କହିଗଲେ— "କ୍ଷୁଦ୍ର ସିପ୍ରାସ୍ରୋତ ବିଖ୍ୟାତ ଜଗତେ, ମହାନଦୀ ନାମ ରହିଲା ଗୁପତେ ।" ଗୁପ୍ତରେ ରହିବାର ତ କଥା—ଯେ ପର୍ଯ୍ୟନ୍ତ ଆମ୍ଭମାନଙ୍କର ଭୂତାନ୍ନବେଶଛନ୍ନ ଓ ହୁତବାଦପ୍ରଣୋଦିତ ହିରଣ୍ମୟସ୍ୱପ୍ନଟି ନ ଭାଙ୍ଗୁଛି । ଶ୍ରୀ ଶ୍ରୀ ରାମକୃଷ୍ଣ ପରମହଂସ ଦେବଙ୍କ କଥାମୃତ ପାଠକମାନେ "କାମିନୀ-କାଞ୍ଚନ" ତ୍ୟାଗର କଥା ଭାବି ବସିବେଣି । ହରେକୃଷ୍ଣ କହ, ଏହା କଅଣ ଏ ଯୁଗରେ ସମ୍ଭବ ? ମହାସ୍ୱାର୍ଥତ୍ୟାଗର ବ୍ୟପଦେଶରେ ମଧ୍ୟ କୌଣସି ନା କୌଣସି ଛିଦ୍ରକୁ ଆଶ୍ରୟ କରି ତାହା ପ୍ରକଟ ହୋଇ ପଡ଼ୁଥିବାର ସଚରାଚର

ଦେଖାଯାଏ । ଅଜିକାଲି ତ କାମିନୀ-କାଞ୍ଚନର ଏକନିଷ୍ଠ ସେବା ହିଁ ଜୀବନର କାଂକ୍ଷିତତମ ପଦବୀ ହୋଇଅଛି । ଏହା ହିଁ ହେଲା ଯୁଗଧର୍ମ; ତେଣୁ ବାଣୀ-ବରପୁତ୍ରମାନେ ବିମାତାଙ୍କୁ ଭୀଷଣ ଭକ୍ତିର ଚକ୍ଷୁରେ ଦେଖନ୍ତି । ଏହି ବୈମାତୃକ ସାହିତ୍ୟରଥୀମାନେ ସଂଖ୍ୟାଗରିଷ୍ଠ ଦଳରୁ ନିର୍ବାଚନ ଲଢ଼ୁଥିବାର ଶୁଣାଯାଏ ।

ପୂର୍ବରେ କୁହାଗଲା ମନୁଷ୍ୟର ଦେହ, ମନ ହୃଦୟ ବା ଆତ୍ମା ସେହି ତାହାର ପ୍ରକୃତ ଗଠିତ । ପୁଣି କୁହାଗଲା ଏହି ତିନିଙ୍କ ମଧ୍ୟରେ ଆତ୍ମା ବା ହୃଦୟର ସ୍ଥାନ ମୁଖ୍ୟ । କିନ୍ତୁ ଏହା ହେଲା ଆଦର୍ଶବାଦୀର ଆଦର୍ଶ । ବ୍ୟବହାର ଜଗତରେ ଉତ୍ତାନପାଦମାନଙ୍କର କାର୍ଯ୍ୟକଳାପ ଏହାର ଠିକ ବିପରୀତ । ଜଡ଼ବିଜ୍ଞାନର କୃପାରୁ ଆମ୍ଭେମାନେ ଶରୀରକୁ ଅତି ପରମାର୍ଜିତ ଦୃଷ୍ଟିରେ ଦେଖିବାକୁ ଶିଖିଛୁଁ । ଶରୀରମାଦ୍ୟଂ ଖଳୁ ଧର୍ମ-ସାଧନଂ ; ତେଣୁ ଶରୀରରକ୍ଷକ ଭେଷଜଜୀବୀମାନଙ୍କ ସ୍ଥାନ ସମାଜରେ ଖୁବ ଉଚ୍ଚ । କାରଣ ସେମାନେ ଶାରୀରିକ ପୀଡ଼ାର ଉପଶମବିଦ୍ୟା ଜାଣନ୍ତି । ପୁଣି ଯେଉଁମାନଙ୍କର ଶରୀରକୁ ପୀଡ଼ା ଦେବାର ପ୍ରଭୂତ କ୍ଷମତା ଅଛି, ସେମାନଙ୍କ ସ୍ଥାନ ଆହୁରି ଉଚ୍ଚରେ । ଦେହ ପରେ ମନର ସ୍ଥାନ । ମନର ଭରଣପୋଷଣ ପାଇଁ ଯେଉଁମାନେ କର୍ମକ୍ଷେତ୍ରରେ ନିଯୁକ୍ତ ସେମାନଙ୍କର ସ୍ଥାନ ଅପେକ୍ଷାକୃତ ନିମ୍ନ ସ୍ତରରେ । ଶିକ୍ଷକ କୁଆଡ଼େ କିଛିଦିନ ଶିକ୍ଷକତା କଲେ ଅମଣିଷ ପାଲଟି ଯାଆନ୍ତି—ଠିକ କବି କଳ୍ପନାର "ମାଟିର ମଣିଷଟି" ପରି । ବାସ୍ତବିକ୍ ଦୃଷ୍ଟା ମାନସିକ ଅନୁଶୀଳନରେ ବା ଫଳ କଅଣ ? କେବଳ ମନସ୍ତତ୍ତ୍ୱଚର୍ଚ୍ଚା କରି ଚତୁର ବ୍ୟବହାରଜୀବୀମାନେ ହିରଣ୍ୟକଶିପୁଙ୍କ ପ୍ରସାଦରୁ କିଛି କିଛି ମାନ-ସମ୍ଭ୍ରମ ପାଆନ୍ତି । ସେମାନେ କୁଆଡ଼େ ଐନ୍ଦ୍ରଜାଲିକ ପରି କଳାକୁ ଧଳା ଓ ଧଳାକୁ କଳା କରିବାର କାଉଁରୀ ମନ୍ତ୍ର ଜାଣନ୍ତି । ଶୁଣାଯାଏ କଦ୍ରୁଙ୍କର ମାତୃଭକ୍ତ ଚୂଡ଼ାମଣିମାନେ କୁଆଡ଼େ ଉଚ୍ଚୈଃଶ୍ରବାର ଧଳା ପୁଚ୍ଛକୁ କଳା ବୋଲି ପ୍ରମାଣିତ କରି ବିମାତାଙ୍କ ମୁଣ୍ଡରେ ଛତା କାଟିଥିଲେ । ଏମାନଙ୍କର ଏତାଦୃଶୀ ଅଘଟନ-ଘଟନ-ପଟୀୟସୀ କାରସାଦୀ ଦୃଷ୍ଟିରେ

ଉପସ୍ଥିତ ହେତୁ ସମାଜ ଆଜି ଏମାନଙ୍କ ସମ୍ମୁଖରେ ନତମସ୍ତକ ହେବାକୁ ବାଧ୍ୟ ଏବଂ ଯେଉଁ ବୁଦ୍ଧିଜୀବୀମାନେ ମନୀଷାର ଉତ୍କୃଷ୍ଟତର ନିଶାରେ ବିହ୍ୱଳ ହୋଇ ଚଟା କାଟିବାରେ ସିଦ୍ଧହସ୍ତତା ଅର୍ଜନ କରିଛନ୍ତି ସେମାନଙ୍କ ସ୍ଥାନ ଯେ ଆହୁରି ଉଚ୍ଚରେ ନିର୍ଦ୍ଦିଷ୍ଟ, ଏ କଥା ବୋଲିବା ବାହୁଲ୍ୟ ମାତ୍ର । ଏହା ହେଲା ଚାଣକ୍ୟଗୋଷ୍ଠୀୟ ବୁଦ୍ଧିଜୀବୀମାନଙ୍କର ମହାତ୍ମ୍ୟର କଥା ।

ଏମାନଙ୍କର ବହୁନିମ୍ନରେ ଅଧ୍ୟାତ୍ମଜୀବୀମାନଙ୍କର ସ୍ଥାନ ନିର୍ଦ୍ଦେଶ ହୋଇ ପାରେ, ଯଥା—ବାବାଜୀ, ବୈଷ୍ଣବ, ଧର୍ମଯାଜକ ଓ ପୁରୋହିତ ବ୍ରାହ୍ମଣ ପ୍ରଭୃତି । ସେମାନଙ୍କୁ ଆଜିକାଲି ସମ୍ମାନର ଚକ୍ଷୁରେ ଦେଖୁଛି କିଏ ? ସେମାନଙ୍କର ସ୍ୱ ସ୍ୱ "ପତନ, ସ୍ଖଳନ, ତ୍ରୁଟିର" ଦୃଷ୍ଟିରେ ସେମାନଙ୍କର ସ୍ଥାନ ନିର୍ଣ୍ଣିତ ହୋଇଅଛି । ସେମାନେ ନିଜ ନିଜ ଦୋଷରୁ ସ୍ଥାନଚ୍ୟୁତ ହୋଇ ପଡ଼ିଛନ୍ତି ।

ସମାଜର ସର୍ବ ନିମ୍ନ ସ୍ତରରେ ମଧ୍ୟ ହତଭାଗା କଳାଜୀବୀଙ୍କର ସୂଚ୍ୟଗ୍ର-ପରିମିତ ନିସ୍ତରଭୂମିର ବ୍ୟବସ୍ଥା ଆଧୁନିକ ଦୁଃଶାସନ ପ୍ରରୋଚନାରେ ଅସମ୍ଭବ ହୋଇ ଉଠିବାରୁ ସେମାନେ ନିରବଲମ୍ବ କଳାସବିଳାସର ସ୍ୱଚ୍ଛନ୍ଦ ବିହାରକୁ ଛାଡ଼ି ସମାଜକୁ ସଢସ୍ୱସ୍ୱରୂପ କିଛି କିଛି ଦେବାର ବନ୍ଦୋବସ୍ତ କଲେଣି । କେହି ବା ଦେଶପ୍ରୀତି, କେହି ବା ଦଳପ୍ରୀତି,କେହି ରାଜନୀତି, କେହି ବା ଧର୍ମନୀତି, କେହି ବା ନଶ୍ୱେଳା ନିର୍ଟଳା ନୀତି, କେହି ବା ରାଜଭକ୍ତି, କେହି ବା ଧର୍ମଭକ୍ତି, କେହି ବା ଅବାଧ ପ୍ରୀତିକୁ କଳାସୌଷ୍ଠବ ଦାନ କରିବାରେ ବ୍ୟସ୍ତ । ସେମାନଙ୍କର ପରିବେଶନ ବିଶୃଙ୍ଖଳତା-ନୁମୋଦିତ ନ ହେଲେହେଁ, ହତବାକଜାତିର ପୃଷ୍ଠପୋଷକତାରେ ସମୃଦ୍ଧ ।

ଏପରି ସାମାଜିକ ପରିସ୍ଥିତିରେ କାବ୍ୟର ଆଦର୍ଶ କଅଣ ହୋଇ ପାରେ ? ଯଦି କେହି ମାଲସା ଭୋଗକୁ ଜୀବନର ଆଦର୍ଶ ଏବଂ ମନ୍ତ୍ରିତ୍ୱ ବା ନେତୃତ୍ୱକୁ ସ୍ୱାର୍ଥତ୍ୟାଗର ଆଦର୍ଶ ମନେ କରେ, ତେବେ ସେ ସେ କବିର ଆଦର୍ଶକୁ ଜୀବିତାବସ୍ଥାରେ ନୋବେଲ ପୁରସ୍କାର (noble prize) ଓ ମୃତ୍ୟୁ ପରେ ସ୍ମୃତିତର୍ପଣ ମନେ କରିବ ଏଥିରେ ସନ୍ଦେହ କଅଣ ?

ଯଦି କୁହାଯାଏ, ଯେପରି ପକ୍ଷୀମାନେ ସ୍ୱତଃସ୍ଫୂର୍ତ୍ତି ହୋଇ ଗାନ କରନ୍ତି ସେହିପରି କବିମାନେ ଆତ୍ମାନନ୍ଦସ୍ଫୂର୍ତ୍ତିରେ ଗାନ କରନ୍ତି । କୋକିଳ ବସନ୍ତାଗମରେ କାହିଁକି ଗାଇ ବୁଲେ ? ସେ ନିଜର କଣ୍ଠ-ମାଧୁର୍ଯ୍ୟରେ ଗର୍ବ ଅନୁଭବ କରି ଅନ୍ୟ ପକ୍ଷୀମାନଙ୍କଠାରେ ନିଜର ବାହାଦୁରୀ ଦେଖାଇ ବୁଲେ ।

ଧର, ତାହାହିଁ ସ୍ୱୀକାର କରାଗଲା । କୋକିଳ ତ ଆଉ ବିଶେଷ କିଛି ପ୍ରାପ୍ତି ଆଶାରେ ଗାଏ ନାହିଁ । ସେହିପରି କବି ନିଜର ପ୍ରକାଶ-ଭଙ୍ଗୀର ସରସତା ନିଜେ ଉପଲବ୍ଧି କରି ସେହି ଆନନ୍ଦର ରସପରି-ବେଶନରେ ବ୍ରତୀ ହୋଇ ଲେଖେ । 'କହି ଜାଣିଲେ କଥା ସୁନ୍ଦର' ସେ କହି ଜାଣନ୍ତି ବୋଲି ସେ କହିବାକୁ ଇଚ୍ଛା କରନ୍ତି । କାରଣ ସେ ଯେଉଁ ସୌନ୍ଦର୍ଯ୍ୟ ଉପଭୋଗ କରି ଆନନ୍ଦ ପାଉଛନ୍ତି, ସେ ସେହି ଆନନ୍ଦକଣିକା ବିତରଣ କରିବାର କୌଶଳ ଓ ବିତରଣପ୍ରବୃତ୍ତି ଜାଣନ୍ତି; ସୁତରାଂ ନିଜର ହୃଦୟର ଆନନ୍ଦକୁ ଅନ୍ୟମାନଙ୍କୁ ଉପଭୋଗ କରାଇବାର ଇଚ୍ଛାରୁ ସେ ଭାଷାର ସୌନ୍ଦର୍ଯ୍ୟରେ ନିଜ ଭାବକୁ ମଣ୍ଡିତ କରି ଅନ୍ୟର ଉପଭୋଗ୍ୟ କରନ୍ତି । ଏହାହିଁ ତାଙ୍କର ଆଦର୍ଶ । ହିତବାଦ କି ନୀତିବାଦ ତାଙ୍କର ଜୀବିକା ନୁହେଁ, ନୀତିବାଦ ଗ୍ରନ୍ଥ, ବେଦ, ବେଦାନ୍ତ, ଷଡ଼୍‌ଦର୍ଶନ, ଗୀତା ପାଠ କର, ଏମନ୍ତ କି Hegel ଙ୍କ ଦର୍ଶନଶାସ୍ତ୍ର ପଢ଼, କବି ତ ଦାର୍ଶନିକ (Philosopher) ନୁହନ୍ତି, ସେ ଲଳିତ କଳାଜୀବୀ—ସୌନ୍ଦର୍ଯ୍ୟର ପୂଜାରୀ—ଆନନ୍ଦ ବ୍ରହ୍ମର ଉପାସକ—ଆନନ୍ଦର ଦ୍ରଷ୍ଟା ଓ ସ୍ରଷ୍ଟା—ଆନନ୍ଦର ଉପଭୋକ୍ତା ଏବଂ ପରିବେଶନକାରୀ । ସେ ବିଶ୍ୱ ବ୍ରହ୍ମାଣ୍ଡକୁ ଆନନ୍ଦମୟ କରିଦେବାର କଳାନୁ-ମୋଦିତ ପ୍ରୟାସରେ ଆତ୍ମହରା ।

୨

ପୂର୍ବ ପ୍ରସଙ୍ଗରେ ସଂକ୍ଷେପରେ ଯାହା କିଛି କହିଛି ସେଥିରୁ ଏପରି ଯେପରି କେହି ନ ବୁଝନ୍ତି ଯେ ମୁଁ ସୁନୀତି ( ହିତୋପଦେଶ ) କୁ ଉଣ୍ଡନପାଦଙ୍କ ପରି କଳାର ସିଂହାସନରୁ ବନକୁ ନିର୍ବାସିତ କରିଦେଲି ।

ମୋର ପୂର୍ବ ପ୍ରବନ୍ଧର ପ୍ରସଙ୍ଗମାନ ହୃଦୟଙ୍ଗମ କଲେ ଏପରି ଭ୍ରାନ୍ତ ଧାରଣା ସହଜରେ ନିରାକୃତ ହେବ । ମୁଁ କହୁଛି, ସତ୍ୟଶିବଙ୍କୁ ସୁନ୍ଦରରୂପେ ପ୍ରକାଶ କରିବାହିଁ କଳାର ଲକ୍ଷ୍ୟ । ସୃଜନର ସତ୍ୟ ଶୁଭ୍ର ଶୁଭଙ୍କର ବରଦରୂପ ଓ ଶ୍ରେୟଃର ଶୁଭଙ୍କରୀ ମୂର୍ତ୍ତି ଆମ୍ଭମାନଙ୍କ ପରି ଅଜ୍ଞାନପାଦଙ୍କୁ ଭଲ ନ ଲାଗିବାରୁ ଶ୍ରେୟଃକୁ ପ୍ରେୟରୂପରେ ଅର୍ଥାତ୍ ସୃଜନର ସତ୍ୟ-ଶିବ-ସ୍ୱରୂପକୁ ପରମସୁନ୍ଦର ହୃଦୟର ଗ୍ରାହ୍ୟରେ ଢାଳ ପ୍ରେୟରୂପରେ ଉପସ୍ଥାପିତ କରିବାହିଁ ଲଳିତକଳାର ଉଦ୍ଦେଶ୍ୟ । କାବ୍ୟ ( ସାହିତ୍ୟ ) ଭାଷାର ସାହାଯ୍ୟରେହିଁ ତାହା କରିଥାଏ । ସୁତରାଂ ନୀତି ଉପରେହିଁ କାବ୍ୟର ଭିତ୍ତି ସୁପ୍ରତିଷ୍ଠିତ । ଅନୀତି ବା ଦୁର୍ନୀତିର ପରଶରେ କାବ୍ୟକୁଳବଧୂ କୁଳକଳଙ୍କିନୀ ବାରାଙ୍ଗନା ପରି ଘୃଣିତ ହେବ । ନୀତିଭିତ୍ତି ବର୍ଜନ କରି କବି କୁହୁଡ଼ିରେ ସନ୍ତରଣ କରନ୍ତୁ ସିନା !

ମାତ୍ର ନୀତି, ନୀତି ହୋଇ ରହିଲେ ଏବଂ ସତ୍ୟ ସତ୍ୟରୂପରେ ଅତି ଉଜ୍ଜ୍ୱଳ ଶୁଭ୍ରାଲୋକମଣ୍ଡିତ ବସ୍ତ୍ରରେ ଉପସ୍ଥିତ ହେଲେ ଓ ଶିବ-ଜଟାଜୂଟବିଭୂଷଣ ଭସ୍ମବିଲେପନ ଭୁଜଙ୍ଗବେଷ୍ଟିତ ଅର୍ଦ୍ଧନଗ୍ନ ଅବସ୍ଥାରେ ବିରାଜମାନ ହେଲେ, ଲୋକେ ଭୟ ଓ ସମ୍ଭ୍ରମରେ ନମସ୍କାର କରି ଦୂରେ ଦୂରେ ରହିବେ ସିନା । ତେଣୁ ଲଳିତକଳା ସତ୍ୟଶିବଙ୍କର ଲାଳିତ୍ୟ ବିଧାନ କରି ତାଙ୍କୁ ସୁନ୍ଦର ବରଣୀୟ ବସ୍ତ୍ରରେ ସଜାଇ ଉପସ୍ଥାପିତ କରେ । ତେବେ ନୀତିହିଁ କଳାର ଭିତ୍ତି । ଏହି ନୀତିଭିତ୍ତି ଉପରେହିଁ କାବ୍ୟକଳାର କୋଣାର୍କ, ପ୍ରେମର ତାଜମହଲ, ଚିତ୍ରକଳାର ରଙ୍ଗମହଲ ଏବଂ ସଙ୍ଗୀତର ଅତୀନ୍ଦ୍ରିୟ ଜଗତର ମାୟାପୁରୀ ରଚିତ ହୋଇଥାଏ ।

ଲଳିତକଳା କି ବ୍ୟଷ୍ଟି କି ସମଷ୍ଟି ଭାବରେ ଏକହିଁ ଚିରସୁନ୍ଦରଙ୍କ ସେବାରେ ନିଯୁକ୍ତ । କେବଳ ଉପାସନା ଭେଦରେ ଭିନ୍ନ ଭିନ୍ନ ନାମ-କରଣ ହୋଇଅଛି । ରଙ୍ଗର ବୈଚିତ୍ର୍ୟ ଘେନି ଚିତ୍ରକଳା, ନାଦବ୍ରହ୍ମର ଧ୍ୱନି ତାରତମ୍ୟ ସଙ୍ଗୀତର ବିଭୋଳ ମୂର୍ଚ୍ଛନା ଓ ଭାଷାର ବର୍ଣ୍ଣବିନ୍ୟାସ ଘେନି କାବ୍ୟକଳା, ସମସ୍ତେହିଁ ଆନନ୍ଦବ୍ରହ୍ମର ଉପାସନା କରନ୍ତି—

ସୌନ୍ଦର୍ଯ୍ୟର ସ୍ୱରବୋଧରୂପେ ରଙ୍ଗଦ୍ୱାରା ଚିତ୍ରକର ଯେପରି ତାହାର ଭାବପ୍ରକାଶ କରେ, ଭାଷାଦ୍ୱାରା କବି ସେହିପରି ତାହାର ଭାବପ୍ରକାଶ କରେ । ଉଭୟେ ସ୍ଥୂଳର ସାହାଯ୍ୟରେ ସୂକ୍ଷ୍ମର ପ୍ରକାଶ କରନ୍ତି; ସାନ୍ତ ସସୀମର ଦ୍ୱାରାହିଁ ଅନନ୍ତ ଓ ଅସୀମର ଅଭିବ୍ୟକ୍ତି ଇଚ୍ଛା କରନ୍ତି ।

ସୁତରାଂ ଭାଷାହିଁ କବିର ଉପାସନାର ସର୍ବପ୍ରଧାନ ଉପକରଣ ବା ଉପାଦାନ ଏବଂ ଏହାହିଁ କବିଙ୍କୁ ଅନ୍ୟାନ୍ୟ କଳାବିଦ୍‌ମାନଙ୍କଠାରୁ, ଅନ୍ୟାନ୍ୟ ସୌନ୍ଦର୍ଯ୍ୟର ପୂଜାରୀଠାରୁ ଭିନ୍ନ କରି ପରିଚୟ ଦିଏ । ଭାବ ପ୍ରକାଶର ଭାଷା ଉପରେହିଁ ତାହାର କାବ୍ୟକଳାର ସୌନ୍ଦର୍ଯ୍ୟ ନିର୍ଭର କରେ ।

ଭାବ ଆଗେ କି ଭାଷା ଆଗେ, ବୀଜ ଆଗେ କି ବୃକ୍ଷ ଆଗେ, ଏହା ଦର୍ଶନଶାସ୍ତ୍ରର ଗୋଟିଏ ଜଟିଳ ସମସ୍ୟା । ତାହାର ସମାଧାନ ମଧ୍ୟ ଦୁରୂହ । ମାତ୍ର ସହଜ ମନୁଷ୍ୟର ଏଥିରେ ସନ୍ଦେହ ହୁଏ ନାହିଁ । ସେ ଅବାଧରେ କହିବ, ବୀଜରୁ ବୃକ୍ଷର ଜନ୍ମ; ତେଣୁ ବୀଜ ଆଗେ । ସେହିପରି ଭାବ ଆଗେ, ଭାଷା ପରେ । ତଥାପି ଭାଷାହୀନ ଭାବର ଧାରଣା କରିବା ଅସମ୍ଭବ । ତେବେ ଭାବ ଭାଷାରେ ପ୍ରକାଶିତ ପୂର୍ବରୁ ଅପ୍ରକଟ ଅବସ୍ଥାରେ ମାତ୍ର ସତ୍ତାରୂପେ ଥାଏ; ଯେପରି କି ଜ୍ୟାମିତିକ ବିନ୍ଦୁ ବିସ୍ତୃତିହୀନ ଅବସ୍ଥିତି ମାତ୍ର ହୋଇଥାଏ । ବିସ୍ତୃତିହୀନ ଅବସ୍ଥିତିର ବାସ୍ତବତା କଳ୍ପନା କରି ହୁଏ କି ? ସେହିପରି ଭାଷା ସଂସର୍ଗହୀନ ଭାବର କଳ୍ପନା ମଧ୍ୟ ଦୁରୂହ । ସୁତରାଂ ଭାଷା ଓ ଭାବର ଏହି ଅପରିହାର୍ଯ୍ୟ ସମ୍ବନ୍ଧ ବନ୍ଧନହିଁ ଆମ୍ଭମାନଙ୍କର ସ୍ଥୂଳବୁଦ୍ଧିର ଗୋଚରୀଭୂତ । ଏଠାରେ ଭାଷାକୁ ବ୍ୟାପକ ଅର୍ଥରେ ଗ୍ରହଣ କରିବାହିଁ ସମୀଚୀନ । ଭାଷା ବୋଇଲେ କେବଳ ଓଡ଼ିଆ ବଙ୍ଗଳା ଆଦି ଭାଷା ନ ବୁଝାଇ ସଙ୍କେତ, ହାବ, ଭାବ କଟାକ୍ଷ, ମୁଖଭଙ୍ଗୀ ପ୍ରଭୃତି ମଧ୍ୟ ବୁଝାଏ । ଅନେକ ସ୍ଥଳରେ କେବଳ ମୁଖଭଙ୍ଗୀ, ଚାହାଣୀ କିମ୍ବା ଅଙ୍ଗଚାଳନଦ୍ୱାରା ହୃଦ୍‌ଗତ ଭାବ ପ୍ରକାଶ କରାଯାଏ । ଅର୍ଥାତ୍ ଯାହାଦ୍ୱାରା ଭାବ ପ୍ରକାଶ କରାଯାଏ ତାହାହିଁ ଭାଷା । ସ୍ଥଳବିଶେଷରେ ନୀରବ ମୌନଭାବହିଁ ବେଶୀ ବାବଦୂକ ହୋଇଥାଏ ।

ଭାବ ଓ ଭାଷାର ସମ୍ପର୍କ ଏତେ ଗୂଢ଼ ଯେ ଦୁଇଟିକୁ ଭିନ୍ନ କରି ଧାରଣା କରିବା କଠିନ । ସୁତରାଂ ଏଥିପାଇଁ ସମାଲୋଚକଙ୍କ ମଧ୍ୟରେ ନାନା ବାଗ୍‌ବିତଣ୍ଡାର ସୃଷ୍ଟି ହେଉଅଛି । ଭାବ ବିନା ଭାଷା ଏବଂ ଭାଷା ବିନା ଭାବର ପ୍ରକଟ ଅସମ୍ଭବ । କିନ୍ତୁ ଆମ୍ଭେମାନେ ସର୍ବଦା ଭାଷା ଓ ଭାବର ପାର୍ଥକ୍ୟ ଉପରେ ଜୋର ଦେଇ ସମାଲୋଚନା କରିଥାଉଁ । ଭାଷା ଓ ଭାବ କିନ୍ତୁ ଏକହିଁ ସତ୍ତାର ବିଭିନ୍ନ ବିକାଶ ମାତ୍ର । ଓଁକାରରୂପୀ ନାଦବ୍ରହ୍ମ ଓ ଅନ୍ତର୍ଯ୍ୟାମୀରୂପୀ ଭାବଗ୍ରାହୀ କଅଣ ସ୍ୱତନ୍ତ୍ର ସତ୍ତା ? ଏହି ଅଚିନ୍ତ୍ୟ ଭେଦାଭେଦତତ୍ତ୍ୱ କାବ୍ୟଜଗତର ଏହି ବିଶିଷ୍ଟାଦ୍ୱୈତବାଦ ପ୍ରଣିଧାନଯୋଗ୍ୟ । ଏକହିଁ ସତ୍ତା ବିଭିନ୍ନ ରୂପରେ ପ୍ରକଟ ମାତ୍ର । ସୁତରାଂ ଭାବହିଁ ଭାଷାର ଚିନ୍ମୟସ୍ୱରୂପ ଏବଂ ଭାଷାହିଁ ଭାବର ସ୍ଥୂଳ ଅଭିବ୍ୟକ୍ତି କହିବା ସମୀଚୀନ ।

ସୁତରାଂ ଆମ୍ଭେମାନେ ଯେତେବେଳେ କହୁଁ ଏ କବିଙ୍କର ଭାବ ଖୁବ ଉଚ୍ଚକୋଟୀର ଏବଂ ସେ କବିଙ୍କର ଭାଷା ଭାରି ମଧୁର, ସେତେବେଳେ ଏକର ଭାବର ଉତ୍କର୍ଷ ସଙ୍ଗେ ଅପରର ଭାଷାର ମାଧୁର୍ଯ୍ୟ ତୁଳନା କରିଥାଉଁ । ତାହା ଖୁବ ଯୁକ୍ତିଯୁକ୍ତ ହେଲେହେଁ, ଅନ୍ତତଃ ସ୍ଥଳବିଶେଷରେ ସେ ପାର୍ଥକ୍ୟ ଧରିବା କଠିନ ହୋଇପଡ଼େ । ଅର୍ଥାତ୍ ଖଣ୍ଡିତ କାବ୍ୟ ବା କାବ୍ୟାଂଶର ଉତ୍କର୍ଷ କେବଳ ଭାଷା ଉପରେ କି ଭାବ ଉପରେ, କି ଉଭୟ ସମ୍ମିଶ୍ରଣଜାତ ଗୋଟିଏ ଅଦ୍ଭୁତ ରସାତ୍ମକ ପ୍ରକ୍ରିୟା ଉପରେ ନିର୍ଭର କରେ, ତାହା ନିଜେ ରଚୟିତା କବି ମଧ୍ୟ ଠିକ କରି କହି ପାରିବେ ନାହିଁ । କା କଥା ଅପରେଷାଂ ? ଏହା ଆମ୍ଭେମାନେ ଭୁଲି ଯାଉଁ ବୋଲି ନାନାସ୍ଥାନରେ ସମାଲୋଚନା ବିଭ୍ରାଟ ଜନିତ ପରସ୍ପର ମଧ୍ୟରେ ମନୋମାଳିନ୍ୟ ଉପସ୍ଥିତ ହୁଏ । କାରଣ ଜଣେ ହସ୍ତୀର ଥୋଡ଼ପାହାଡ଼ ଧରି ଟାଣୁଛି ତ ଅପରଜଣକ ହସ୍ତୀର ଚରମଦେଶର ପୁଚ୍ଛଧାରଣ କରି ଅବଲମ୍ବମାନ । ଏପରି ଟଣାଓଟରାରେହିଁ କେବଳ ବଳକ୍ଷୟ ଓ ଶକ୍ତିର ଅପଚୟ ମାତ୍ର ।

ସୁତରାଂ ମୁଁ ପୂର୍ବ ପ୍ରସଙ୍ଗରେ କହିଅଛି—ବିଶୁଦ୍ଧ ନୀତି, ହିତୋପଦେଶ ତତ୍ତ୍ୱ, ତଥ୍ୟ, ସିଦ୍ଧାନ୍ତ ବା ସତ୍ୟ ଆମ୍ଭମାନଙ୍କର ବେଦ ବେଦାନ୍ତ ଷଡ଼୍‌ଦର୍ଶନରେ ଓ ଭଗବଦ୍‌ଗୀତାରେ ଯେପରି ପ୍ରାଞ୍ଜଳ ଭାଷାରେ ବୁଝାଇ ଦିଆ ହୋଇଛି ପୃଥିବୀ ସାହିତ୍ୟରେ ଅନ୍ୟତ୍ର ତାହା ନାହିଁ ।

କିନ୍ତୁ ଦର୍ଶନ କଳା ନୁହେଁ । ସତ୍ୟ ଶିବ ଆମ୍ଭମାନଙ୍କର କାମଳ-ରୋଗଗ୍ରସ୍ତ ଚକ୍ଷୁକୁ ସୁନ୍ଦର ଦିଶୁ ନାହାନ୍ତି । ଶ୍ରେୟଃକୁ ପ୍ରେୟରୂପେ ବରଣ କରି ଆଲିଙ୍ଗନ କରି ପାରୁ ନାହୁଁ ହୃଦୟଦୌର୍ବଲ୍ୟ ଦୋଷରୁ । ତେଣୁ କଳା ସୌନ୍ଦର୍ଯ୍ୟର ଛଦ୍ମ ପ୍ରସ୍ତୁତ କରି ଦାର୍ଶନିକ ତଥ୍ୟସମ୍ଭାରକୁ ଉପାଦେୟ ଓ ଗ୍ରହଣୀୟ କରି ଥୋଇଦିଏ । କବି ଭାଷା ସାହାଯ୍ୟରେ ତାହା କରେ । ତେଣୁ କବି ଭାଷାଶିଳ୍ପୀ—ଓଡ଼ିଆ କବି ଓଡ଼ିଆଭାଷା ଶିଳ୍ପୀ । ଅର୍ଥାତ୍ ଓଡ଼ିଆ ଭାଷାର ସଙ୍କୀର୍ଣ୍ଣ ବର୍ଣ୍ଣମାଳାଦ୍ୱାରାହିଁ ଅନନ୍ତ ଭାବରାଶିର ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟ ପ୍ରକାଶ କରେ ।

କବିଙ୍କ ଭାବପ୍ରକାଶ ତେଣୁ ଦାର୍ଶନିକଙ୍କର ଭାବପ୍ରକାଶଠାରୁ ଭିନ୍ନ । ପୁଣି ଦେଖାଯାଉ ଭାବ ପ୍ରକାଶ କଅଣ ? ଭାବର ସତ୍ତା ଅଛି ଓ ସୌନ୍ଦର୍ଯ୍ୟ ଅଛି । ତେବେହିଁ ଭାବଗ୍ରାହୀଙ୍କ ସତ୍ୟସ୍ୱରୂପ, ଶିବସ୍ୱରୂପ ଓ ସୁନ୍ଦର ବା ପ୍ରେମ-ସ୍ୱରୂପ । ରବୀନ୍ଦ୍ରନାଥଙ୍କ ଭାଷାରେ, "ସତ୍ୟମଙ୍ଗଳ ପ୍ରେମମୟ ତୁମି ଧ୍ରୁବ-ଜ୍ୟୋତି ତୁମି ଅନ୍ଧକାରେ ।" ଦାର୍ଶନିକମାନେ ଭାବର ସତ୍ୟଶିବସ୍ୱରୂପରେ ସନ୍ଧାନ ଦେଇ କ୍ଷାନ୍ତ ହେଲେ, ବିଜ୍ଞାନମୟ କୋଷ ପର୍ଯ୍ୟନ୍ତ ସେମାନଙ୍କ ଦୌଡ଼, କିନ୍ତୁ କଳାବିତ୍ ଭାବର ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟକୁ ମୂର୍ତ୍ତିମାନ୍ କରେ । ଭାଷା ସାହାଯ୍ୟରେ ତାହା କରେ ବୋଲି କବି ଭାଷାଶିଳ୍ପୀ । ଭାଷାର ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟହିଁ ଭାବର ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟ ଉଦ୍‌ଘାଟନ କରି ପାରେ । ତେଣୁ କହନ୍ତି, "କହି ଜାଣିଲେ କଥା ସୁନ୍ଦର" କବି କହି ଜାଣେ ଏବଂ ଏହି କହି ଜାଣିବା ଉପରେହିଁ ତାହାର କଳାନୈପୁଣ୍ୟ ନିର୍ଭର କରେ । ଏହି କହି ଜାଣିବା ଦ୍ୱାରାହିଁ ଭାବର ଅନ୍ତର୍ନିହିତ ସୌନ୍ଦର୍ଯ୍ୟ-ସ୍ୱରୂପଟି ପ୍ରକଟ ହୁଏ । କହି ନ ଜାଣିଲେ ଭାବର ଅନ୍ତର୍ନିହିତ ସୌନ୍ଦର୍ଯ୍ୟଟି ଅପ୍ରକଟ ରହିଯିବାରୁ ଭାବ ନୀରସ ଓ ଶୁଷ୍କ ହୋଇଯାଏ ।

ଏକହିଁ ସତ୍ୟ ବା ଭାବପ୍ରକାଶଭେଦରେ ଥରେ ଶୁଷ୍କ ଓ ନୀରସ ଏବଂ ଥରେ ସରସ ଓ ସୁନ୍ଦର ରୂପେ ପ୍ରତିଭାତ ହୁଏ, ସୁତରାଂ ପ୍ରକାଶଭଙ୍ଗୀହିଁ ଶୃଙ୍ଗକଳାର ବୈଶିଷ୍ଟ୍ୟ—ତେଣୁ ପ୍ରକାଶଭଙ୍ଗୀର ଉପଯୁକ୍ତ ଶବ୍ଦବିନ୍ୟାସ ବା ଭାଷାସୌଷ୍ଠବହିଁ କାବ୍ୟକଳାର ବୈଶିଷ୍ଟ୍ୟ ।

ପୁଣି ସେହି ପରମ୍ପରାଗତ ଉଦାହରଣଟି ଗ୍ରହଣ କରାଯାଉ । ସାଧାରଣ ସହଜ ମନୁଷ୍ୟର ଭାଷା—ଶୁଷ୍କଂ କାଷ୍ଠଂ ତିଷ୍ଠତ୍ୟଗ୍ରେ । କବି-ଙ୍କର ଭାଷା ହେଲା—ନୀରସଃ ତରୁବରଃ ପୁରତୋ ଭାତି । ଦୁଇ ବାକ୍ୟର ଆବରଣଶୂନ୍ୟ ଖାଣ୍ଟି ସରଳ କଥା ହେଲା—ଗୋଟାଏ ଶୁଖିଲା ଗଛ ଆଗରେ ଠିଆ ହୋଇଛି । ଦୁଇବାକ୍ୟହିଁ ସତ୍ୟର ଏହି ନଗ୍ନ ମୂର୍ତ୍ତିକୁ ଦୁଇଟି ଭିନ୍ନ ଭାବରେ ପ୍ରକାଶ କରୁଅଛି । କିନ୍ତୁ କବିଙ୍କ ଭାଷାରେ କପଣ ଅଛି, ଯଦ୍ଦ୍ୱାରା ସେ ସତ୍ୟର ସେହି ନଗ୍ନ ରୁକ୍ଷମୂର୍ତ୍ତିକୁ ବି ସୁନ୍ଦର ସରସ କରି ଉପସ୍ଥାପିତ କରିଅଛନ୍ତି । ଶୁଷ୍କର ସ୍ଥାନରେ ସମାର୍ଥବୋଧକ ନୀରସ, କାଷ୍ଠ ସ୍ଥାନରେ ତରୁବର, ଅଗ୍ରେ ସ୍ଥଳରେ ପୁରତଃ, ତିଷ୍ଠତି ସ୍ଥାନରେ ଭାତି ପ୍ରଭୃତି ଯୋଜନାରେହିଁ ଏହି ସୌନ୍ଦର୍ଯ୍ୟର ସୃଷ୍ଟି । ସୁତରାଂ କବିଙ୍କର ଦୃଷ୍ଟି ସବୁବେଳେ ଭାଷାର ସୌନ୍ଦର୍ଯ୍ୟରେ ନିବଦ୍ଧ । ତେଣୁ ପାଶ୍ଚାତ୍ୟ ଜଗତରେ ସାହିତ୍ୟାନୁଶୀଳନକୁ ବର୍ଣ୍ଣମାଳାର ଅନୁଶୀଳନ କହନ୍ତି (Literature is a study of letters ଏବଂ ସାହିତ୍ୟିକକୁ ବର୍ଣ୍ଣମାଳାସେବକ କହନ୍ତି—He is a man of Letters) । କେବଳ ଭାବ ନୁହେଁ ସମଗ୍ର ପଦ୍ୟ ନୁହେଁ ବା ସମଗ୍ର ପ୍ରବନ୍ଧ ନୁହେଁ, ବାକ୍ୟବିନ୍ୟାସ ନୁହେଁ କି ଶବ୍ଦବିନ୍ୟାସ ମଧ୍ୟ ନୁହେଁ, ଏପରିକି ବାକ୍ୟାଂଶ ଶବ୍ଦାଂଶ (Syllable) ମଧ୍ୟ ନୁହେଁ ; ପ୍ରତ୍ୟେକ ବର୍ଣ୍ଣବିନ୍ୟାସ ପ୍ରତି ଦୃଷ୍ଟି ଦେବା କବିଙ୍କର କର୍ତ୍ତବ୍ୟ । ଗୁରୁ ଲଘୁ, ହ୍ରସ୍ୱ ଦୀର୍ଘ ପ୍ରଭୃତି ଭେଦରେ ପ୍ରକାଶଭେଦ ସୂଚିତ ହୁଏ ।

ପାଶ୍ଚାତ୍ୟ କଳାବିତ୍ ସମାଲୋଚକାନୁମୋଦିତ ବର୍ଣ୍ଣବିନ୍ୟାସପ୍ରସଙ୍ଗଟି ଆମ୍ଭମାନଙ୍କ ଭାଷାପ୍ରତି ସମଧିକ ସମୀଚୀନ । କାରଣ ଆମ୍ଭମାନଙ୍କ ଅଭିଧାନରେ ପ୍ରତ୍ୟେକ ଶବ୍ଦର ବହୁ ପ୍ରତିଶବ୍ଦ ଅଛି; ପ୍ରତ୍ୟେକ

ଏକ ଅର୍ଥସୂଚକ, ମାତ୍ର ବର୍ଣ୍ଣବିନ୍ୟାସର ତାରତମ୍ୟ ହେତୁ ଓ ଉଚ୍ଚାରଣର ପାର୍ଥକ୍ୟନିବନ୍ଧନ ସର୍ବତ୍ର ସମାନ ଭାବରେ ପ୍ରଯୁଜ୍ୟ ନୁହେଁ । ଅନେକ ଗୁଡ଼ିଏ ଏକାର୍ଥବୋଧକ ଶବ୍ଦ ମଧ୍ୟରୁ ସୁକବି ତାହାର ସର୍ବୋତ୍କୃଷ୍ଟ ଶବ୍ଦଟି ବାଛି ନିଏ । ତାହାଦ୍ୱାରା କବିଙ୍କର ମନୋଗତ ଭାବର ଯେପରି ସର୍ବାଙ୍ଗୀନ ଅଭିବ୍ୟକ୍ତି ସମ୍ଭବ ହୁଏ, ଅନ୍ୟ ଗୋଟିଏ ଏକାର୍ଥବୋଧକ ଶବ୍ଦଦ୍ୱାରା ସେପରି ହେବା ଅସମ୍ଭବ । ଭାବର ପୂର୍ଣ୍ଣ ମାଧୁର୍ଯ୍ୟ, ସୌନ୍ଦର୍ଯ୍ୟ ଓ ଗାମ୍ଭୀର୍ଯ୍ୟ ଉକ୍ତ ଶବ୍ଦଟିର ଅଭିଧା, ଲକ୍ଷଣା ଓ ବ୍ୟଞ୍ଜନା ପ୍ରଭୃତି ବୃତ୍ତିଦ୍ୱାରା ଏମନ୍ତ କି ସଙ୍ଗୀତମୟ ଧ୍ୱନିଦ୍ୱାରା ପରିପୂର୍ଣ୍ଣରୂପରେ ପ୍ରକଟ ହୋଇପଡ଼େ । ଏହାକୁ ଅବଶ୍ୟମ୍ଭାବୀ ଶବ୍ଦଯୋଜନା (inevitable word) କହନ୍ତି । ପ୍ରତ୍ୟେକ ସୁକବି ଜ୍ଞାତ ଅଥିବା ଅଜ୍ଞାତସାରରେ, ବାଗ୍‌ଦେବୀଙ୍କ କୃପାରୁ ସେହି ଅବ୍ୟର୍ଥ-ସନ୍ଧାନୀ ଅବଶ୍ୟମ୍ଭାବୀ ଶବ୍ଦବ୍ରହ୍ମାସ୍ତ୍ରର ସନ୍ଧାନରେ ସଫଳମନୋରଥ ହୋଇ-ଥାନ୍ତି । ସେହି ଅବଶ୍ୟମ୍ଭାବୀ ଶବ୍ଦଦ୍ୱାରାହିଁ ଭାବର ମହାପ୍ରକାଶ ସମ୍ଭବପର ହୁଏ । ଯେପରି ମନ୍ତ୍ରର ଗୋଟିଏ ଶବ୍ଦ ଓଲଟ ପାଲଟ ହୋଇଗଲେ, ମନ୍ତ୍ରଶକ୍ତି ପଣ୍ଡ ହୋଇଯାଏ, ସେହିପରି ଅବଶ୍ୟମ୍ଭାବୀ ଶବ୍ଦଯୋଜନାମୟ କାବ୍ୟାଂଶରୁ ଗୋଟିଏ ଶବ୍ଦର ସମାର୍ଥବୋଧକ ପ୍ରତିଶବ୍ଦ ବ୍ୟବହାର କଲେ ସୁକବିସୁଲଭ କାବ୍ୟିମନ୍ତ୍ରର ଐନ୍ଦ୍ରଜାଲିକ ପ୍ରଭାବ ପଣ୍ଡ ହୋଇଥାଏ । ଯେ ଯେତେ ଅବଶ୍ୟମ୍ଭାବୀ ଶବ୍ଦଯୋଜନାରେ ସିଦ୍ଧହସ୍ତ ସେ ସେତେ ଉଚ୍ଚକଳାବନ୍ତ କବି ବୋଲିବା ସମୀଚୀନ ନୁହେଁ କି ?

ରାଧାନାଥ ଲେଖିଛନ୍ତି—

(୧) "କଲ୍ଲୋଳିନୀ-କୁଳେଶ୍ୱରୀ ମହାନଦୀ କୂଳେ" ।

ବର୍ତ୍ତମାନ କଲ୍ଲୋଳ ଅର୍ଥ 'ତରଙ୍ଗ ; ସୁତରାଂ କଲ୍ଲୋଳିନୀ ଓ ତରଙ୍ଗିଣୀ ଏକାର୍ଥବୋଧକ—ପୁଣି ଅନ୍ୟତ୍ର—

(୨) "ତରଙ୍ଗକରେ କି କଲେ ଅଲିଙ୍ଗନ, ସେହି ଯୁବ-ତରଙ୍ଗିଣୀ"

ପ୍ରଥମ ପଂକ୍ତିରେ କଲ୍ଲୋଳିନୀ ସ୍ଥାନରେ ତରଙ୍ଗିଣୀ ଏବଂ ଦ୍ବିତୀୟ ପଂକ୍ତିରେ ତରଙ୍ଗିଣୀ ପରିବର୍ତ୍ତେ କଲ୍ଲୋଳିନୀ ପାଠ କଲେ, ଅବଶ୍ୟମ୍ଭାବୀ ଶବ୍ଦର ଅବଶ୍ୟମ୍ଭାବିତ୍ୱ ସହଜରେ ହୃଦୟଙ୍ଗମ ହେବ । ଦୁଇ କ୍ଷେତ୍ରରେ ଶ୍ରୁତି-ମାଧୁର୍ଯ୍ୟର ହାନି ସ୍ପଷ୍ଟ ଜଣାଯିବ । ପୁଣି ଦେଖାଯାଉ—

(୩) "ବର୍ଷନ୍ତି ମହୀମୂଖେ ନବ ଅମ୍ବୁଦେ"

ଅମ୍ବୁଦେ ପରିବର୍ତ୍ତେ ଏକାର୍ଥବୋଧକ ଜଳଦେ, ବାରିଦେ ପ୍ରଭୃତି କୌଣସି ପ୍ରତିଶବ୍ଦ ଖାପ ଖାଇବ କି ?

(୪) "ହରିଣ-ବାର୍ଯ୍ୟ-କଳଙ୍କ-ନୈକଶେଯ୍ୟ ବଳୀ" ନ କହି
"ଦେବତା-ବୀର୍ଯ୍ୟ-କଳଙ୍କ-ଲଙ୍କା ଅଧିପତି"

କହିଲେ ଏକାର୍ଥବୋଧକ ହେଲେହେଁ କଳାସୃଷ୍ଟିରେ ଘୋର ଅନର୍ଥ ସୃଷ୍ଟି କରେ । କାରଣ ତଦ୍ଦ୍ୱାରା କୋମଳମଧୁର ଯୋଜନାସୌଷ୍ଠବରୁ ଯେଉଁ ମାଧୁର୍ଯ୍ୟଧାରାବୃଷ୍ଟି କବିଙ୍କ କବିକୃତିରେ ସମ୍ଭବପର ହୋଇଥିଲା, ତାହା ବାଧାପ୍ରାପ୍ତ ହେଲା ।

(୫) "ସ୍ୱର୍ଗୀୟ ରଙ୍ଗାଜୀବ ହେ ଗଙ୍ଗାଧର" ନ କହି ନନ୍ଦକିଶୋର ଯଦି କହିଥାନ୍ତେ, "ସ୍ୱର୍ଗୀୟ ଶବ୍ଦଶିଳ୍ପୀ ହେ ଗଙ୍ଗାଧର" ତାହାହେଲେ କିଅଣ ତାଙ୍କର ମଧୁରଗମନ ସ୍ମରଣ କରି ଆମ୍ଭେମାନେ ତାଙ୍କ ଲାଗି ଉତ୍କଣ୍ଠିତ ପରି ଝୁରୁଥାନ୍ତୁ ?

(୬) ରବୀନ୍ଦ୍ରନାଥ କହିଲେ—
"ଫାଗୁନ ଲେଗେଛେ ବନେ ବନେ"

(୭) "ଐ ଆସେ ଐ ଅତି ଭୈରବ ହରଷେ
ଜଲସିଞ୍ଚିତ ଛିତି ସୌରଭ ରଭସେ
ଘନ ଗୌରବେ ନବ ଯୌବନା ବରଷା
ଶ୍ୟାମ ଗମ୍ଭୀର ସରସା
... ... ... ..
ନଦୀଲ ଛନ୍ଦ ହରଷା ।"

(୮) "ନଠରେ ପୀଡ଼ନେ ନଙ୍ଗାଡ଼ ବାକ୍ଷଦଳିତ ଦ୍ରାକ୍ଷା ସମ।"

(୯) "ଯେତ ସାଦ୍ୟ ବେଡ ନାପାଦ୍ୟ ବେତନ ତରୁନା ଚେତନ ମାନେ।"

(୧୦) "କୋଥା, ହା ହନ୍ତ, ଚିରବସନ୍ତ, ଆମ୍ଭ ବସନ୍ତେ ମର।" "ଇତ୍ୟାଦି ଇତ୍ୟାଦି। ତାଙ୍କ କଥା ଛାଡ଼; ତାଙ୍କର ତ ସବୁ ସ୍ୱର୍ଗଛଡ଼ା କଥା। ତାଙ୍କର ଭାବଗାମ୍ଭୀର୍ଯ୍ୟ ସଙ୍ଗେ ସଙ୍ଗେ ବର୍ଣ୍ଣମାଧୁର୍ଯ୍ୟ ଫୀରନୀର-ପ୍ରୀତିବନ୍ଧନରେ ଏପରି ଏକାତ୍ମତା ପ୍ରାପ୍ତ ହୁଏ ଯେ ପାଠକର ହୃଦୟ ମଧ୍ୟ ସେଥିରେ ତନ୍ମୟତା ପ୍ରାପ୍ତ ହୁଏ। ବିଚାର କରିବା ପର୍ଯ୍ୟନ୍ତ ଅବସର ରହେ ନାହିଁ।

ଉପେନ୍ଦ୍ରଭଞ୍ଜଙ୍କ—

(୧୧) "ବଧିର ହୁଅଇ ବୀର, ବୋଇଲ ତହୁଁ ଧୀବର,
ଶୁଣିଲିଣି ପଥର ପଥର ଅବଳା
ବାଳି ପଡ଼ୁ ତୋ ଚରଣୁ ଆଶଙ୍କା ଉପୁଜେ ତେଣୁ
ନଉକା ନାରୀକା ହେଲେ ବୁଡ଼ିବ ଭେଳା।"

ଏଥିରେ ସମାର୍ଥବୋଧକ ଶବ୍ଦବିନ୍ୟାସ କରି ଦେଖାଯାଉ—
"ବଧିର ହୁଅଇ ମୁଁ ତ, ବୋଇଲ ତହୁଁ କୈବର୍ତ୍ତ
× × ×
× × ×
ତରୀଟି ନାରୀକା ହେଲେ ବୁଡ଼ିବ ଭେଳା।"

ଧୀବର ସ୍ଥାନରେ କୈବର୍ତ୍ତ ଓ ନଉକା ସ୍ଥାନରେ ତରୀ ପାଠ କରି ଦେଖାଯାଉ, ପରିବର୍ତ୍ତିତଟି କିପରି କର୍ଣ୍ଣରସାୟନ ହେବ ?

(୧୨) "ବୋଲଦେଲେ ଲବଣିକ ଯେ
ବୋଲଦେଲେ ପ୍ରାୟେ ଗୋଳ ଚନ୍ଦନରୁ
ହୋଇଲେ ରକ୍ତ ବର୍ଣ୍ଣିକ ସେ।

ପୁନଃ ତହିଁ ବ—

(୧୩) "ବିବିଧ କଳେ ଜ୍ଞାନ ଯେ
ବିଚିତ୍ର ମଣି ନୀଳମଣି ଘଟିଏ ଉଦ୍ଧ୍ୱର୍ ପ୍ରକାଶିତ ତଳ ଯେ।"

'ବେ ଳ' ସ୍ଥାନରେ ସମାର୍ଥବୋଧକ 'ଲେପି', 'ଗୋଳ', ସ୍ଥାନରେ 'ଘଷି' ଏବଂ 'ନୀଳମଣି' ସ୍ଥାନରେ 'ନୀଳକାନ୍ତ' ବା 'ଇନ୍ଦ୍ରନୀଳ' ବସାଇ ଦେଖାଯାଉ ।

"ଜୁଲ୍ଲା ଖୋଳ ନକ୍ରଜ୍ବଳ ଅହ୍ମାନଲ୍ଲ ପରି" ଉପେନ୍ଦ୍ର ସୃଷ୍ଟିର ଉପ-ଜୁଲ୍ଲାକୁ ଶୁକଜ୍ଜଳ ଅଥବା ଅରଣ୍ୟଶୂକରଜ୍ଜଳ ଅହ୍ମାନଲ୍ଲ ପରି ହେବ କି ନା !

ଅନ୍ୟତ୍ର ମଧ୍ୟ ଏହିପରି ଦୃଷ୍ଟାନ୍ତ ବିରଳ ନୁହେଁ ; କାରଣ ପ୍ରତ୍ୟେକ ସୁକବିଙ୍କ କଳାନୈପୁଣ୍ୟର ଏହା ଗୋଟିଏ ସର୍ବୋତ୍କୃଷ୍ଟ ଉପକରଣ । କାରଣ ସାହିତ୍ୟସେବକ ମାତ୍ରେହିଁ ବର୍ଣ୍ଣମାଳାର ବର୍ଣ୍ଣବୈଚିତ୍ର୍ୟର ଉପାସକ (A man of letters) ପ୍ରସଙ୍ଗରେ ଏହି ଅଂଶବିଶେଷଟିରେ ମୋର ଏତେ ବାକ୍ୟବ୍ୟୟ କରିବାର କାରଣ ଏହି ଯେ ଆଧୁନିକ ଜଗତରେ ନବୀନପନ୍ଥୀ ତଥା ପ୍ରଗତିପନ୍ଥୀ ଭାବଗ୍ରାହୀ ସାହିତ୍ୟ-ରଥୀମାନେ କାବ୍ୟକଳାର ଏହି ଅଂଶ ପ୍ରତି ପ୍ରକୃତିସ୍ଥ ହୋଇ ଦୃଷ୍ଟି ଦେବା ତ ଦୂରର କଥା, ଅନ୍ୟ କେହି ଯେ ଅଡ଼କୁ ଦୃଷ୍ଟି ଦେଲେ ସେମାନେ ସେମାନଙ୍କର ଚକ୍ଷୁଃଶୂଳ ହୋଇ ପଡ଼ୁଛନ୍ତି । ସେମାନଙ୍କୁ ଶବ୍ଦାଡ଼ମ୍ବରପ୍ରିୟ ଅଭାବଗ୍ରସ୍ତ ପ୍ରାଚୀନପନ୍ଥୀ ବୋଲି ଅପାଂକ୍ତେୟ କରି ରଖିବାର ଷଡ଼ଯନ୍ତ୍ର ମଧ୍ୟ ଚାଲିଛି । ସୁତରାଂ ସେମାନଙ୍କ ସଙ୍ଗରେ ଗୋଟିଏ ରାଜିନାମା ହୋଇ ନ ଗଲେ ଏ କଳହାନ୍ତରିତା ଲୀଳାର ବିଶ୍ରାମ ନାହିଁ ।

ଏହିପରି ବର୍ଣ୍ଣବିନ୍ୟାସକୁ କାବ୍ୟକଳାର ଏକମାତ୍ର ଅପରିହାର୍ଯ୍ୟ ଅଂଶ ବୋଲି ମନେ କରିବା ଉଚିତ ନୁହେଁ । ତେବେ ଏହା ଯେ ମଣ୍ଡନକଳାର ଗୋଟିଏ ମନୋଜ୍ଞ ଉପାଦାନ ତାହାହିଁ ସୂଚିତ ହେଲା ।

ଭବ ଓ ଭାଷାର ଅଚ୍ଛେଦ୍ୟ ଭେଦାଭେଦତତ୍ତ୍ୱର କଥା କୁହାଯାଇଅଛି ତଥାପି ଭାବପ୍ରଧାନ ଓ ଭାଷାପ୍ରଧାନ ପ୍ରକାଶଭଙ୍ଗୀର ପାର୍ଥକ୍ୟ ସହଜରେ ଧରା ପଡ଼ିଯାଏ । କୌଣସି କୌଣସି କବି ଭାବପ୍ରକାଶ କରିବାକୁ ଯାଇ ବାକ୍-ଚାତୁରୀ କିମ୍ବା ବର୍ଣ୍ଣବିନ୍ୟାସ ପ୍ରତି ସେପରି ଦୃଷ୍ଟି ଦିଅନ୍ତି ନାହିଁ । ସେମାନେ କେବଳ ସରଳ, ପ୍ରାଞ୍ଜଳ ଓ ପ୍ରସାଦଗୁଣବିଶିଷ୍ଟ ଭାଷାଲଙ୍କାରରେ ସନ୍ତୁଷ୍ଟ ହୋଇଥାନ୍ତି । ଭାବର ଗାମ୍ଭୀର୍ଯ୍ୟ ଓ ପ୍ରକାଶର ମାଧୁର୍ଯ୍ୟ ସେଥିରେ ସରଳତାର ସୌନ୍ଦର୍ଯ୍ୟ ମଧ୍ୟରେ ପରିସ୍ଫୁଟ ହୋଇ ଉଠେ । ସେପରି କବିତାରେ ବର୍ଣ୍ଣବିନ୍ୟାସର ସ୍ଥାନ ଖୁବ୍ ଗୌଣ—ସେହିପରି କବିତାକୁ ଭାବପ୍ରଧାନ କବିତା ଆଖ୍ୟା ଦିଆଯାଉ । ପୁଣି ଯେଉଁ କବିତାର ଅତି ସାଧାରଣ ଭାବକୁ ଆଶ୍ରୟ କରି ବର୍ଣ୍ଣବିନ୍ୟାସରୂପ ମଣ୍ଡନକଳା ସୌଷ୍ଠବସାହାଯ୍ୟରେ ସୌନ୍ଦର୍ଯ୍ୟ ସୃଷ୍ଟି କରେ, ତାହାକୁ ଭାଷାପ୍ରଧାନ କବିତା ବୋଲି ମନେ କରାଯାଇ । ପୁଣି ଯେଉଁ କବିତାରେ ଭାବଗାମ୍ଭୀର୍ଯ୍ୟ ସଙ୍ଗେ ସଙ୍ଗେ ଭାଷାର ସୌନ୍ଦର୍ଯ୍ୟ ଓତପ୍ରୋତଭାବରେ ବିଜଡ଼ିତ ହୋଇ ଏକାତ୍ମତା ପ୍ରାପ୍ତ ହୁଏ ଏବଂ ବର୍ଣ୍ଣ-ବିନ୍ୟାସ ଛଟାରେ ଗୋଟିଏ ଅଭିନବ ଅପରୂପ ରୂପ ଧାରଣ କରେ, ତାହାକୁ କାବ୍ୟକଳାର ଆଦର୍ଶ ମନେ କରିବାହିଁ ସମୀଚୀନ ହେବ ।

(୧) ଭାଷା ପ୍ରଧାନ—ଆମ୍ଭମାନଙ୍କର ଜାତୀୟ ସଙ୍ଗୀତର ଜୟଧ୍ୱନି କେବଳ ପ୍ରଶସ୍ତିବାଚକ ଗୋଟିଏ ସାମାନ୍ୟ ଭାବର ଅଭିବ୍ୟକ୍ତି ମାତ୍ର, କିନ୍ତୁ ଭାଷାରେ ଲଳିତ୍ୟ ଅଛି, ସଙ୍ଗୀତସୁଲଭ ଶ୍ରୁଶ୍ରାବ୍ୟତା ଅଛି ଏବଂ ଅନୁପ୍ରାସ-ସୁଷମା ମଧ୍ୟ ଅଛି । ସୁତରାଂ ଏହାର ଭାଷାର ସୌନ୍ଦର୍ଯ୍ୟହିଁ ପ୍ରଣିଧାନ-ଯୋଗ୍ୟ ।

(କ) ଜୟ ଜନ-ମନ ଗଣ ଅଧିନାୟକ ଜୟ ହେ
ଭାରତ-ଭାଗ୍ୟ-ବିଧାତା ।

ସେହିପରି ଜୟଦେବଙ୍କ ଅସରନ୍ତି ଭଣ୍ଡାରରୁ କଣିକାଏ ସେବା କରି—

(ଖ) "ଲଳିତ-ଲବଙ୍ଗ-ଲତା-ପରିଶୀଳନ-କୋମଳ-ମଳୟ-ସମୀରେ
ମଧୁକର-ନିକର-କରମ୍ବିତ-କୋକିଳ-କୂଜିତ-କୁଞ୍ଜ-କୁଟୀରେ"

(ଗ) "ଲକ୍ଷ୍ମୀ ରହିଛି ଅଣ୍ଡା ସଖୀ ଶିଖୀଚୂଳରେ" ।

(୨) ଭାବ ପ୍ରଧାନ—ଯଥା ଭଞ୍ଜଙ୍କ—

(କ) "ସ୍ଥାଣୁ ଅଙ୍କେ କର ବୃଷ
ବାସ ଗ୍ରାସ ପର୍ଯ୍ୟେ ନ ଗଲ୍ଲ ମୋର କ୍ଲେଶ ।

(ଖ) ଗନ୍ଧଦଶା ପ୍ରାନ୍ତେ ମୋର
ସୁଧାପାନ ଉତ୍ତାରୁ ଛେଦନ ହେଲ୍ଲ ଶିର ।

ଭକ୍ତ କବି ୰ ରାମ ପ୍ରସାଦ ସେନ—ମା ଦୁର୍ଗାଙ୍କ ପ୍ରତି

(ଗ) "ତୁମି ନା କରିଲେ କୃପା ଯାବ କି ବିମାତା ହେଥା"
ବିମାତା ଯଦି କରେନ କୋଲେ ଦେଖା ନାହିଁ ଆର ହେଥା ସେଥା

(ଘ) "ଏବାର କାଲୀ ତୋମାୟ ଖାବ
ଗଣ୍ଡଯୋଗେ ଜନମିଲେ ସେ ହୟ ମା ଖେକୋ ଛେଲେ
ଗଣ୍ଡଯୋଗେ ଜନ୍ମ ଆମାର ଏବାର କାଲୀ ତୋମାୟ ଖାବ
ଖାବ ଖାବ ବଲେ ମାଗୋ ଉଦରସ୍ଥ ନା କରିବ,
ହୃଦପଦ୍ମେ ବସାଇୟେ ମନୋମାନସେ ପୂଜିବ ।"ଇତ୍ୟାଦି

"ରବୀନ୍ଦ୍ରନାଥ ପ୍ରିୟ ପୁତ୍ର ବିୟୋଗରେ—

(ଙ) ଏତ ଭାଲ ବାସି ଏତ ଯାରେ ବୃଥା
ମନେ ହୟ ସଦା ସେ ଯେନ କାଛେ ନାଇ
ଢେ ଆସିଛେ ବଲେ ଫିରିୟା ତାକାଇ
କାନନେ ଡାକିଲେ ପାଖୀ ।"

ଶ୍ରୀପାଦଙ୍କର—

(ଚ) "କମଲ ଯଦି ବିକଶିତ ହୟ
ମଧୁକରେ କି ଡାକିତେ ହୟ"

ଅନ୍ୟତ୍ର—

(ଛ) "ଯାଇଛ 'ଶବ' ରୂପେ ସର୍ବେ କନ୍ଦାଇ
ଆସିବ 'ଶିବ' ହୋଇ ଶିଙ୍ଗା ବଜାଇ ।"

(ଜ) ଜ୍ୟୋତ୍ସ୍ନାଲୋକେ ଯହିଁ ଜଣୀଥିଲେ ଜଳଦେବୀ ସଙ୍ଗୀତ
ଶୁଣନ୍ତି କେତେ ନାବିକେ ଦୂରୁଁ ବାହୁଁ ବୋଇତ ।

(୩) ଅବର୍ଣ୍ଣ ଲବଣତା—ଭବ ଓ ଭାଷା ସମାବେଶ ସମ୍ପର୍କିତ

ରାଧାନାଥ—(କ) "ଧବଳ କୁସୁମେ ଭୂଷିଲି କବରୀ
ଭାବେ ଅବା ଶୋଭାମୟୀ ଶର୍ବରୀ ।"
ଏଠାରେ "ଭାବେ" ଶବ୍ଦଟିର ପ୍ରୟୋଗ ପ୍ରଣିଧାନଯୋଗ୍ୟ ।

ରବୀନ୍ଦ୍ରନାଥ—(ଖ) "ଜୀବନେ ଅଜଓ ଯାହା ରହେଛେ ପିଛେ
ଜାନି ହେ ଜାନି ତାଓ ହୟନି ମିଛେ ।"
"ଆମାର ଅନାଗତ, ଆମାର ଅନାହତ
ତୋମାର ବୀଣା ତାରେ ବାଜଛେ ତାରା
ଜାନି ହେ ଜାନି ତାଓ ହୟନି ହାରା ।"
ଯେ ଫୁଲ ନା ଫୁଟିତେ ଝରେଛେ ଧରଣୀତେ
ଯେ ନଦୀ ମରୁପଥେ ହାରାଲ ଧାରା
ଜାନି ହେ ଜାନି ତାଓ ହୟନି ହାରା ।

ଏହାହିଁ ଚରମ ଓ ପରମ ଆଶାବାଦ (optimism)

ଗୀତଗୋବିନ୍ଦ—

(ଗ) "ଗଦା ରାଧା ଦେଖିଛେ
ଅମାର ବଉଳ ଧରେ ପରାଣବନ୍ଧୁ କେମନ ସେଜେଛେ ।

ଏବଂ (ଘ) "ଏ ଯେ ଆମାଦେର ରାଧାରମନ
ଶୁଧୁ ଅବିରତ ରାଧାର ବରନ ।

ଅନ୍ୟତ୍ର (ଙ) "ସତେ ଏ ଲାବଣ୍ୟ କାଧିକା
ଭଲେ ଅଛ ଶ୍ୟାମନଙ୍କ ଲାଗିଲା କାଳ ?"

୮ ଗଙ୍ଗାଧରଙ୍କ ସମସ୍ତ ପୂର୍ଣ୍ଣ ଶ୍ରେଣୀ ଛନ୍ଦଟି—

"ମଙ୍ଗଳେ ଅଇଲ ଉଷା
ବଜତ ରାଜୀବଦୃଶା
ଜାନକୀ ଦର୍ଶନତୃଷା
ହୃଦୟେ ବହି

କର ପଲ୍ଲବେ କାହାର
ମୁକ୍ତା ଧରି ଉପହାର
ସଙ୍ଗୀଙ୍କ ବାସ ବାହାର

ପ୍ରାଙ୍ଗଣେ ରହୁ,
କଳକଣ୍ଠେ କହୁଥା,
ଦରଶନ ଦିଅ ସନ, ଗୁନ ପାହୁଥା ।" ଇତ୍ୟାଦି ଇତ୍ୟାଦି ।

ଏପରି କୃତ୍ରିମ ପ୍ରଣାଳୀର ଶ୍ରେଣୀବିଭାଗ ସବୁ କ୍ଷେତ୍ରରେ ସମ୍ଭବପର ନୁହେଁ, ତେବେ ଆଲୋଚନାସୌକର୍ଯ୍ୟବଶତଃ ଏପରି ଗୋଟାଏ ମନଗଢ଼ା ଶ୍ରେଣୀବିଭାଗର ପ୍ରୟୋଜନୀୟତା ଅଛି । ଅନେକ ସ୍ଥଳରେ କାବ୍ୟାଂଶଟି ଭାବପ୍ରଧାନ କି ଭାଷାପ୍ରଧାନ ସହଜରେ ଧରି ହେବ ; କିନ୍ତୁ ଏହା ସର୍ବଥା ପ୍ରଯୁଜ୍ୟ ନୁହେଁ । ଏହା ତ ଦ୍ୱୈତବାଦ ନୁହେଁ, ବିଶିଷ୍ଟ ଅଦ୍ୱୈତ-ବାଦର ଅଚିନ୍ତ୍ୟ-ଭେଦାଭେଦ-ତତ୍ତ୍ୱବିଶେଷ । ଏହିପରି ଭାଷାପ୍ରଧାନ ଓ ଭାବପ୍ରଧାନ ଓ ଆଦର୍ଶ କବିତା ଉଭୟ ଅଧିକରେ ସବୁ କବିଙ୍କ ସାଧନାରେ ଦେଖିବାକୁ ପାଉଁ । ଯାହାକୁ ଭାବପ୍ରଧାନ ବୋଲି ଆଖ୍ୟାତ କରୁଗଲୁ ସେଥିରେ ଭାଷାସୌଷ୍ଠବ ଗୌଣ ହେଲେହେଁ ଏକାବେଳକେ ବର୍ଜନୀୟ ନୁହେଁ । ତାହାହେଲେ ମହାଭାବପ୍ରଧାନ ହେଲେ ମଧ୍ୟ କାବ୍ୟ ବା ସାହିତ୍ୟ ଶ୍ରେଣୀଭୁକ୍ତ ନ ହୋଇ ଦର୍ଶନ, ଗୀତା ବା ବେଦ, ବେଦାନ୍ତର ଶ୍ରେଣୀରେ ସ୍ଥାନ ପାଇବ । ସେହିପରି ଭାବବିବର୍ଜିତ ଭାଷାର କଳ୍ପନା ମଧ୍ୟ ଅସମ୍ଭବ । କିନ୍ତୁ ଭାବ ଖୁବ ସାଧାରଣ ହେଲେ ମଧ୍ୟ ପ୍ରକାଶଭଙ୍ଗୀର, ଭାଷାର ସୌନ୍ଦର୍ଯ୍ୟରେ, ବର୍ଣ୍ଣବିନ୍ୟାସର ମାଧୁର୍ଯ୍ୟରେ ଓ ଛନ୍ଦବନ୍ଧନର ସଙ୍ଗୀତମୂଳକ ମାଧୁର୍ଯ୍ୟରେ ଓ କବିକଳ୍ପନାର ଔଦାର୍ଯ୍ୟରେ ଗୋଟିଏ ହୃଦୟ-ରଞ୍ଜନ ଶ୍ରବଣରସାୟନ ବିଗ୍ରହ ଧାରଣ କରେ ଏବଂ 'କହି ଜାଣିଲେ କଥା ସୁନ୍ଦର' ଏହି ଉକ୍ତିଟିର ପୂର୍ଣ୍ଣ ସାର୍ଥକତା ବିଧାନ କରେ । କବି ବାଣୀଙ୍କ ବରପୁତ୍ର—ବାଣୀ ବାକ୍ୟବିନୋଦିନୀ, ବାଗ୍‌ବାଦିନୀ ଏବଂ ଭାବଗ୍ରାହୀଙ୍କ କଣ୍ଠତଟରେ ବସି ବୀଣାବାଦନ କରନ୍ତି । ସେ ସଙ୍ଗୀତମୟୀ— ସେ ବାଙ୍ମୟୀ—ବାକ୍ୟଦେବୀ । ସ୍ୱୟଂ ଭାବଗ୍ରାହୀ ନୁହନ୍ତି । ତେଣୁ

ବାଣୀ-ବରପୁତ୍ର କବି-ଭାବଗ୍ରାହୀଙ୍କ କଣ୍ଠତଟସ୍ଥ ଶ୍ୱେତପଦ୍ମାସୀନା ବୀଣା-ଧାରିଣୀ ବାଙ୍ମୟୀ ମୂର୍ତ୍ତିର ଉପାସକ—ବାଣୀର ପୂଜାରୀ ବାକ୍ୟର ଅଧିଷ୍ଠାତ୍ରୀ ଦେବୀଙ୍କ ପ୍ରସାଦକଣିକା ଅଶାରେ ଅଶାନ୍ୱିତ । ସୁତରାଂ ଭାଷା ତାହାର ପ୍ରତ୍ୟକ୍ଷ ଦେବତା ; ରୂପ ପରିବେଶ—ବାଣୀ ମୁଖ୍ୟ ; ଭାବ ଗୌଣ । ଭାବକୁ ଭାଷା ଦେବା ତାର କର୍ତ୍ତବ୍ୟ । ଭାବକୁ ସୁନ୍ଦର କରି ପ୍ରକାଶ କରିବା କଳା ବାଣୀ ତାହାର ଉପାସ୍ୟ । 'କହି ଜାଣିଲେ କଥା ସୁନ୍ଦର'—ଏହାହିଁ କବିର ଚରମ ଓ ପରମ ଆଦର୍ଶ ।

ବୈଜ୍ଞାନିକ ସତ୍ୟଶିବର ସନ୍ଧାନରେ ମଗ୍ନ । ଦାର୍ଶନିକ ମଧ୍ୟ ସତ୍ୟ-ଶିବଙ୍କ ସନ୍ଧାନରେ ବ୍ୟାକୁଳ । କବି କଳାଜୀବୀ; ସୁତରାଂ ସତ୍ୟଶିବଙ୍କୁ ସୁନ୍ଦର କରି ଉପସ୍ଥାପିତ କରିବା ପାଇଁ ବ୍ୟସ୍ତ । ସେହି ସତ୍ୟ, ଭାବ, ତଥ୍ୟ ପ୍ରଭୃତିର ଅନ୍ତର୍ନିହିତ ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟର ରହସ୍ୟ ଉଦ୍‌ଘାଟନ କରିବାହିଁ କବିର କୃତି । ସେ ଭାଷାର ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟଦ୍ୱାରା ଭାବର ଗାମ୍ଭୀର୍ଯ୍ୟ ଓ ମାଧୁର୍ଯ୍ୟକୁ ପ୍ରାଣସ୍ପର୍ଶୀ କରିଦିଏ । ତେଣୁ କବିର କହିବା ଭଙ୍ଗୀ ବା ପ୍ରକାଶଶୈଳୀହିଁ କାବ୍ୟକଳା । ସେହି ଅଭିବ୍ୟକ୍ତିନୈପୁଣ୍ୟହିଁ ଉପଭୋଗ୍ୟ ।

କିନ୍ତୁ ଆମ୍ଭେମାନେ କାବ୍ୟର ଉତ୍କର୍ଷ ବା ଅପକର୍ଷ ବିଚାର କରିବାକୁ ଯାଇ କବିଙ୍କର ଭାଷାସୌନ୍ଦର୍ଯ୍ୟକୁ ଉପେକ୍ଷା କରି କେବଳ ତାହାର ଭାବଗାମ୍ଭୀର୍ଯ୍ୟଦୃଷ୍ଟିରେ ତାହାର ସ୍ଥାନନିର୍ଦ୍ଦେଶ କରି ସନ୍ତୁଷ୍ଟ ରହୁଁ । ଏତାଦୃଶୀ ଆଲୋଚନା ସମ୍ପୂର୍ଣ୍ଣ ଭ୍ରମାତ୍ମକ ନ ହେଲେହେଁ ସମୀଚୀନ ନୁହେଁ । କାରଣ କାବ୍ୟକଳାହିଁ ଅଭିବ୍ୟକ୍ତି ମାଧୁର୍ଯ୍ୟରେ ପୁଷ୍ଟ ; ପ୍ରକାଶ-ଭଙ୍ଗୀହିଁ ଚାରୁକଳାର ପ୍ରାଣ । ସୁତରାଂ ତତ୍ପ୍ରତି ଦୃଷ୍ଟି ନ ଦେଲେ ସମାଲୋଚନାର ଶ୍ରମ ସାଫଲ୍ୟମଣ୍ଡିତ ହେବ କିପରି ?

ପୁଣି, ଭାବର ଗାମ୍ଭୀର୍ଯ୍ୟକୁ ପୂର୍ଣ୍ଣ ଉପେକ୍ଷା କରିବା ମଧ୍ୟ ଦୁଃସାଧ୍ୟ ; କାରଣ ଜୀବନହିଁ ଭାବପ୍ରଧାନ । ମହାଭାବ ବା ପ୍ରେମର ଅତ୍ୟନ୍ତିକ ଅନୁଶୀଳନହିଁ ଜୀବର ପରମ ଓ ଚରମ ଆଦର୍ଶ । ସୁତରାଂ ଯେଉଁ କବିତାରେ ଯେ ପରିମାଣରେ ଭାବର ମହିମା ପରିସ୍ଫୁଟ ହୋଇ କଳାନୁ-

ମୋହିତ ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟରସରେ ହୃଦୟକୁ ନିବିଡ଼ଭାବରେ ଅଭିଷିକ୍ତ କରେ, ତାହାହିଁ ଉଚ୍ଚ ଅଙ୍ଗର କବିତା। ଦୁଇଗୋଟି କାବ୍ୟର ଅଭିବ୍ୟକ୍ତିଶୈଳୀ ସମାନ ଥିଲେ, ଯେଉଁ କାବ୍ୟର ଭାବଗାମ୍ଭୀର୍ଯ୍ୟ ଉତ୍କୃଷ୍ଟତର, ତାହାହିଁ କାବ୍ୟ ହିସାବରେ ଅପରଟିର ତୁଳନାରେ ଉଚ୍ଚକୋଟିର; ଏହାହିଁ ସ୍ୱତଃସିଦ୍ଧ। ତେବେ ଦୁଇଗୋଟି କବିତାର ପ୍ରକାଶିତ ଭାବ ଖୁବ୍ ଉଚ୍ଚ ଅଙ୍ଗର ହେଲେହେଁ, ଯେଉଁ କବିତାର ପ୍ରକାଶଭଙ୍ଗୀ ବା ଅଭିବ୍ୟକ୍ତିଶୈଳୀ କୌଣସି ନା କୌଣସି ତ୍ରୁଟିବଶତଃ ହୃଦୟସ୍ପର୍ଶୀ ହୁଏ ନାହିଁ, ତାହା ମହାଭାବସମ୍ବଳିତ ହେଲେହେଁ କବିତାପଦବାଚ୍ୟ ହୋଇ ନ ପାରେ। ଏହାହିଁ ମୋର ବକ୍ତବ୍ୟର ମର୍ମ। କାରଣ କବି ଦାର୍ଶନିକ ନୁହେଁ—ସେ ସୌନ୍ଦର୍ଯ୍ୟର ଉପାସକ। ସେ ଦାର୍ଶନିକର ସତ୍ୟକୁ ଭାଷାର ସୌନ୍ଦର୍ଯ୍ୟରେ ମଣ୍ଡିତ କରି ଶଂସିତ ସତ୍ୟର ଅନ୍ତର୍ନିହିତ ମାଧୁର୍ଯ୍ୟ ପ୍ରସ୍ରବଣଟି ଉନ୍ମୁକ୍ତ କରି ଚିରତୃଷିତ ଜଗତରେ କାବ୍ୟାମୃତରସନିଷ୍ୟନ୍ଦିନୀ ଫିଟାଇ ଦିଏ। ସୁତରାଂ ଯେଉଁ ଭାବଟି ଯେତେ ଉଦାର, ମଧୁର ଓ ଉନ୍ନତ, ସେହି ଭାବଟିରୁ ସମୀଚୀନ ଅଭିବ୍ୟକ୍ତି ଦ୍ୱାରା ସେହି ପରିମାଣରେ ଔଦାର୍ଯ୍ୟ ଓ ମାଧୁର୍ଯ୍ୟରସ ନିଃସରିତ ହେବ, ଏହା ସର୍ବବାଦିସମ୍ମତ ସିଦ୍ଧାନ୍ତ ଅଟେ। ରାମାୟଣ, ମହାଭାରତ, ଭାଗବତ, ଗୀତଗୋବିନ୍ଦ ତଥା କାଳିଦାସଙ୍କ ଶକୁନ୍ତଳା ଓ ସେକ୍ସପିଅରଙ୍କ ଲିୟର ହେମଲେଟ୍ ଓ ଓଥେଲୋ ଏବଂ ରବୀନ୍ଦ୍ରନାଥଙ୍କ ଗୀତିକାବ୍ୟ ପ୍ରଭୃତି ଭାବଗାମ୍ଭୀର୍ଯ୍ୟ ସଙ୍ଗେ ଭାଷାର ମାଧୁର୍ଯ୍ୟର ସମନ୍ୱୟ।

ମୋର ଏହି ଉଲ୍ଲିଖିତ ସିଦ୍ଧାନ୍ତର କେହି କେହି ପୂର୍ବପକ୍ଷ କରିବେ, ଏପରି ଆଶଙ୍କାର ବଶବର୍ତ୍ତୀ ହୋଇ ପୁଣି କହିବାକୁ ବାଧ୍ୟ ହେଲି ଯେ ଯଦି ଦୁଇଗୋଟି କବିତାରେ ଭାବପ୍ରକାଶର ଶୈଳୀ ବା କାବ୍ୟକଳା ସର୍ବାଂଶରେ ସମାନ ଥାଇ ଗୋଟିକର ଭାବଗାମ୍ଭୀର୍ଯ୍ୟ ଅପରଟିର ତୁଳନାରେ ଉତ୍କୃଷ୍ଟ ବିବେଚିତ ହୁଏ, ତେବେ ପ୍ରଥମୋକ୍ତ କବିତାଟିର ସ୍ଥାନ ଯେ ଦ୍ୱିତୀୟଟିର ତୁଳନାରେ ଉଚ୍ଚତର ହେବ, ଏଥିରେ ସନ୍ଦେହ ନାହିଁ। କାରଣ ଜୀବନ ଭାବ-ପ୍ରଧାନ। ମହାଭାବ ବା ପ୍ରେମର ଅନୁଶୀଳନହିଁ ଜୀବନର

ଚରମ ଓ ପରମ ଲକ୍ଷ୍ୟ । ସୁତରାଂ ଯେଉଁ କବିତା କଳାନୁମୋଦିତ ପ୍ରଣାଳୀରେ ଭକ୍ତି ଭାବ ଓ ପ୍ରେମର ଅନୁଶୀଳନର ସମର୍ଥନ ଓ ସହାୟତା କରିବାକୁ ଯାଇ ଭାବକୁ ମଣ୍ଡନକଳାର ସାହାଯ୍ୟରେ ହୃଦୟସ୍ପର୍ଶୀ କରି ଜୀବନର ଉପଦେଶ୍ୟ କରେ, ତାହାର ସ୍ଥାନ ଖୁବ୍ ଉଚ୍ଚ । କିନ୍ତୁ ଉକ୍ତ ମହାଭାବାଶ୍ରିତ ଅପର କବିତାରେ ଯଦି କଳାନୁମୋଦିତ ପ୍ରଣାଳୀରେ ସୃଷ୍ଟ ପରିଲକ୍ଷିତ ହେବାରୁ ତାହା ହୃଦୟକୁ ସ୍ପର୍ଶ ନ କରେ, ତେବେ ତାହାର ସ୍ଥାନ ଖୁବ୍ ନୀଚ—ଏହାହିଁ ମୋର ବକ୍ତବ୍ୟର ସାର ମର୍ମ । କାରଣ କବି ଦାର୍ଶନିକ ନୁହନ୍ତି—ସେ କଳାବିତ୍ ।

ଭୁଜିଙ୍କର ଖାଦ୍ୟ ପ୍ରସ୍ତୁତ କରିବାରୁହିଁ ପାଚକର ହସ୍ତନୈପୁଣ୍ୟ ପ୍ରକାଶିତ ହୁଏ । ଖାଦ୍ୟକୁ ରୁଚିକର କରିବାକୁ ଯାଇ ଖାଦ୍ୟସାମଗ୍ରୀର ଜୀବନୀଶକ୍ତି ( vitamin ) ନଷ୍ଟ ହେଲା କି ବୃଦ୍ଧି ହେଲା, ସେ ତାହା ଜାଣିବାର ଚେଷ୍ଟା କରେ ନାହିଁ; କାରଣ ସେ ରାସାୟନିକ ନୁହେଁ କି ବୈଜ୍ଞାନିକ ନୁହେ । କିନ୍ତୁ ଜୀବନୀଶକ୍ତି ( vitamin) ର ସ୍ଥାନ ମନୁଷ୍ୟଜୀବନରେ ଖୁବ୍ ଉଚ୍ଚ । ସୁତରାଂ ଯେଉଁ ରୋଷଇଆ ପାଚକର ପାକକ୍ରିୟା ନୈପୁଣ୍ୟ ସଙ୍ଗରେ ତାହାର ଏତଦ୍ବିଷୟ ଜ୍ଞାନ ମଧ୍ୟ ଅଛି । ଜୀବନର କଲ୍ୟାଣ ଦୃଷ୍ଟିରେ ତାହାର ହସ୍ତନୈପୁଣ୍ୟ ଯେ ଭାରି ଆଦରଣୀୟ ହେବ, ତାହା ବୋଲିବା ବାହୁଲ୍ୟ ମାତ୍ର । ସେହିପରି ଯେଉଁ କବି କାବ୍ୟକଳାନୁମୋଦିତ ପନ୍ଥାବଲମ୍ବନ ପୂର୍ବକ ସତ୍ୟକୁ ସୌନ୍ଦର୍ଯ୍ୟର ଛନ୍ଦରେ ଢାଳି ମନୁଷ୍ୟର ହୃଦୟକୁ ସ୍ପର୍ଶ କରେ ତାହାର ଯଦି ଦାର୍ଶନିକ ଓ ବୈଜ୍ଞାନିକ ଦୃଷ୍ଟି ଥାଏ ଏବଂ ସେ ଯଦି ବିଶେଷଜ୍ଞସୁଲଭ ପ୍ରତିଭାବଳରେ ମହା ମହା ତଥ୍ୟ ଓ ନିଗୂଢ଼ ରହସ୍ୟର ଦ୍ୱାର ଉଦ୍‌ଘାଟନପୂର୍ବକ ସେଗୁଡ଼ିକୁ ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟର ରସରେ ରସାଣିତ କରି ମାନବର ଅନ୍ତରତମ ପ୍ରଦେଶକୁ ଆଲୋଡ଼ିତ କରି ଗୋଟିଏ ଚିରନ୍ତନ ଚିତ୍ତାହ୍ଲାଦନାର ସୃଷ୍ଟି କରେ ସେ କବି ହୋଇ କଳାଜୀବୀ ଓ ଦାର୍ଶନିକର ସ୍ଥାନ ଯୁଗପତ୍ ପୂରଣ କରିବାରୁ ସର୍ବତ୍ର ବରଣୀୟ ହୁଏ । ସେକ୍ସପିଅର ଓ କାଳିଦାସଙ୍କ ନାଟ୍ୟାବଳୀ, ରାମାୟଣ, ମହାଭାରତ,

ଶ୍ରୀମଦ୍‌ଭାଗବତ, ଗୀତଗୋବିନ୍ଦ ଓ ରବୀନ୍ଦ୍ରନାଥଙ୍କ ଗୀତକାବ୍ୟ ପ୍ରଭୃତି ଏହି ଉଚ୍ଚଶ୍ରେଣୀର ସାହିତ୍ୟ। ସେ ସବୁରେ ଭାଷାର ମାଧୁର୍ଯ୍ୟସଙ୍ଗରେ ଭାବର ଗାମ୍ଭୀର୍ଯ୍ୟ ମଧ୍ୟ ପ୍ରଣିଧାନଯୋଗ୍ୟ। ଉଭୟର ସମାବେଶହିଁ ସେମାନଙ୍କ ଉତ୍କର୍ଷର ପରିଚାୟକ।

ଏହି ପ୍ରକାଶ ମୁଖ୍ୟତଃ ଦ୍ୱିବିଧ। ଆତ୍ମନେପଦୀ ( Subjection ) କବିତାରେ କବି ଅନ୍ତର୍ମୁଖୀ ହୋଇ ନିଜର ଅନ୍ତରର ନିଗୂଢ଼ତମ ପ୍ରଦେଶରେ ଯେଉଁ ସୂକ୍ଷ୍ମ ସୂକ୍ଷ୍ମ ଭାବବୃତ୍ତିର ଉଦ୍ରେକ ହୁଏ ତାହାର ସମ୍ବାଦ ରଖେ ଏବଂ ଉକ୍ତ ସମ୍ବାଦକୁ ରଞ୍ଜିନୀ ବୃତ୍ତିର ସାହାଯ୍ୟରେ ଜଗତ୍‌ସମୀପରେ ପ୍ରକାଶ କରିବାର ଚେଷ୍ଟା କରେ। ଉଦ୍ଦେଶ୍ୟ ସୁଦୂର ଭବିଷ୍ୟତ୍‌ର ମାନବହୃଦୟରେ ତାହାର ଆସ୍ୱାଦ୍ୟ ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟର ସମ୍ବାଦ ଦେଇ ଯଥାସାଧ୍ୟ ପ୍ରେମାନନ୍ଦର ଧାରା ପ୍ରବାହିତ କରିବ। କାବ୍ୟକଳାଦ୍ୱାରା ତାହା ସମ୍ଭବ ହୁଏ।

କିନ୍ତୁ ପରସ୍ମୈପଦୀ (objection) କବିତାରେ କବି ନିଜର ସତ୍ତା ଭୁଲି, ଏମନ୍ତ କି, ନିଜ ସତ୍ତାକୁ ଅପରର ସତ୍ତାରେ ସମ୍ପୂର୍ଣ୍ଣରୂପେ ନିମଜ୍ଜିତ କରି ଅର୍ଥାତ୍ ଅପର ସହିତ ପୂର୍ଣ୍ଣ ତନ୍ମୟତା ଲାଭ କରି ଅପରର ହୃଦୟୋ-ତ୍ଥିତ ଭାବରାଜିକୁ ନିଜେ ସମ୍ପୂର୍ଣ୍ଣ ଉପଲବ୍ଧି କରି ତାହା ପୁଣି ଜନତା ସମୀପରେ ଯଥାଯଥ ପ୍ରକାଶ କରିବାର ପ୍ରୟାସ କରେ। ଏପରି ତନ୍ମୟତା କେବଳ ସମ୍ପୂର୍ଣ୍ଣ ଆତ୍ମବିସ୍ମରଣ ସାପେକ୍ଷ; ତେଣୁ ଏହା ଭାରି ଦୁରୂହ ବ୍ୟାପାର। ନିଜର ମନୋଭାବକୁ ଅପରର ବୋଲି ପ୍ରଚାର କରିବାର ଅପଚେଷ୍ଟାକୁ ପରସ୍ମୈପଦୀ କବିତାସୁଲଭ କାବ୍ୟକଳା ବୋଲିଯାଇ ନ ପାରେ। ତାହା ପରସ୍ମୈପଦୀ ( objection ) କବିତାର ଛଦ୍ମବେଶ ଧାରଣ କଲେ ସୁଧୀ ଚତୁର ଗ୍ରାହକମାନେ ତାହାର କପଟବେଶ ତଳେ ଆତ୍ମନେପଦୀ କବିତା-ସୁଲଭ ଆତ୍ମପ୍ରକାଶର ସନ୍ଧାନ ପାଇଥାଆନ୍ତି। କିନ୍ତୁ ପରସ୍ମୈପଦୀ କବିତା ( drama ) ଲେଖକମାନେ ଏ କଥାଟି ମନେ ରଖନ୍ତି କି? ମହାକାବ୍ୟ ରଚନା ମଧ୍ୟ ସମ୍ପୂର୍ଣ୍ଣ ପରସ୍ମୈପଦୀ। ରାମାୟଣ ଓ ମହାଭାରତରେ ବାଲ୍ମୀକି କିମ୍ବା ବ୍ୟାସଦେବଙ୍କର ମତାମତ ଖୋଜିବା ବାତୁଲତା ମାତ୍ର।

ପରସ୍ମୈପଦୀ କବିତାର ଭାଷା ପ୍ରତ୍ୟେକ ଭୂମିକାର ଅନୁରୂପ ନ ହେଲେ ତାହାର ପ୍ରକୃତ ସ୍ୱରୂପରେ ବାଧା ପଡ଼େ ଅର୍ଥାତ୍ ତାହାର ପରସ୍ମୈପଦିତ୍ୱର ( objectivity ) ହାନି ହୁଏ । ତେଣୁ ଦୃଶ୍ୟକାବ୍ୟର ବିଭିନ୍ନ ଭୂମିକାରୂଢ଼ କୁଶୀଳବମାନଙ୍କର ବିଭିନ୍ନ ମନୋଭାବର ଅନୁରୂପ ଭାଷା ସର୍ବଥା ବାଞ୍ଛନୀୟ ଅଟେ ।

# କାକତାଳୀୟ ନ୍ୟାୟ କୁସଂସ୍କାର ଓ କାର୍ଯ୍ୟତାବୋଧ

ଶ୍ୱେତଦ୍ୱୀପର ଜଣେ ଚିନ୍ତାଶୀଳ ଲେଖକ ଲେଖିଅଛନ୍ତି—ଧାର୍ମିକ ପକ୍ଷରେ ଧର୍ମ ଯାହା ଦୁର୍ବଳଚେତା ମାନବପକ୍ଷରେ କୁସଂସ୍କାର ହିଁ ତାହା । ଆମ୍ଭମାନଙ୍କ ମଧ୍ୟରୁ ଦୁର୍ବଳଚେତା ବା ଧର୍ମଭୀରୁ ନୁହନ୍ତି କିଏ ? ସୁତରାଂ ଯାହାକୁ କୁସଂସ୍କାର ବୋଲି ଘୃଣା ଚକ୍ଷୁରେ ଏବଂ ଅବଜ୍ଞା ଦୃଷ୍ଟିରେ ଦେଖୁ, ତାହା ମଧ୍ୟରେ ମଙ୍ଗଳର ସନ୍ଧାନ କରିବାହିଁ ସମୀଚୀନ । ଅବହମାନ କାଳରୁ ପ୍ରଚଳିତ କୌଣସି ପ୍ରଥାବିଶେଷକୁ କୁସଂସ୍କାର ବୋଲି ନ ବୁଝି ନ ଶୁଝି ବର୍ଜନ କରିବା ଅବ୍ୟବସ୍ଥିତଚିତ୍ତର ଲକ୍ଷଣ ଅଟେ । କାକତାଳୀୟ ନ୍ୟାୟ ଉପରେ ପ୍ରତିଷ୍ଠିତ ଚିରାଚରିତ ଅନେକ ପ୍ରଥା ବାସ୍ତବିକ ଗତାନୁଗତିକ କୁସଂସ୍କାର ମାତ୍ର ହେଲେ ହୋଇ ପାରେ; କିନ୍ତୁ ତନ୍ମଧ୍ୟରୁ ଅନେକ ଗୁଡ଼ିକ ପୁଣି ମାନବର ଶରୀର, ମନ ଓ ଆତ୍ମାର ଉତ୍କର୍ଷବିଧାନର ଅନୁକୂଳ । ସେଗୁଡ଼ିକୁ ମଧ୍ୟ କୁସଂସ୍କାର ଆଖ୍ୟା ଦେଇ ବର୍ଜନର ଅପଚେଷ୍ଟା କଦାପି ଶ୍ରେୟସ୍କର ହୋଇ ନ ପାରେ । ସୁତରାଂ କେଉଁ ଗୁଡ଼ିକ ବର୍ଜନୀୟ ଓ କେଉଁ ଗୁଡ଼ିକ ବା ବରଣୀୟ, ଏହି ସମସ୍ୟାର ସମାଧାନ କରିବାକୁ ଗଲେ ପ୍ରତ୍ୟେକଟିର ଆଭ୍ୟନ୍ତରୀଣ ରହସ୍ୟଟି ଯଥା-ସମ୍ଭବ ଉଦ୍‌ଘାଟନ କରିବା ଉଚିତ । ଯାହା ଅବହମାନ କାଳରୁ ଚାଲି ଆସୁଛି, ତାହାଦ୍ୱାରା ମନୁଷ୍ୟର କି ଉପକାର ସାଧିତ ହୁଏ ବା ହେବ ଏବଂ ଆମ୍ଭମାନଙ୍କ ଜୀବନରେ ତାହାର ପ୍ରଭାବ କେତେଦୂର, ଇତ୍ୟାଦି ବିଷୟ ଧୀରସ୍ଥିରଚିତ୍ତରେ ବିଚାର ନ କରି କେବଳ ଅନ୍ଧବିଶ୍ୱାସର ବଶବର୍ତ୍ତୀ ହୋଇ ଏବଂ କାକତାଳୀୟ ନ୍ୟାୟର ଦୋହାଇ ଦେଇ 'ସ୍ଥାଣୁ ହୋଇ ବସି ରହିବାଟା ବଡ଼ ଦୁର୍ଭାଗ୍ୟର କଥା । କୁଅ ଉଡ଼ିବାକୁ, ତାଳ ପଡ଼ିବାକୁ । ଏହା ଦେଖି କାକର ଉଡ଼ିବାକୁ ତାଳ ପତନର କାରଣ ବୋଲି ଧରିନେବା ଉଚିତ କି ? କାରଣ କାକର ଉଡ଼ିବା ସାଙ୍ଗରେ ତାଳଟିର ପଡ଼ିବାର କୌଣସି କାର୍ଯ୍ୟ-କାରଣ-ସମ୍ବନ୍ଧ ନ ଥିଲେ ନ ଥାଇ

ପାରେ ; ତେଣୁ ଏପରି କାକତାଳୀୟ ନ୍ୟାୟଦ୍ୱାରା କାର୍ଯ୍ୟ-କାରଣରୂପ ସତ୍ୟାନୁସନ୍ଧାନ ମହାବିଡ଼ମ୍ବନା ମାତ୍ର ହେଲେହେଁ, କାକତାଳୀୟ ନ୍ୟାୟର ପ୍ରସାର ଖୁବ୍ ବଢ଼ି ଚାଲିଛି । ତେଣୁ ସତ୍ୟାନୁସନ୍ଧାନର ପନ୍ଥା ଭାରି ଦୁର୍ଗମ ହୋଇ ପଡ଼ୁଛି ।

କୌଣସି ଗୃହସ୍ଥଘରେ ଗୋଟିଏ କଳା ବିରାଡ଼ି ଥିଲା । ସେ ବିରାଡ଼ିଟି ସବୁ ଉପକରଣରେ ମୁହଁମାରି ଶ୍ରାଦ୍ଧଟି ନଷ୍ଟ କରିବାକୁ ବସିବାରୁ ତାକୁ ଅଗତ୍ୟା ବାନ୍ଧି ପକାଇ ଶ୍ରାଦ୍ଧକାର୍ଯ୍ୟ ସମାଧା କରାଗଲା । କିନ୍ତୁ ପରବର୍ତ୍ତୀ-ମାନଙ୍କରେ ଶ୍ରାଦ୍ଧକାଳରେ ଗୋଟାଏ କଳା ବିରାଡ଼ି ବନ୍ଧା ହେବାଟା ଶ୍ରାଦ୍ଧର ଗୋଟାଏ ଅପରିହାର୍ଯ୍ୟ ଅଙ୍ଗ ହେଲା । ସୁତରାଂ ଖୋଜି ଲୋଡ଼ି ପଡ଼ୋଶୀ ଘରୁ ଗୋଟାଏ କଳା ବିରାଡ଼ି ଆଣି ଶ୍ରାଦ୍ଧକାଳରେ ବାନ୍ଧି ରଖିବାର ବ୍ୟବସ୍ଥା ହେଲାରୁ ଅଦ୍ଭୁତ ପୂର୍ବପୁରୁଷମାନେ ପିଣ୍ଡଗ୍ରହଣ କରିବାକୁ ରାଜି ହେଲେ । ଗୋଟିଏ ପଲ୍ଲୀର ପୁରାତନ ଠାକୁରବାଡ଼ିର ପୁରୁଣାକାଳିଆ ମହନ୍ତଙ୍କ ସଙ୍ଗରେ ଗ୍ରାମବାସୀମାନଙ୍କର କିଞ୍ଚିତ୍ ମନୋ-ମାଳିନ୍ୟ ହେବାରୁ ଗ୍ରାମର ମୁଣ୍ଡିଆଳଙ୍କର ଉର୍ବରମସ୍ତିଷ୍କନିଃସୃତ ପରାମର୍ଶ ଘେନି ଗ୍ରାମବାସୀମାନେ ଏକତ୍ର ହୋଇ ସେହି ଠାକୁରବାଡ଼ିର ଶ୍ରୀ ଶ୍ରୀ ଗୋପୀନାଥ ଜୀଉଙ୍କ ସଙ୍ଗରେ ଘୋର ଅସହଯୋଗ କରି ତାଙ୍କ ମୁଖା-ବଲୋକନ ପର୍ଯ୍ୟନ୍ତ କଲେ ନାହିଁ । ପାର୍ଶ୍ୱସ୍ଥ ଚିରଅନାଦୃତ ଅସୂର୍ଯ୍ୟଂପଶ୍ୟ ଶ୍ରୀ ବାଳଗୋପାଳ ମୂର୍ତ୍ତିଙ୍କ ଉପରେ ସମସ୍ତ ଗ୍ରାମବାସୀଙ୍କର ପୁଞ୍ଜୀକୃତ ଭକ୍ତିପ୍ରୀତି ସ୍ନେହାଞ୍ଜଳି ବର୍ଷଣପୂର୍ବକ ତାଙ୍କୁ ହୋସି ଖେଳାଇବା ପାଇଁ ଦୋଳୀରେ ବସାଇ ମେଣ୍ଢାଘର ପୋଡ଼ିବାକୁ ଘେନିଗଲେ । ବାଳ-ଗୋପାଳଙ୍କ ସେବାୟତ ମହୋଦୟଙ୍କ ତୀବ୍ର ଆପତ୍ତିମାନ କେହି ହେଲେ କର୍ଣ୍ଣରେ ସୂଙ୍କା ପକାଇଲେ ନାହିଁ । କିନ୍ତୁ ମେଣ୍ଢାଘର ଦାହକାର୍ଯ୍ୟ ସାରି ସେବାୟତ ଘରକୁ ଫେରି ଦେଖିଲେ ଯେ ତାଙ୍କର ବାଳ-ଗୋପାଳଙ୍କର ଅଧିଷ୍ଠାନ ମନ୍ଦିରଟିରେ ଅଗ୍ନିଦେବଙ୍କ ଆକସ୍ମିକ ଅଧିଷ୍ଠାନ ହୋଇଥିବାରୁ ଘଣ୍ଟାକ ଭିତରେ ସମଗ୍ର ପୁରୀଟି ସୁବର୍ଣ୍ଣମୟ ହୋଇଗଲା । ପରବର୍ତ୍ତୀ ଯେତେବେଳେ ଉତ୍ସାହିତ ଗ୍ରାମବାସୀମାନେ ପୁଣି ବାଳଗୋପାଳ

ଜୀବଙ୍କୁ ହୋଷ୍ଟ ଖେଳାଇ ନେବାକୁ ବୁଣ୍ଡ ହେଲେ, ସେବାୟୁତ ମହୋଦୟ ସେମାନଙ୍କ କଥାରେ ଅତ୍ର ମହାମଣ୍ଡଳରେ ବସିଲେ ନାହିଁ—ଭୀଷ୍ମ ବିରକ୍ତ ହୋଇ କହିଲେ, "ତୁମ୍ଭେମାନେ ପରାମର୍ଶ କରି ଗତବର୍ଷ ମୋର ଗୃହଦାହ କରାଇ ଦେଲ; ଏଥର କଅଣ ମୋତେ ସବଂଶେ ପୋଡ଼ି ମାରିବା ପାଇଁ ଜତୁଗୃହଦାହର ଷଡ଼୍‌ଯନ୍ତ୍ର କରୁଛ ନା କଅଣ ?" ଗ୍ରାମବାସୀମାନେ ନୀରବ ହେଲେ । ଏପରି କ୍ଷେତ୍ରରେ ସେମାନେ ସବୁ ଜୋରଜୁଲମ କରି ବାଳଗୋପାଳଙ୍କୁ ନେଇ ଯାଇଥାଆନ୍ତେ, ତାହାହେଲେ ନିଶ୍ଚୟ ନିଶ୍ଚୟ ତାହାର ବାଳଗୋପାଳ ମନ୍ଦିର ପୋଡ଼ନ୍ତା ନାହିଁ ସତ୍ୟ, କିନ୍ତୁ ତାଙ୍କର ମନୋମନ୍ଦିରରେ ତୀକ୍ଷଣ ଦାବାନଳ ଜ୍ୱଳି ଉଠନ୍ତା—ଏଥିରେ ସନ୍ଦେହ ନାହିଁ ।

ଏହିପରି ମନୋବୃତ୍ତି ଯେ ଅମ୍ଭମାନଙ୍କ ଜୀବନରେ ପ୍ରବଳବେଗରେ ସଂକ୍ରମିତ ହୋଇ ପଡ଼ୁଛି, ତାହାହିଁ ଭାବିବାର କଥା । ଲୋକେ କାର୍ଯ୍ୟ କାରଣର ସମ୍ବନ୍ଧ ପ୍ରତି ଏପରି ଔଦାସୀନ୍ୟ ପ୍ରଦର୍ଶନ କରୁଛନ୍ତି ଯେ କାକତାଳୀୟ ନ୍ୟାୟର ପ୍ରସାର ବଢ଼ି ଚାଲିଛି । ଦେଶର ମୁଖ୍ୟ ମୁଖ୍ୟ ଚିନ୍ତାଶୀଳ ଜନନାୟକମାନେ ହୁରି ଛାଡ଼ିଲେ ପର୍ଦ୍ଦା ଉଠାଅ, ନଚେତ୍ ଦେଶ ରସାତଳଗାମୀ ହେଲା; କାରଣ ସର୍ବଂସହା ମା ବସୁନ୍ଧରା ଆଉ ଅସୂର୍ଯ୍ୟଂପଶ୍ୟାଙ୍କ ଭାର ବହନ କରିବାକୁ ନାରାଜ । ସୁତରାଂ ଯେଉଁମାନେ ପର୍ଦ୍ଦାନସୀନ ଥିଲେ ସେମାନେ ବାଧ୍ୟ ହୋଇ ପର୍ଦ୍ଦା ଉଠାଇ ଟିକିଏ ସ୍ୱସ୍ତିର ନିଃଶ୍ୱାସ ପକାଇଲେ । କିନ୍ତୁ ଯେଉଁମାନେ ବହୁପୂର୍ବରୁ ପର୍ଦ୍ଦା ଉଠାଇ ସାରିଥିଲେ ସେମାନେ "ଆଜ୍ଞା ଗୁରୂଣାଂ ହ ଅବିଚାରଣୀୟା" ଭାବି ପ୍ରଥମତଃ କିଂକର୍ତ୍ତବ୍ୟବିମୂଢ଼ ହୋଇ ପରେ ଭାବି ଚିନ୍ତି ସେମାନଙ୍କର ପରିଧେୟ ବସ୍ତ୍ରକୁ ଯଥାସମ୍ଭବ ଉପରକୁ ଉଠାଇଲେ । ଶୁଣାଯାଏ କେହି କେହି ଲୁଆଙ୍ଗେ ନାଗା ସାଜିବାକୁ ବାହାରିଥିଲେ, କିନ୍ତୁ ବଡ଼ଠାକୁରଙ୍କ ସମ୍ମୁଖରେ ନାଗାମାନଙ୍କର ନବଅଭିଷେକ କାଳରେ ଯେଉଁ ଅଭୂତପୂର୍ବ ମଧୁପର୍କର ସୁବ୍ୟବସ୍ଥା ହେଲା, ତାହାର କଥା ଶୁଣି କ୍ଷୁନ୍ନମନରେ କ୍ଷାନ୍ତ ହେବାକୁ ବାଧ୍ୟ ହେଲେ ।

ବସ୍ତୁତଃ ପର୍ଦ୍ଦାର ଅପକାରିତା ଦୃଷ୍ଟିରେ ପର୍ଦ୍ଦା ଉଠାଇବାର ବ୍ୟବସ୍ଥା ହେଉ । ବିହାର ପ୍ରଭୃତି ଅଞ୍ଚଳରେ ଅସୂର୍ଯ୍ୟଂପଶ୍ୟାମାନେ ଯେଉଁ ବାତାୟନଶୂନ୍ୟ ଗମ୍ଭୀର ମଧ୍ୟରେ ଅଜ୍ଞାତବାସ କରନ୍ତି, ତନ୍ମଧ୍ୟରେ କୌଣସି ପୁରୁଷର ପ୍ରବେଶାଧିକାର ନାହିଁ, ଏମନ୍ତ କି ଗୃହର ପ୍ରାପ୍ତବୟସ୍କ ପୁତ୍ରଙ୍କ ପିଲଙ୍କୁ ମଧ୍ୟ ଅନ୍ଦରମହଲ ଭିତରକୁ ଯିବାର ବାରଣ । ମହିଳା-ମାନେ ସ୍ଥାନାନ୍ତରକୁ ଗଲେ ଗୃହମଧ୍ୟରୁ ଘନପର୍ଦ୍ଦାଚ୍ଛାଦିତ ଶିବିକା ଆବେଷ୍ଟନ ପୂର୍ବକ ଜୀବନ୍ତ ଶବପ୍ରାୟ ନୀରବ, ନିଶ୍ଚଳ, ପ୍ରାୟ ନିଃଶ୍ୱାସହୀନ ଅବସ୍ଥାରେ ରେଲବାଇର ପ୍ରକୋଷ୍ଠ ମଧ୍ୟରେ ସ୍ଥାପିତ ହୁଅନ୍ତି । ପୁରୀର ପଣ୍ଡାମାନଙ୍କର ପରିବାରର ଅଭ୍ୟନ୍ତରୀଣ ଅବସ୍ଥା ଠିକ ଏହିପରି । ବିବାହ ପରେ ପୁଣି ବିଧବା ନ ହେବାଯାଏଁ, କୁଳସ୍ତ୍ରୀମାନେ ବାହାରକୁ ବାହାରନ୍ତି ନାହିଁ । ଏମନ୍ତ କି ପୂଜାପାର୍ବଣରେ ମଧ୍ୟ ଶ୍ରୀଜଗନ୍ନାଥଙ୍କ ମୁଖାବଲୋକନ ଏମାନଙ୍କ ଭାଗ୍ୟରେ ଯୋଟେ ନାହିଁ । କେହି କେହି ଭକ୍ତିମତୀ ପତିପ୍ରାଣା କୁଳସୀମନ୍ତିନୀ ନିଶ୍ଚୟ ନିଶ୍ଚୟ ପତିଙ୍କ ଅନୁକମ୍ପାପ୍ରାପ୍ତି ତଥା ନିଜର କଳାଣ୍ଣାମୁଖଦର୍ଶନଲାଳସା ଚରିତାର୍ଥ କରିବା ପାଇଁ ପତିଙ୍କ ଭବରୋଗକବୃତ୍ତିର କୌଣସି ନା କୌଣସି ପତିବ୍ରତାସୁଲଭ ସଦୁପାୟ ମନେ ମନେ ପାଞ୍ଚୁଥିବେ ।

ଏହି ଦୁଇ ସୀମାନ୍ତ ପ୍ରଦେଶର ପର୍ଦ୍ଦାନୁରାଗ ସଙ୍ଗରେ ଉତ୍କଳ ଓ ବଙ୍ଗଦେଶର ପ୍ରଚଳିତ ପର୍ଦ୍ଦାପ୍ରଣାଳୀକୁ ତୁଳନା କଲେ, ସହଜରେ ଜଣାଯିବ ଯେ, ବାସ୍ତବିକ ଯାହାକୁ ପର୍ଦ୍ଦାପ୍ରଣାଳୀର ଦୋଷ ବୋଲିଯାଏ ଏବଂ ଯେଉଁ ଦୋଷାବହ ଏବଂ ଜାତିର ଅକଲ୍ୟାଣକର ପର୍ଦ୍ଦାପ୍ରଣାଳୀକୁ ଉଠାଇବା ପାଇଁ ଦେଶର ଚିନ୍ତାଶୀଳ ସଂସ୍କାରକମାନେ ବଦ୍ଧପରିକର, ସେପରି ପର୍ଦ୍ଦାପ୍ରଣାଳୀ ଅନ୍ତତଃ ଏ ଦୁଇ ପ୍ରଦେଶରେ ଏକାବେଳକେ ନାହିଁ ବୋଲିଲେ ଚଳେ । ଆମ ଦେଶର ତଥାକଥିତ ହାଡ଼ିଆ ଜାତି ଭିତରେ ଏବଂ କନ୍ଧ କୋଲ୍ହ ପ୍ରଭୃତି ଆଦିମନିବାସୀଙ୍କ ମଧ୍ୟରେ ପର୍ଦ୍ଦାର ନାମ ଗନ୍ଧ ନାହିଁ । ବ୍ରାହ୍ମଣ, କ୍ଷତ୍ରିୟ, କାୟସ୍ଥ, କରଣ ପ୍ରଭୃତି ଉଚ୍ଚ ଜାତି ମଧ୍ୟରେ ଯାହା କିଛି ଅଛି, ତାହା ଦୋଷାବହ ନୁହେଁ । ସ୍ତ୍ରୀ ପୁରୁଷ

ବୟଃପ୍ରାପ୍ତ ହେଲେ ସଭ୍ୟତା ଦୃଷ୍ଟିରେ ସେମାନଙ୍କର ଅବାଧ ମିଳାମିଶାଟା ଦୂଷଣୀୟ ବୋଲି ଲୋକେ ମାନି ଆସୁଥିଲେ । ଆଧୁନିକ ଶିକ୍ଷିତ ଦେଶନାୟକମାନଙ୍କର ଦୃଷ୍ଟିରେ ସେହି ଅବାଧ ମିଳାମିଶାଟାହିଁ ଆମ୍ଭମାନଙ୍କର ସ୍ୱରାଜପ୍ରାପ୍ତିର ବିଳମ୍ବ କାରଣ ବୋଲି ଧରି ନିଆଗଲା ।

ସେହିପରି ଅସ୍ପୃଶ୍ୟତା ବର୍ଜନର ହୁରି ପଡ଼ିଲା । ଅନ୍ତର୍ଜାତୀୟ ବିବାହ ଏବଂ ବିଧବା ବିବାହର ହୁରି ମଧ୍ୟ ପଡ଼ିଲା । ହରିଜନମାନଙ୍କର ମନ୍ଦିର ପ୍ରବେଶ ଏବଂ ଅନ୍ତର୍ଜାତୀୟ ଭୋଜନର ଆୟୋଜନ ମଧ୍ୟ ହେଲା । ଜାତି-ଭେଦର ଉଚ୍ଛେଦସାଧନର ଚେଷ୍ଟା ହେବାରୁ ସ୍ଥାନେ ସ୍ଥାନେ ବର୍ଣ୍ଣସଙ୍କର ବିବାହ ମଧ୍ୟ ଆରମ୍ଭ ହେଲାଣି । କିନ୍ତୁ ଶୁଣାଯାଏ, କୌଣସି କୌଣସି ନିର୍ବାଚନକ୍ଷେତ୍ରରେ ଗୁଣକର୍ମକୁ ଗୌଣ କରି ଜାତି ବର୍ଣ୍ଣକୁ ମୁଖ୍ୟ କରି ଧରାଯାଇଥାଏ । ତେଣୁ ବ୍ରାହ୍ମଣ କରଣ ପ୍ରଭୃତି ଭିନ୍ନ ଭିନ୍ନ ଜାତି ମଧ୍ୟରେ ଦଳାଦଳି ସୃଷ୍ଟି ହୋଇ କଳହାନ୍ତରିତା ଲୀଳାର ଅଭିନୟ ହୋଇଥାଏ । ଇଂରାଜୀରେ ଗୋଟାଏ କଥା ଅଛି “Blood is thicker than water” ସୁତରାଂ ଶୋଣିତ ସମ୍ପର୍କଟା ବେଳେ ବେଳେ ବିଦ୍ରୋହୀ ହୋଇ ନ୍ୟାୟ ଧର୍ମ ପ୍ରଭୃତି ସତ୍ତ୍ୱଗୁଣ ଉପରେ ପ୍ରଭୂତ ପ୍ରଭାବ ବିସ୍ତାର କରି ପକାଏ । ଏହାକୁ Patriotism ବା ପ୍ରେମାନ୍ଧତା ଆଖ୍ୟା ଦିଆଯାଇ ପାରେ ।

ପର୍ଦ୍ଦା ଉତ୍ତୋଳନ, ବିଧବାବିବାହ ପ୍ରଚଳନ, ଅନ୍ତର୍ଜାତୀୟ ବିବାହର ସମର୍ଥନ ଓ ଅସ୍ପୃଶ୍ୟତା ବର୍ଜନ ପ୍ରଭୃତି ନବାବିଷ୍କୃତ ସଦନୁଷ୍ଠାନମାନଙ୍କର ଅନୁବର୍ତ୍ତନ ସମୟରେହିଁ ଏପରି ଅବସ୍ଥିତ ସ୍ୱରାଜପ୍ରାପ୍ତି ସନ୍ଦର୍ଶନ କରି କିଏ ନ କହିବ ଯେ ଏଗୁଡ଼ିକହିଁ ଦେଶରକ୍ଷାର ଏକମାତ୍ର କାରଣ ବା ମୁଖ୍ୟ କାରଣ ? ଯଦି କେହି କାକତାଳୀୟ ନ୍ୟାୟର ଦୋହାଇ ଦେଇ ପୂର୍ବପକ୍ଷ କରି ବସିଲେ ତେବେ ସେ ଯେ ହାସ୍ୟାସ୍ପଦ ହେବେ, ଏଥିରେ ସନ୍ଦେହ କଅଣ ? ଅରଣ୍ୟରୋଦନକୁ ତ ବ୍ୟାଘ୍ର ଭଲ୍ଲୁକାଦି ହିଂସ୍ରଜନ୍ତୁ କେହି ହେଲେ ଶୁଣିଲେ ଶୁଣି ପାରନ୍ତି; କିନ୍ତୁ ତାଙ୍କର ପ୍ରଗଲ୍ଭ ବାଗ୍‌ଜାଲକୁ ଲୋକେ ଉପହାସପୂର୍ବକ ତାହା ତାଙ୍କର ମସ୍ତିଷ୍କବିକୃତିର କାରଣ ବୋଲି ଅବଧାରଣ କରି ବସିବେ । ସେ ବଡ଼ ଜୋର କହିବେ—“ଆମ୍ଭମାନଙ୍କର

ସନାତନପନ୍ଥୀ ସମାଜରେହିଁ ନିମ୍ନଶ୍ରେଣୀର ଲୋକମାନଙ୍କ ମଧ୍ୟରେ ବିଧବାବିବାହପ୍ରଥା ଅବହମାନ କାଳରୁ ଚଳିଆସୁଛି । କୌଣସି ପ୍ରଥମ ସ୍ତ୍ରୀ ବିଧବା ହେଲେ ତାହାର ବିବାହ କରିବାର ସମାଜାନୁମୋଦିତ ବିଧାନ କେତେକ ଜାତି ମଧ୍ୟରେ ଚିରକାଳରୁ ଚଳି ଆସୁଅଛି । ପୁଣି କେତେକ ଜାତି ମଧ୍ୟରେ ପର୍ଦ୍ଦାର ନାମଗନ୍ଧ ନାହିଁ, ସୁତରାଂ ସେମାନେ ହାନିଆ ଜାତି ବୋଲାନ୍ତି । କିନ୍ତୁ ସେମାନେ ପର୍ଦ୍ଦା ଉତ୍ତୋଳନ କରି ଓ ବିଧବା ବିବାହରୂପ ମହାକଲ୍ୟାଣକର ଅନୁଷ୍ଠାନଟିର ମର୍ଯ୍ୟାଦା ସଦା ସର୍ବଦା ଅକ୍ଷୁଣ୍ଣ ରଖି ସୁଦ୍ଧା ଏବଂ ଏକହିଁ ସମାଜରେ ଏକହିଁ ପରିସ୍ଥିତି ଏବଂ ଏକହିଁ ବାତାବରଣରେ ବହୁକାଳ ବାସ କରି ସୁଦ୍ଧା ସମାଜସ୍ଥ ପର୍ଦ୍ଦାପରାୟଣ ଏବଂ ବିଧବାବିବାହପରିପନ୍ଥୀରୂପ ବ୍ରାହ୍ମଣ କ୍ଷତ୍ରିୟ ପ୍ରଭୃତି ଉଚ୍ଚ ଜାତିମାନଙ୍କ ପରି ସମାଜରେ ଉଚ୍ଚସ୍ଥାନ ଅଧିକାର କରିବାର ଯୋଗ୍ୟତା ଅର୍ଜନ କରିଥିବା ଏପର୍ଯ୍ୟନ୍ତ ଦେଖାଯାଇ ନାହିଁ । ଏହି ଉଚ୍ଚବର୍ଣ୍ଣମାନଙ୍କର ପାରମ୍ପରିକ ସଂସ୍କୃତି ତୁଳନାରେ ହାନିଆ ଜାତି-ମାନଙ୍କର କୌଣସି ଉତ୍କର୍ଷ ଥିଲା ପରି ଜଣାଗଲା ନାହିଁ କାହିଁକି ? ତେବେ ଭାରତବର୍ଷର ସାମାଜିକ ବାତାବରଣକୁ ଲକ୍ଷ୍ୟ କରି ଏହି ବିଧବାବିବାହ ଓ ପର୍ଦ୍ଦା ଉତ୍ତୋଳନ ପ୍ରଭୃତିକୁ ନବୀନ ସଂସ୍କାର ବୋଲି ଚଳାଇବାର ପ୍ରୟୋଜନୀୟତା କଅଣ ? କେଉଁ ଯୁକ୍ତିବଳରେ ଲୋକେ ଅମ୍ଳାନବଦନରେ ବଜ୍ରଗମ୍ଭୀରନିର୍ଘୋଷରେ ଘୋଷଣା କରୁଛନ୍ତି ଯେ ଏହାହିଁ ହେଉଛି ନବଯୁଗର ନବବିଧାନ ଏବଂ ଦେଶମାତୃକାଙ୍କର ଅଧଃପତନନିବାରଣର ଏକମାତ୍ର ଉପାୟ ଏବଂ ସନାତନପନ୍ଥୀ ଆର୍ଯ୍ୟ ସମାଜର ପଙ୍କିଳତା ବିଦୂରିତ କରି ସର୍ବବିଧ ଅଙ୍ଗଗ୍ଲାନି ଅପସାରଣକ୍ଷମ ବିଶଲ୍ୟକରଣୀ । ଏହି ଅମୋଘ ଭେଷଜଟି ଆମ୍ଭମାନଙ୍କ କଥାମହାବୀର-ମାନେ ସୁଦୂର ଗନ୍ଧମାଦନରୁ ଆହରଣ କରି ଆଣିଥିବାରୁ ସୁଦୀର୍ଘ ଗମସନ୍ଧିତା ଭଲ ଯୋଗରେ ପାଇଗଲୁ ବୋଲି ଭଗବାନଙ୍କୁ ଧନ୍ୟବାଦ ଦେବାର କଥା । କାକତାଳୀୟ ନ୍ୟାୟପରାୟଣ ଦେଶର ରାଜନୀତିକ୍ଷେତ୍ରର ମୁଖ୍ୟ ମୁଖ୍ୟ ବିଜ୍ଞାଣୀମାନେ ଏହି ଗୁଡ଼ିକହିଁ ସ୍ୱାଧୀନତାପ୍ରାପ୍ତିର

କାରଣ ବୋଲି ନିର୍ଦ୍ଦେଶ କରି ସେଗୁଡ଼ିକ ଯେ ସମାଜର ଅଗ୍ରଗତିର ସୁଗମ ପନ୍ଥା ବୋଲି ବର୍ଣ୍ଣାଇଛନ୍ତି ।

ଅବଶ୍ୟ ଏସବୁର ବିପକ୍ଷରେ କିଛି କହିବା ଶୋଭନୀୟ ନୁହେଁ । ବସ୍ତୁତଃ ବିଧବାବିବାହ ପକ୍ଷରେ ମହାତ୍ମା ବିଦ୍ୟାସାଗର ମହୋଦୟଙ୍କ ଯୁକ୍ତି ଓ ଶକ୍ତି ମଧ୍ୟ ଯଥା ସମୟରେ ନିୟୋଜିତ ହୋଇଥିଲା । ପର୍ଦ୍ଦାନସୀନ ଅସୂର୍ଯ୍ୟମ୍ପଶ୍ୟାଙ୍କ ଦୁର୍ଦ୍ଦଶା ଅବଲୋକନରେ ପର୍ଦ୍ଦାର ପକ୍ଷ ସମର୍ଥନଟା ଭାରି ଅବମୃଷ୍ୟକାରିତା ହେବ । କିନ୍ତୁ ଯେଉଁ ଯେଉଁ ସମାଜରେ ପର୍ଦ୍ଦାର ଉପସ୍ଥିତିର ନାମଗନ୍ଧ ନାହିଁ ସେଠାରେ ପର୍ଦ୍ଦା ଉତ୍ତୋଳନର କ୍ୟପଦେଶରେ ଘୋର ନିର୍ଲ୍ଲଜ୍ଜତାକୁ ବରଣ କରି ଅବାଧ ମିଳାମିଶାର ଦ୍ୱାର ଉନ୍ମୁକ୍ତ କରିବାଟା ଭଲ ହୋଇ ନାହିଁ ।

ଏଥିରୁ ଏହା ସ୍ପଷ୍ଟ ଜଣାପଡ଼ୁଛି ଯେ ପର୍ଦ୍ଦା ଉତ୍ତୋଳନ ପ୍ରଭୃତି ନବୀନ ଅନୁଷ୍ଠାନଗୁଡ଼ିକ ସଙ୍ଗରେ ସ୍ୱାଧୀନତାପ୍ରାପ୍ତି ବା ଦେଶର ଉନ୍ନତିର କୌଣସି କାର୍ଯ୍ୟ କାରଣ ସମ୍ବନ୍ଧ ନାହିଁ । ତାହା ହୋଇଥିଲେ ଏକହିଁ ସମାଜର ଅଙ୍ଗୀଭୂତ ହୋଇ ସମପରିସ୍ଥିତିରେ ରହି ମଧ୍ୟ ଏ ଦେଶର ହାଡ଼ିଅଜାତିଙ୍କର ଏଭଳି ଶୋଚନୀୟ ଦଶା ହୋଇ ନ ଥାଆନ୍ତା । କେବଳ ପାଶ୍ଚାତ୍ୟ ସଭ୍ୟତାର କେତୋଟି ବହିରଙ୍ଗ ଆବରଣସ୍ୱରୂପ ଅସାର ଅଂଶର ଅନୁକରଣରେ ଦେଶର ସମୂହ କଲ୍ୟାଣ ହେବାର ଆଶା ସୁଦୂରପରାହତ । ଦେଶର ପ୍ରକୃତ ମଙ୍ଗଳସାଧନ କରିବାର ଇଚ୍ଛା ଥିଲେ ଦେଶର ଅଧୋଗତିର ପ୍ରକୃତ କାରଣର ସନ୍ଧାନ କରିବାର ସମୟ ଜମାକ ଆସି ନାହିଁ । ଗୋଟାଏ ମହାଜାତିର ଘନିଷ୍ଠ ସମ୍ପର୍କରେ ଏତାବତ୍ କାଳ ରହି ଉକ୍ତ ଜାତିର କୌଣସି ସଦ୍‌ଗୁଣ ପ୍ରତି ଆମ୍ଭମାନଙ୍କର ଦୃଷ୍ଟି ଆକର୍ଷିତ ହୋଇ ନାହିଁ । ସେମାନଙ୍କର ହୃଦୟଦୌର୍ବଲ୍ୟକୁହିଁ ଆମ୍ଭେମାନେ ଅମୂଲ୍ୟ ଅବଦାନରୂପେ ବରଣ କରି ଅସ୍ଫାଳନ କରୁଅଛୁଁ ମାତ୍ର ।

ସେ ଦେଶର ଜନସାଧାରଣର ବ୍ୟବହୃତ ବହୁମୂଲ୍ୟ ପୁସ୍ତକପୂର୍ଣ୍ଣ ପାଠାଗାରମାନଙ୍କରେ କୌଣସି ତାଲା ଚାବିର ବ୍ୟବସ୍ଥା ନାହିଁ, କ

ରଖୁଥିଲ ଭଳି ରହିବାପାଇଁ ଉପଯୁକ୍ତ ହୁଏ ନାହିଁ । ତଥାପି ପାଠାଗାରର କୌଣସି ପୁସ୍ତକର ହରଣଚୂରି ହେବାର ଶୁଣାଯାଇ ନାହିଁ ; ବା କୌଣସି ପୁସ୍ତକର ଅଙ୍ଗବୈକଲ୍ୟ ମଧ୍ୟ ହେବାର ଦେଖାଯାଏ ନାହିଁ । ଆମ୍ଭେମାନେ ହୁଏନ୍‌ସାଙ୍କ ସମୟର ଭାରତର କଥା ଭାବି ମନେ ମନେ ଗର୍ବ କରିଥାଉଁ ଯେ ପୂର୍ବ ଭାରତ ଏପରି ସତ୍ୟସନ୍ଧ ଥିଲା ଯେ ସେଥିରେ ଗୃହମାନଙ୍କରେ ଚାବି ତାଲାର ବ୍ୟବହାର ନ ଥିଲା । କିନ୍ତୁ ଆଧୁନିକ ଭାରତର ସତ୍ୟନିଷ୍ଠାର ପରାକାଷ୍ଠା ଦେଖି ଏସବୁ କଥାରେ ବିଶ୍ୱାସ କରିବା କଠିନ ହୋଇପଡ଼େ । ଗ୍ରାମର ସାଧାରଣ ଯିବା ଆସିବା ରାସ୍ତାରେ ପାଣି ଛିଡ଼ା ହୋଇ କାଦୁଅ ହୋଇଯିବାରୁ ଜନୈକ ଭଦ୍ରଲୋକ ସାଧାରଣ ଗମନାଗମନର ସୁବିଧା ଦୃଷ୍ଟିରେ କେତୋଟି ଇଷ୍ଟକଖଣ୍ଡ ଆଣି ସେ କର୍ଦ୍ଦମମୟ ରାସ୍ତାରେ ସ୍ଥାପନପୂର୍ବକ ଯିବା ଆସିବାର କେତେକଟା ସୁବିଧା କରି ଦେଲେ । କିନ୍ତୁ ରାତି ନ ପାହୁଣୁ ଦେଖାଗଲା, ଇଟା କେତେଖଣ୍ଡ ହରଣଚୂରି ହୋଇଯାଇଛି । ଏହା ସଙ୍ଗରେ ତୁଳନା କରି ଦେଖାଯାଉ, ପାଶ୍ଚାତ୍ୟ ଜଗତରେ ରେଲ ଏବଂ ଜାହାଜର ପ୍ରକୋଷ୍ଠମାନଙ୍କର ବହୁମୂଲ୍ୟ ସିଗାରେଟ୍ କେସ୍ ସମେତ ସିଗାରେଟ୍ ଯାତ୍ରୀମାନଙ୍କ ବ୍ୟବହାର ପାଇଁ ରଖା ହୋଇଥାଏ; କିନ୍ତୁ ଏପରି ଦୁଷ୍ପ୍ରାପ୍ୟ ଦିନରେ ମଧ୍ୟ କେହି ସେଗୁଡ଼ିକ ଅପହରଣ କରିବାର ଶୁଣାଯାଏ ନାହିଁ । ଏହି ଜାତୀୟତାବୋଧହିଁ ସେମାନଙ୍କର ଉନ୍ନତିର ପ୍ରଧାନତମ କାରଣ ଅଟେ । ପୁଣି ଖବରକାଗଜ ବିକ୍ରେତା ରାସ୍ତାର ଛକରେ ଖବରକାଗଜ ଗୁଡ଼ାଏ ଗଦା କରି ରଖିଯାଏ । କ୍ରେତାମାନେ କାଗଜର ଉଚିତ ମୂଲ୍ୟ ଥୋଇ ଦେଇ କାଗଜ ଖଣ୍ଡିଏ ଖଣ୍ଡିଏ ନେଇ ଯାଆନ୍ତି । ଆମ ଦେଶର ନ ଦେଖିଲା ଲୋକେ ଏହାକୁ ଗୋଲ୍‌ଖଟିର ଗଳ୍ପ ମନେ କରି ଉପହାସ କରି ବସିବେ । କାରଣ ଆମ ଦେଶର କଲେଜରେ ଉଚ୍ଚଶିକ୍ଷା ପାଉଥିବା ବଡ଼ଘରର ପୁଅମାନେ କୁଆଡ଼େ ସାଇକଲ ଚୋରିରେ ଦକ୍ଷତା ଅର୍ଜନ କରି ଦପ୍ତରୀଙ୍କ ଚର୍ମ ପାଦୁକାରେ ମଧ୍ୟ ମହାଯୃତା ବୁଦ୍ଧି ପ୍ରୟୋଗ କରିଥିବାର ଶୁଣାଯାଏ । ପୁଣି କଲେଜର Electric Ball ଚୋରି କରିବାର କ୍ଷିପ୍ରହସ୍ତତା ପରେ ରାଜ୍ୟର ଶାସନ

ନିମନ୍ତ୍ରଣରେ ନିଯୁକ୍ତ ହେବାର ସ୍ୱଚକ୍ଷୁରେ ଦେଖି କେଉଁ ଜାତ୍ୟାପ୍ରାଣ କାହାର ବା ପ୍ରାଚୀନ ସ୍ୱାର୍ଥାନ୍ୱେଷୀସୁଲଭ ଉକ୍ତପ୍ରୀତିର ଉଦ୍ରେକ ନ ହେବ ? ଏପରି ସ୍ଥଳରେ ଆମର ଜାତୀୟ ଚରିତ୍ରର ଅଶେଷ ତ୍ରୁଟି ପ୍ରତି ଭ୍ରୂକ୍ଷେପ ନ କରି ଏବଂ ସେମାନଙ୍କର ନିଖିଳ ସଦ୍‌ଗୁଣସମୂହ ପ୍ରତି ଘୋର ଉଦାସୀନ ହୋଇ ସେମାନଙ୍କର ଚରିତ୍ରର ଦୋଷଗୁଡ଼ିକ ପ୍ରତି, ସେମାନଙ୍କର ହୃଦୟ-ଦୌର୍ବଲ୍ୟ ପ୍ରତି ଓ ସେମାନଙ୍କର ଭ୍ରାନ୍ତଧାରଣାମୂଳକ ବହିରଙ୍ଗ ଆଚାର ବ୍ୟବହାର ପ୍ରତି ଏପରି ଆକୃଷ୍ଟ ହୋଇ ପଡ଼ିବାଟା କେବଳ ଜାତୀୟତା-ବୋଧର ଅଭାବରୁହିଁ ଆମ୍ଭମାନଙ୍କ ପକ୍ଷରେ ସମ୍ଭବ ହୋଇ ପଡ଼ୁଛି । ଏହା ସ୍ୱତଃସିଦ୍ଧ କଥା ଯେ ବୟଃସନ୍ଧି ସମୟଟା ମନୁଷ୍ୟଜୀବନରେ ଗୋଟାଏ ଘାଟିବେଳ । ଉକ୍ତ ସଙ୍କଟାପନ୍ନ ଅବସ୍ଥାଟା କଟି ନ ଯିବାଯାଏ ଓ ଜୀବନର ସେହି ସାତକୋଶିଆ ଗଣ୍ଡଟା ପାରି ନ ହେବାଯାଏ ପ୍ରତି ପଦନି-କ୍ଷେପରେ ଜୀବନତରୀର ବିପଦର ଆଶଙ୍କା ଥାଏ । ସାବଧାନ ନ ହେଲେ ପ୍ରାଣସଙ୍କଟ ଅନିବାର୍ଯ୍ୟ ହୋଇପଡ଼େ । ବସ୍ତୁତଃ ପାରମାର୍ଥିକ ଆଧ୍ୟାତ୍ମିକ, ନୈତିକ ଏବଂ ସାମାଜିକ କାରଣ ସବୁକୁ ଦୂରରେ ରଖି, କେବଳ ଭୌତିକ ବା ଦୈହିକ କାରଣରୁ ପ୍ରାପ୍ତବୟସ୍କ ଯୁବକ ଯୁବତୀ-ମାନଙ୍କର ଅବାଧ ମିଳାମିଶାଟା ଏକାବେଳକେ ନିଷିଦ୍ଧ; ସୁତରାଂ ପର୍ଦ୍ଦା ଉତ୍ତୋଳନର ବାହାନାରେ ଯେପରି ଦୋଷାବହ ସଙ୍ଗସୁଖର ପ୍ରଶ୍ରୟପ୍ରଦାନ କରିବାହିଁ ଭାରି ଦୂଷଣୀୟ ହୋଇ ପଡ଼ୁଅଛି ଏବଂ ତଦ୍ଦ୍ୱାରା ଦେଶର ଓ ମହାମଙ୍ଗଳ ସାଧନର ସୂତ୍ରପାତ ହେଉଅଛି, ବୁଝିବା କଠିନ । "ଏ ଜଗତ ଜଗତଙ୍କର ମତ, ଅଳପ ଲୋକେ ବିପରୀତ ।" କିନ୍ତୁ ଶୁଣାଯାଏ, କେହି କେହି ବନ୍ଧୁ କନ୍ୟା ଜନକ ଜନନୀମାନେ ଏପରି ସ୍ୱଚ୍ଛନ୍ଦ ବିଳାସକୁ ପ୍ରାଚୀନ ସ୍ୱୟମ୍ବରପ୍ରଥାର ଗୋଟିଏ ଯଥୋଚିତ ନବୀନ ସଂସ୍କରଣ ବିଚାରି ଆତ୍ମତୃପ୍ତି ବୋଧ କରୁଛନ୍ତି । ସେମାନେ ନିଶ୍ଚୟ ଏହାର ସପକ୍ଷରେ ନାନା ଯୁକ୍ତି ତର୍କ ବାଢ଼ି ବସିବେ । କିନ୍ତୁ ଭାବି ଦେଖିବାର ସମୟ ଆସିଲାଣି । ଏହାର ପ୍ରକୃତ ସ୍ଥଳରେ ପ୍ରଚଳିତ ପର୍ଦ୍ଦାପ୍ରଥାଟା ଯେପରି ଭୟାବହ ଥିଲା, ଆଧୁନିକ ଅବାଧ ମିଳାମିଶାଟା ସେହିପରି ଦୋଷାବହ ହୋଇ

ପଡ଼ୁଅଛନ୍ତି । ସଂସ୍କାରକମାନଙ୍କର ଏହା ଅଭିପ୍ରେତ ନ ଥିଲା, କିନ୍ତୁ କାଳସ୍ୟ କୁଟିଳା ଗତିଃ । ଦର୍ପ ଗଢ଼ୁ ଗଢ଼ୁ ବାନର ଗଢ଼ି ବସିଲେ ସିନା ।

ଏପରି ସଂସ୍କାରପ୍ରିୟ ମନୋବୃତ୍ତିର ବ୍ୟପଦେଶରେ ଅନ୍ୟ କୌଣସି ଦୁରଭିସନ୍ଧିର ସନ୍ଧାନ ମଧ୍ୟ ମିଳି ପାରେ । ଭାରତକୁ ସଭ୍ୟଜଗତର ସମକକ୍ଷ କରିବାକୁ ହେବ । ସୁତରାଂ ଭାରତ ତାହାର ନିଜର ପୁରୁଣାକାଳିଆ ଆର୍ଯ୍ୟ ସଭ୍ୟତାକୁ ବର୍ଜନ କରି ପାଶ୍ଚାତ୍ୟ ଦେଶର ଭୂତାବିଷ୍ଟ ସଭ୍ୟତାକୁ ଅର୍ଜନ କରିବାକୁ ବାଧ୍ୟ । ଏ ଦିଗରେ ବହୁଳ ଚେଷ୍ଟା ହୋଇ ସାରିଲାଣି । ଆଚାର ବ୍ୟବହାର, ପରିଧାନ ପ୍ରଭୃତିରେ ବିଦେଶୀ ଛାୟା ପଡ଼ି ସାରିଲାଣି । ଆମ୍ଭେମାନେ ଓଡ଼ିଆ ବୋଲାଇବାକୁ ଲଜ୍ଜାବୋଧ କରୁଁ, ଓଡ଼ିଆ ଭାଷାରେ କଥା କହିବାକୁ ଘୃଣା କରୁଁ । ଯେଉଁମାନେ କିଛିଦିନ ଗଙ୍ଗାକୂଳରେ ବାସ କରି ଫେରନ୍ତି, ସେମାନେ ମାତୃଭାଷାଟା ଭୁଲିଗଲେ ବାହାନା କରି ଗୋଟାଏ କିମ୍ଭୂତ-କିମାକାର ଦୋଭାଷୀ ବ୍ୟବହାର କରି ନିଜକୁ ଧନ୍ୟ ମଣନ୍ତି । ପୁଣି ଯେଉଁମାନେ କଳାପାଣି ସେପାରିରେ ଅଢ଼ାଇଦିନ ମାତ୍ର ରହି ଅମେଧ୍ୟସେବନ ପୂର୍ବକ ଅସାଧ୍ୟ ସାଧନ କରି ଫେରନ୍ତି, ସେମାନଙ୍କୁ ସାହେବ ନ କହି ଶ୍ରୀଯୁକ୍ତ କହିଲେ ଚିଙ୍ଗୁଡ଼ି ପରି ନାଚନ୍ତି । ତେଣୁ ସାହେବ ହେବା ହିଁ ସେମାନଙ୍କ ଜୀବନର ସର୍ବଶ୍ରେଷ୍ଠ ଆଦର୍ଶ ବା ବାଞ୍ଛିତତମ ପଦବୀ । ସେମାନେ ଉତ୍କଳର ପ୍ରତ୍ୟେକ ଆଚାର ବ୍ୟବହାର, ଧର୍ମ, କର୍ମ, ରୀତି, ନୀତି ପ୍ରଭୃତିକୁ ଅବଜ୍ଞାଚକ୍ଷୁରେ ଦେଖନ୍ତି । ଏପରିକି ଓଡ଼ିଶାର ସାହିତ୍ୟ ବା କବିତା ପ୍ରତି ସେମାନଙ୍କର ଆସ୍ଥା ଖୁବ୍ କମିଯାଏ । ତନ୍ମଧ୍ୟରୁ କେହି କେହି ଉପେନ୍ଦ୍ରଭଞ୍ଜ ପ୍ରଭୃତି ପ୍ରାଚୀନ କବିଙ୍କୁ ଭାରି ଅଶ୍ଳୀଳ ଓ ଆଦିରସାତ୍ମକ ବୋଲି ବିଦ୍ରୂପ କରି ନାସିକା କୁଞ୍ଚନ କରନ୍ତି । ବାସ୍ତବିକ ବିଶୁଦ୍ଧ ନୀତିମତ୍ତା ଏବଂ ବିମଳ ଚରିତ୍ରବତ୍ତା ହିଁ ଯାହାଙ୍କ ଜୀବନର ଏକମାତ୍ର ବୀଜମନ୍ତ୍ର, ସେମାନେ ଆଦିରସାତ୍ମକ କବିତା ପ୍ରତି ଟିକିଏ ଅସନ୍ତୁଷ୍ଟ ହେଲେ ହୋଇ ପାରନ୍ତି, କିନ୍ତୁ ଯେଉଁମାନେ ଦେଶବିଦେଶର ମୁକୁଳିତଯୌବନା ସ୍ୱଳ୍ପାବୃତାପଘନାମାନଙ୍କୁ ସ୍ୱଚ୍ଛନ୍ଦ-

ବାହାରପରିସ୍ଥିତି ଦେଖି ସ୍ୱଦେଶରେ ତଦ୍ରୂପ ରୂପଲାବଣ୍ୟ ସନ୍ଦର୍ଶନ-ଲାଳସା ଚରିତାର୍ଥ କରିବାର ସୁବର୍ଣ୍ଣ ସୁଯୋଗର ଅଭାବ ବୋଲି ଝୁରି ହୁଅନ୍ତି, ସେମାନେ ବା କିପରି ଆଦିରସାତ୍ମକ କେତୋଟି ଶବ୍ଦଯୋଜନାରେ ବିଚଳିତ ହୋଇପଡ଼ନ୍ତି, ବୁଝିବାହିଁ କଠିନ । ବସ୍ତୁତଃ ମନସ୍ତତ୍ତ୍ୱବିଦ୍‌ମାନେ କହିବେ ଯେ ଯାହା କେବଳ ଶ୍ରୁତିବେଦ୍ୟ, ତାହାଠାରୁ ଯାହା ଦର୍ଶନେନ୍ଦ୍ରିୟଗ୍ରାହ୍ୟ, ତାହାର ପ୍ରଭାବ ମନୁଷ୍ୟର ମନ ଓ ହୃଦୟ ଉପରେ ଢେର ବେଶୀ । ସହସ୍ର ଶ୍ରବଣଠାରୁ ଏକମାତ୍ର ଦର୍ଶନହିଁ ବଳବତ୍ତର । ସୌନ୍ଦର୍ଯ୍ୟ ଥରେ ମାତ୍ର ଚକ୍ଷୁରିନ୍ଦ୍ରିୟଗ୍ରାହ୍ୟ ହେଲେ ନୟନରେ ଅଞ୍ଜନ ପରି ଲାଗି ରହେ । ତେଣୁ କବି କହିଲେ—ଲାଗି ରହିଲା ଆଖି ସଖି ଶିଖି-ଚୂଳରେ । ତାହାହେଲେ ଉପେନ୍ଦ୍ରଭଞ୍ଜଙ୍କ ଆଦିରସାତ୍ମକ ଶବ୍ଦଯୋଜନା କେବଳ ମାତ୍ର ଶ୍ରବଣେନ୍ଦ୍ରିୟଗ୍ରାହ୍ୟ ହେବାରୁ ଚକ୍ଷୁରିନ୍ଦ୍ରିୟଗ୍ରାହ୍ୟ ଆଦିରସବହୁଳ ଏବମ୍ଭୂତ ଅନାବୃତ-ରୂପଲାବଣ୍ୟ ଦୃଶ୍ୟାବଳୀ ତୁଳନାରେ କିଛିହିଁ ନୁହେଁ କହିଲେ ଚଳେ । କିନ୍ତୁ ଭୂତାବିଷ୍ଟ ସଭ୍ୟତାର କେନ୍ଦ୍ରସ୍ଥଳୀ ମହାନଗରୀମାନଙ୍କରେ ତାଦୃଶ ଦୃଶ୍ୟକାବ୍ୟର ଯେ କେତେ ରକମର ଅଭିନୟ ହେଉଅଛି, ତାହା ଯେ ଦେଖିଛି ସେହି କେବଳ ଜାଣେ । ପ୍ରଥମତଃ ସେଠା ବିଦେଶରୁ ଆମଦାନୀ ହୋଇ ବର୍ତ୍ତମାନ ପ୍ରତ୍ୟେକ ପୁରପଲ୍ଲୀ ନଗରଖଣ୍ଡରେ ସଂକ୍ରାମିତ ହୋଇ ପଡ଼ୁଅଛି ଏବଂ ଏହାକୁ ଅସ୍ମାନଙ୍କର ଅଗ୍ରଗଣ୍ୟ ପରିବ୍ୟୁହ ଓ ପରମାପଦ ସ୍ୱର ସମସ୍ତେ ଅବନତ ମସ୍ତକରେ ଅଭିନନ୍ଦନ ଜଣାଉଛନ୍ତି ।

ଏଠାରେ ଟିକିଏ ବିଚାର କରି ଦେଖିବା ଉଚିତ, ସେମାନେ କେଉଁ ଉଦ୍ଦେଶ୍ୟରେ କେବଳ ଶ୍ରୁତିବେଦ୍ୟର ସଙ୍ଗୀତର ଆଦିରସକୁ ବିଷ-ଦୃଷ୍ଟିରେ ଦେଖି ଓ ତାହାର ପ୍ରଭାବ ହୃଦୟ ଉପରେ ଭାବି କ୍ଷୀଣ, ଏହା ଜାଣି ଶୁଣି ସୁଦ୍ଧା ଉପେନ୍ଦ୍ରଭଞ୍ଜଙ୍କ ଉପରେ ବିଦ୍ୱେଷ ବିଷବର୍ଷଣ କରୁଛନ୍ତି, କିନ୍ତୁ ଦର୍ଶନେନ୍ଦ୍ରିୟଗ୍ରାହ୍ୟ ଉକ୍ତବିଧ ବୀଭତ୍ସ ଦୃଶ୍ୟାବଳୀର ଆଦିରସାତ୍ମକ ମାରାତ୍ମକ ପ୍ରଭାବକୁ ସାଦରସମ୍ବର୍ଦ୍ଧନା ଜଣାଇ ସ୍ୱଦେଶମାତୃକାଙ୍କ ପୂଜାପୀଠରେ ତାହାର ସୁଦୃଢ଼ ଅଭିନୟର ବ୍ୟବସ୍ଥା କରିବାକୁ

ବିଷପରିକର ହୋଇ ପଡ଼ିଛନ୍ତି, ତାହାର ଏକମାତ୍ର କାରଣ ଆମ୍ଭମାନଙ୍କର ଜାତୀୟତାବୋଧର ପୂର୍ଣ୍ଣ ଅଭାବ । ଆମ୍ଭେମାନେ ଭାରତର ଗୌରବାନ୍ୱିତ ଅତୀତକୁ ବିସ୍ମୃତିର ଅତଳସ୍ପର୍ଶୀ ଗହ୍ୱର ଗହ୍ୱରମଧ୍ୟରେ ନିକ୍ଷେପ କରି ସ୍ୱାଧୀନ ଭାରତକୁ ପାଶ୍ଚାତ୍ୟ ଦେଶମାନଙ୍କର ଭୁକ୍ତାବଶିଷ୍ଟ ସଭ୍ୟତାର ଛାଞ୍ଚରେ ଢାଳିବାକୁ ବସିଅଛୁଁ । ସେଥିପାଇଁ ବୈଦେଶିକ ସଭ୍ୟତାର ସର୍ବବିଧ ହେୟାଂଶଗୁଡ଼ିକ ସର୍ବପ୍ରଥମ ଆମଦାନୀ କରିବାରେ ବ୍ୟସ୍ତ ହୋଇ ପଡ଼ିଅଛୁଁ । ସେମାନଙ୍କ ନିଖିଳ ସଦ୍‌ଗୁଣରାଶିର କଣାଏ ସୁଦ୍ଧା ଗ୍ରହଣ କରିବାର କ୍ଷମତା ନ ଥିବାରୁ ସେମାନଙ୍କ ଚରିତ୍ରର ସର୍ବବିଧ ପତନ, ସ୍ଖଳନ, ତ୍ରୁଟିଗୁଡ଼ିକର ଅନୁକରଣ କରିବାରେ ଲାଗି ପଡ଼ିଅଛୁଁ । ଭୌତିକ ସଭ୍ୟତାର ହେୟାଂଶ ସଙ୍ଗରେ ଆଧ୍ୟାତ୍ମିକ ସଭ୍ୟତାର ଶ୍ରେୟାଂଶର ସମନ୍ୱୟ କାଠିକର ପାଠ ; ତେଣୁ ସେ ଦିଗରେ ଚେଷ୍ଟା କରି ଭଗ୍ନ-ମନୋରଥ ଓ ବିଫଳପ୍ରଯତ୍ନ ହୋଇ ସମାଜ ସଂସ୍କାରକମାନେ ଆମ୍ଭମାନଙ୍କ ଆର୍ଯ୍ୟସଭ୍ୟତାର ସାରାଂଶ ବର୍ଜନପୂର୍ବକ ପାଶ୍ଚାତ୍ୟ ସଭ୍ୟତାର ଅସାରାଂଶରେ ମୁଗ୍ଧ ହୋଇ ଘୋର ବୁଦ୍ଧିବିପର୍ଯ୍ୟୟର ପରିଚୟ ପ୍ରଦାନ କରୁଅଛନ୍ତି । ଏପରି ମଢ଼ିଛନ୍ତି ବିପ୍ଳବବାଦୀମାନେହିଁ ଆର୍ଯ୍ୟସଭ୍ୟତାର ମୂଳୋଚ୍ଛେଦ କରିବାକୁ ଉଦ୍ୟତ ।

ଯେଉଁ ଜାତିର ବା ଦେଶର ଅତୀତ ଘୋରତମସାଚ୍ଛନ୍ନ ଏବଂ ବର୍ବରତାର ଅନ୍ଧକୂପରୁ ଯେଉଁମାନେ ସଦ୍ୟ ମସ୍ତକୋତ୍ତୋଳନ କରି ପଦାକୁ ବାହାରିଛନ୍ତି ମାତ୍ର, ସେମାନଙ୍କ ପକ୍ଷରେ ନାହିଁ ମାମୁଁଠାରୁ କଣା ମାମୁଁ ଭଲ । ସେମାନେ ନିଜର ଅଭିରୁଚି ଅନୁସାରେ ଯେ କୌଣସି ନବସଭ୍ୟତାଲୋକକୁ ବରଣ କରି ନେଲେ ନେଇ ପାରନ୍ତି ଏବଂ ଉକ୍ତ ସଭ୍ୟତାର ଅନୁବର୍ତ୍ତନରେ ନିଜର ଭବିଷ୍ୟତ୍ ଜୀବନର ସୁଗମ-ସରଣୀ ନିର୍ବାଚନପୂର୍ବକ ନାନା ଉତ୍କର୍ଷ ସଂସାଧନ କଲେ କରି ପାରନ୍ତି । କିନ୍ତୁ ଯେଉଁ ଆର୍ଯ୍ୟାବର୍ତ୍ତର ଗୌରବମୟ ଅତୀତର ସୁବର୍ଣ୍ଣମହିମା ଅଦ୍ୟାପି ପାଶ୍ଚାତ୍ୟ ଦେଶରେ ମଧ୍ୟ ଭୟ ଓ ଭକ୍ତିର ସଞ୍ଚାର କରୁଅଛି ଏବଂ ଯାହାର ସୁଯୋଗ୍ୟ ପୃଷ୍ଠପୋଷକରୂପେ ମହାତ୍ମାଜୀଙ୍କୁ ସସାଗରାଧରା ସାଦର

ସମ୍ବର୍ଦ୍ଧନା ଜଣାଇ ମହାମାନବରୂପେ ଅଭିନନ୍ଦନ କରୁଅଛି ଏବଂ ସେଇଁ ଭୂତାବସ୍ଥ ପାଶ୍ଚାତ୍ୟ ସଭ୍ୟତା ସଙ୍ଗରେ ଆର୍ଯ୍ୟାବର୍ତ୍ତର ଆଧ୍ୟାତ୍ମିକ ସଭ୍ୟତାର ଧାତୁଗତ ବୈଷମ୍ୟ ସତ୍ତ୍ୱେ ବରଂ, ସେହି ବିଦେଶୀ ସଭ୍ୟତାର ଛାଞ୍ଚରେ ସ୍ୱାଧୀନ ଭାରତକୁ ପୁନର୍ଗଠିତ କରିବାର ଅପଚେଷ୍ଟା ଯେ ଘୋର ଅବିମୃଷ୍ୟକାରିତାର ପରାକାଷ୍ଠା ହେବ, ତାହା ବୋଲିବା ବାହୁଲ୍ୟ ମାତ୍ର । ତେବେ ଆଧୁନିକ ଜାତୀୟ ଚରିତ୍ରର ଦୁରପନେୟ କଳଙ୍କକାଳିମା ସବୁ ଧୋଇବାକୁ ହେଲେ ପାଶ୍ଚାତ୍ୟ ସଭ୍ୟତାର ସାରାଂଶର ଅନୁବର୍ତ୍ତନ କରିବାହିଁ ସମୀଚୀନ । ସେମାନଙ୍କ ସବଳ ଓ ସତେଜ ଜାତୀୟତା-ବୋଧ ଆମ୍ଭମାନଙ୍କ ପକ୍ଷରେ ଗୋଟିଏ ବହୁମୂଲ୍ୟ ଅବଦାନ ଅଟେ । ସେହି ଦେଶାତ୍ମବୋଧରୂପ ବ୍ୟକ୍ତିଗତ ସ୍ୱାର୍ଥତ୍ୟାଗ ଆମ୍ଭମାନଙ୍କର ଜାତୀୟ ଚରିତ୍ରରେ ସଂକ୍ରାମିତ ନ ହେବାଯାଏ ସଦ୍ୟଲବ୍ଧ ସ୍ୱାଧୀନତା-ରତ୍ନର ମୂଲ୍ୟ ଅବଧାରଣ କରିବା ଆମ୍ଭମାନଙ୍କ ପକ୍ଷରେ ଅସମ୍ଭବ ହୋଇ ପଡ଼ିଅଛି । ଆମ୍ଭେମାନେ ସ୍ୱାଧୀନତାକୁ ବ୍ୟକ୍ତିଗତ ସ୍ୱତନ୍ତ୍ରତା ବା ଉଚ୍ଛୃଙ୍ଖଳତା ମନେ କରି ବସିଲୁଣି । ନୈତିକ ବନ୍ଧନ, ଆଧ୍ୟାତ୍ମିକ ବନ୍ଧନ, ସାମାଜିକ ବନ୍ଧନ ଏବଂ ପାରମାର୍ଥିକ ବନ୍ଧନ ପ୍ରଭୃତି ସକଳ ପ୍ରକାର ବନ୍ଧନକୁ ସ୍ୱାଧୀନପରିପନ୍ଥୀ ଶୃଙ୍ଖଳରୂପେ ମୂଳୋଚ୍ଛେଦ କରି ଘୋର ଉଚ୍ଛୃଙ୍ଖଳା ବରଣ କରି ବସିଲୁଣି । ସେଥିପାଇଁ ଆର୍ଥିକ, ପାରମାର୍ଥିକ, ଦୈହିକ, ମାନସିକ ତଥା ଆଧ୍ୟାତ୍ମିକ ସକଳ ଦିଗରେ ଆମ୍ଭମାନଙ୍କର ସ୍ୱେଚ୍ଛାଚାରିତା ଧୈର୍ଯ୍ୟର ସୀମା ଲଙ୍ଘନ କରିବାକୁ ବସିଲାଣି । ପ୍ରତ୍ୟେକ ପ୍ରତ୍ୟେକର ମୁଣ୍ଡରେ ଚଟା ଭାଙ୍ଗିବାରେ ବ୍ୟସ୍ତ । ଗଣତନ୍ତ୍ରର ନାମମାତ୍ର ଅଭ୍ୟୁଦୟରେ ପୁଞ୍ଜିପତିମାନଙ୍କର ଶୋଷଣପଟୁତାର ଟିକେ ହେଲେ ହ୍ରାସ ହୋଇ ନାହିଁ । ଅନ୍ନଚିନ୍ତା, ବସ୍ତ୍ରଚିନ୍ତା, ଉଦ୍ବାସ୍ତୁମାନଙ୍କର ବସତିଚିନ୍ତା ପ୍ରଭୃତି ଅଶେଷ ଚିନ୍ତାରେ ଆମ୍ଭେମାନେ ନିଷ୍ପେଷିତ ଓ ନିପୀଡ଼ିତ ହେଉଥିବା ସ୍ଥଳରେ ସମ୍ପାଦକ ମହାଶୟଙ୍କ କବିଦୃଷ୍ଟି ପଡ଼ିଲ ଯାଇଁ ପ୍ରାପ୍ତବୟସ୍କ ଯୁବକମଣ୍ଡଳୀର ଲୋଲୁପ ଦୃଷ୍ଟି ସମ୍ମୁଖରେ କ୍ରୀଡ଼ା-କୌତୁକପରାୟଣା ସ୍ୱଚ୍ଛ-ସୂକ୍ଷ୍ମ-ଚୀନାଂଶୁକପରିଧାନା ସଦ୍ୟ-ସମ୍ପ୍ରାପ୍ତ-

ଯୌବନା ମଦାଳସାମାନଙ୍କର ରୂପଲାବଣ୍ୟମଣ୍ଡିତା ବଳଷ୍ଠ ଅଙ୍ଗଲତା ଉପରେ ଏବଂ ତାହାର ଅଭାବରେ ଆମ ଦେଶର ଅର୍ଦ୍ଧାଶନ ବା ଅନଶନରେ ଅସ୍ଥିକଙ୍କାଳସାର ଓ ଶତଗ୍ରନ୍ଥିଲ ଜରାଜୀର୍ଣ୍ଣ କନ୍ଥା-ପରିହିତା ଅସୂର୍ଯ୍ୟଂପଶ୍ୟାଙ୍କର ଶାରୀରିକ, ମାନସିକ ତଥା ନୈତିକ ଅଧଃପତନର ମୁଖ୍ୟତମ କାରଣ ବୋଲି ଘୋଷଣା କରାଗଲା । ପୁଣି କୌଣସି ଉଦ୍‌ଭ୍ରାନ୍ତ, ପ୍ରେମିକ ତାଙ୍କର ସ୍ୱାଭାବସିଦ୍ଧ ପ୍ରେମାକାଂକ୍ଷାରୁ କୌଣସି ପାଶ୍ଚାତ୍ୟ ଦେଶଖଣ୍ଡରେ ଉଚ୍ଛ୍ୱସିତଯୌବନାମାନଙ୍କର ଉନ୍ମୁକ୍ତ ରାଜ-ପଥର ମୁକ୍ତବାତାବରଣରେ ସ୍ୱଚ୍ଛନ୍ଦ ବିଳାସଲୀଳା ଦେଖି ତାହାର ଅଭାବରେ ଆମ୍ଭମାନଙ୍କ ଦେଶର ସୌନ୍ଦର୍ଯ୍ୟହାନିର ଗୋଟାଏ ବିଶିଷ୍ଟ କାରଣ ବୋଲି ଭାରି ଦୁଃଖ ପ୍ରକାଶ କଲେ । ତେବେ କେବଳ ସେଥିପାଇଁ କଅଣ ଆମ ଦେଶର ଅପ୍ରଶସ୍ତ ରାଜପଥଗୁଡ଼ାକ ଭାରି ସଙ୍କୀର୍ଣ୍ଣ ଧୂଳି କର୍ଦ୍ଦମ ପ୍ରଭୃତି ଆବର୍ଜନାରେ ସଦା ସର୍ବଦା ପୁରାଣମହିମାରେ ଚିର-ବିଭ୍ରାଜିତ ରହିଅଛି ? ଏବଂ ଗ୍ରାମରୁ ଗ୍ରାମାନ୍ତରକୁ ଯିବାର ପ୍ରକୃଷ୍ଟ ଗନ୍ତବ୍ୟ ପଥର ଅଭାବ ଥିବାରୁ କୌଣସି କୌଣସି ସ୍ଥଳରେ ଚତୁର୍ମାସ୍ୟା ଗୃହମାସ-ଯାକ ଏକ ଗ୍ରାମରୁ ଅନ୍ୟ ଗ୍ରାମକୁ ଯିବାର ଏକାବେଳକେ ଅସମ୍ଭବ ହୋଇଅଛି । ତେଣୁ ବୋଧହୁଏ ଜନୁରାଣ ଏବଂ ତାଙ୍କର ପିଅଦା ପଢ଼ିଆରୀମାନେ ମଧ୍ୟ ସେ ସବୁ ଗ୍ରାମକୁ ସହଜରେ ଯିବା ଆସିବା କରି ପାରୁ ନ ଥିବାରୁ, ମେଲେରିଆର ପ୍ରଭୃତି ପ୍ରକୋପକାଳରେ ମଧ୍ୟ ସେଠାରେ ଡାକ୍ତରଖାନା ବ୍ୟବସ୍ଥା ପ୍ରତି ଅଧୁନିକ ଭାରି ହିସାବୀ ସରକାର ବାହାଦୁର ଆସ୍ଥା ପ୍ରଦାନ କରି ନାହାନ୍ତି ବୋଲି କେହି କେହି ଯୁକ୍ତି ବାଢ଼ି ବସନ୍ତି । ବାସ୍ତବିକ୍ ପଲ୍ଲୀମଙ୍ଗଳ ସମିତିର ଅନୁକୂଳରେ ନାରୀସଙ୍ଘସଦନର ଗୋଟିଏ ସ୍ୱେଚ୍ଛାସେବିକାବାହିନୀ ଯଦି ଦୟାପରବଶ ହୋଇ ପଦବ୍ରଜରେ ଉତ୍କଳର ଏବଂବିଧ ପଲ୍ଲୀଗୁଡ଼ିକ ଥରେ ପରିକ୍ରମା କରି ଆସନ୍ତେ ବିଶେଷତଃ ବର୍ଷାକାଳରେ ତାହାହେଲେ ସର୍ବବିଧ ଦୁଃଖ ଦୈନ୍ୟ, ଆଧିବ୍ୟାଧି ଲୁଣ୍ଠିତତା, ବୀଭତ୍ସତା ପ୍ରଭୃତି ବହୁରିତ ହୋଇ ସେଗୁଡ଼ିକ ପ୍ରତ୍ୟେକେ ଗୋଟିଏ ଗୋଟିଏ ନନ୍ଦନ ବନରେ ପରିଣତ ହୋଇ ପାରନ୍ତେ ବୋଧ-

ହୁଏ। ଏପରି କବିସୁଲଭ କଳ୍ପନାବିଳାସପରିପୂର୍ଣ୍ଣ ସଂସ୍କାରକମାନଙ୍କର ଅଭାବ ବି ଏ ଦେଶରେ ବିରଳ ନୁହେଁ। ପୁଣି ଶୁଣାଯାଏ ଭାରତର ସର୍ବଶ୍ରେଷ୍ଠ ଅନ୍ତର୍ଜାତିକ ଗୁରୁକୁଳର ସେମାନେ ଗୋଟିଏ ସୁଦୀର୍ଘ ଗବେଷଣା କରିଛନ୍ତି ଯେ ପ୍ରଜାପତିଙ୍କ ନିର୍ବନ୍ଧକୁ ଅନୁସରଣ ପୂର୍ବକ ଗୋଟିଏ ଗୋଟିଏ ଯୁଗଳକିଶୋରର ସନ୍ଧାନ କରି ପାରିଲେ ସେମାନେ ପରସ୍ପର ସହିତ ପ୍ରୀତିବନ୍ଧନର ପ୍ରାବଲ୍ୟରୁ ଏକତ୍ର ଅଧ୍ୟୟନ ବା କୌଣସି କର୍ମ-ସମ୍ପାଦନରେ ନିଯୁକ୍ତ ହେଲେ ଯେପରି କର୍ମଠତା ବା ଅଧ୍ୟୟନକୌଶଳ ପ୍ରଦର୍ଶନ କରନ୍ତି କୌଣସି ଦୁଇଟି ଯୁବକର ବା ଦୁଇଟି ଯୁବତୀ ମିଳି କଦାଚ କରି ପାରନ୍ତି ନାହିଁ । ଏବମ୍ବିଧ ପ୍ରେମମାହାତ୍ମ୍ୟରୁ ପ୍ରେମର ସାର୍ବଭୌମ ଶକ୍ତିର ପ୍ରମାଣ ମିଳୁଅଛି । ଏପରି ବଳିଷ୍ଠ ପ୍ରମାଣ ପ୍ରତ୍ୟକ୍ଷୀ-ଭୂତ ଓ ସୁପରୀକ୍ଷିତ ହେଲେ, ଯୁବକ-ଯୁବତୀମାନଙ୍କର ଅବାଧ ମିଳାମିଶାକୁ ଆଉ ଦୂଷଣୀୟ ବୋଲି କଳ୍ପନା କରିବା ଅମାର୍ଜନୀୟ ପ୍ରଗଲ୍‌ଭତା ହେବା ସଙ୍ଗେ ସଙ୍ଗେ ପ୍ରେମିକ ଚୂଡ଼ାମଣିଙ୍କର ବଂଶୀଧ୍ୱନିରେ ଯମୁନା ଉଜାଣି ବହିବା, ସଚଳ ଅଚଳ ଏବଂ ଅଚଳ ସଚଳ ହେବାଟା ଆଉ କପୋଳକଳ୍ପିତ କବିକଳ୍ପନା ବୋଲି ଅବିଶ୍ୱସନୀୟ ହେବ ନାହିଁ । ଶକ୍ତିସମ୍ପର୍କବିହୀନ ଅର୍ଥାତ୍ ଶକ୍ତିହୀନ ପୁରୁଷଠାରୁ ଶକ୍ତିସାହଚର୍ଯ୍ୟସମ୍ପନ୍ନ ଶକ୍ତିଶାଳୀ ପୁରୁଷର ଉତ୍ସାହ ଓ ଉଦ୍ୟମ ନିଶ୍ଚୟ ନିଶ୍ଚୟ ବେଶୀ ହେବାର କଥା । ଏହାକୁ କାକତାଳୀୟ ନ୍ୟାୟ ବୋଲି ଉଡ଼ାଇଦେବାଟା ଢାଡିକର ପାଠ । ଏହି ଯୁକ୍ତିବଳରେ ଯୁବକ ଯୁବତୀମାନଙ୍କର ଅବାଧ ମିଳାମିଶା ଏବଂ ସେମାନଙ୍କର ପରସ୍ପର ସହିତ ସହଗମନ, ସହପଠନ ଏବଂ ସହକ୍ରୀଡ଼ନକୁ ଦେଶମୟ ଅନୁମୋଦନ କରାଯାଉଛି ।

ସାମୟିକ ଉନ୍ମାଦନାର ବଶବର୍ତ୍ତୀ ହୋଇ ଅପ୍ରାସଙ୍ଗିକ ପ୍ରସଙ୍ଗ ପ୍ରବାହର ପ୍ରଖର ସ୍ରୋତରେ ଭାସି ଭାସି ବକ୍ଷ୍ୟମାଣ ବିଷୟକୁ ଗୌଣ କରି ବସିଲିଣି । କହୁଥିଲି ଏହିପରି ନାନା କୂଟତର୍କର ପରିବେଶନଦ୍ୱାରା ପାଶ୍ଚାତ୍ୟ ସଭ୍ୟତାର ନିଖିଳ ଅବର୍ଜନା ଆସି ଆମ୍ଭମାନଙ୍କ ଅର୍ଦ୍ଧବର୍ତ୍ତି ସଭ୍ୟତାରେ ପଶି ପଶି ପ୍ରବେଶଲାଭ କରିବାରୁ ସମସ୍ତେ ସାହେବ ହେବାକୁ

ବସିଲେଣି । ଅନ୍ତତଃ ଓଡ଼ିଆ ହେବାଠୁ ଯେ ଗୋଟାଏ ବୃହତ୍ତର ଭାରତର କଥା ତାହା ସମସ୍ତେ ହୃଦୟଙ୍ଗମ କରି ସାରିଲେଣି । ସମସ୍ତେ ବୃଥାରେ ଅପ୍ରଗତିର ପ୍ରାଚୀରଟିକୁ ମହାମାନବ ହେବା ସ୍ୱୈରସ୍ୱର୍ଗର ସ୍ୱପ୍ନ ଦେଖି ଦେଖି ଅସ୍ମମର୍ଯ୍ୟାଦାର ମାଧୁର୍ଯ୍ୟ ଏକାବେଳେ ବିସ୍ମୃତ ହୋଇ ପଡ଼ିଲେଣି । ଏହି ମହାମାନବ ହେବାର ଦୁରାକାଂକ୍ଷାର ବହୁଳ ପ୍ରସାର ଦେଖି ଓ ସେଥିରେ ଉତ୍କଳୀୟମାନଙ୍କ ଉତ୍କଳୀୟତ୍ୱର ନିର୍ବାଣମୁକ୍ତିର ଚିତ୍ର ଆଶଙ୍କା ହୃଦୟରେ ପୋଷଣ କରି କେହି କହିଲେ—

"ଧର୍ମ କର୍ମ କୁଳ ଶୀଳ ସଂସ୍କାର ଏମନ୍ତେ

ଏକେ ଏକେ ସକଳ ଛାଡ଼ିଇ,

ମହାମାନବ—ସଭାରେ "ଉତ୍କଳୀୟ" ବୋଲି

କିବା ପରିଚୟ ଦେବ ଭାଇ ।"

ବର୍ତ୍ତମାନ ଧୀରସ୍ଥିରଭାବରେ ଭାବି ଦେଖିବା ଉଚିତ, ମହାମାନବତ୍ୱ ପ୍ରାପ୍ତି ପରେ ଉତ୍କଳୀୟ ବୋଲି ପରିଚୟ ଦେବା ବାଞ୍ଛନୀୟ କି ନା । ଉତ୍କଳୀୟତ୍ୱ ମହାମାନବତ୍ୱରେ ଲୀନ ହୋଇଗଲେ ଉତ୍କଳୀୟତ୍ୱ ରୂପ ସ୍ୱତନ୍ତ୍ର ସତ୍ତାର ପ୍ରୟୋଜନୀୟତା ଅଛି କି ନା ? ଆମ୍ଭେମାନେ ଯେତେବେଳେ ଉଦାଜାନ୍ତନ ଅଧଃପତନର ଆତଙ୍କଯୋଗୁ ଅନ୍ୟ ସମକ୍ଷରେ ଉତ୍କଳୀୟ ବୋଲି ପରିଚିତ ହେବାକୁ ଲଜ୍ଜାବୋଧ କରୁଁ, ତେବେ ମହାମାନବତ୍ୱ ବରଣ କରିସାରି ଉତ୍କଳୀୟ ବୋଲି ପରିଚିତ ହେବାଠା ବୋଧହୁଏ ଭାରି ଅବଜ୍ଞାସୂଚକ ବୋଧ ହେବ । ଏହି ସମ୍ପର୍କରେ ବେଦାନ୍ତର ଅଚିନ୍ତ୍ୟ ଭେଦାଭେଦ ତତ୍ତ୍ୱର କଥା ମନେ ପଡ଼େ । ଅଦ୍ୱୈତବାଦୀ କହନ୍ତି, ଜୀବାତ୍ମା ନିଃଶ୍ରେୟସପ୍ରାପ୍ତିକାମନାରେ ପରମାତ୍ମା ସଙ୍ଗେ ମିଳିତ ହୋଇ ପରମାତ୍ମାରେ ଲୀନ ହୋଇଗଲେ ନିର୍ବାଣମୁକ୍ତି ବରଣ କରି ନିଜର ସ୍ୱତନ୍ତ୍ର ସତ୍ତା ହରାଇ ବସେ । କିନ୍ତୁ ବିଶିଷ୍ଟାଦ୍ୱୈତବାଦୀଙ୍କ ଏବମ୍ବିଧ ନିର୍ବାଣର ପ୍ରୟାସୀ ନୁହେଁ । ସେ ଜୀବାତ୍ମା ଓ ପରମାତ୍ମାର ମଧୁର ମିଳନାକାଙ୍କ୍ଷୀ । ସୁତରାଂ ସେ ନିଃଶ୍ରେୟସ ପ୍ରାପ୍ତି ପରେ ମଧ୍ୟ ଜୀବାତ୍ମାର ସ୍ୱତନ୍ତ୍ର ସତ୍ତାରେ ଶ୍ରଦ୍ଧାବାନ୍ । ନିଜର ସତ୍ତା ନ ହରାଇ ଜୀବାତ୍ମା ବାଞ୍ଛିତତମ

ପଦବୀରେ ପ୍ରତିଷ୍ଠିତ ହୋଇ ପରମାତ୍ମା ସଙ୍ଗରେ ମହାମିଳନର ମାଧୁର୍ଯ୍ୟ-ରସ ପାନରେ ଭୋଳ ହୋଇଯାଏ । ସେହିପରି ମହାମାନବତ୍ୱର ଅଲୌକିକ ସମ୍ଭୋଗ ସଙ୍ଗେ ଉତ୍କଳର ସ୍ୱଗଣ ମହିମାର ମାଧୁର୍ଯ୍ୟ କଣ୍ଠେବନ ତେବେ କାମ୍ୟ ନ ହେବ କାହିଁକି ? ତେବେ ତାହା ସ୍ୱ ସ୍ୱ ଅଭିରୁଚି ସାପେକ୍ଷ । "ଯାହାର ଯେଉ ରୁଚି, ତାହାର ସେଇ ସର୍ବୋତ୍ତମ, ତଥାପି ହୃଦେ ବେଣିଲେ ଅଛେ ତର ତମ ।"

ଅସ୍ତୁ, ଟିକିଏ "ତଥାପି" ହୋଇ ନିରପେକ୍ଷ ଦୃଷ୍ଟିରେ ଦେଖିବାର ଚେଷ୍ଟା କରାଯାଉ । ଚିନି ହେବାଠାରୁ ଚିନି ଖାଇବା ଭଲ । ରସଗୋଲ୍ଲା ମିଠା ବୋଲି ନିଜେ ଗୋଟାଏ ରସଗୋଲ୍ଲା ହେବାଠାରୁ ରସଗୋଲ୍ଲା ମିଷ୍ଟତ୍ୱର ପୂର୍ଣ୍ଣ ଆସ୍ୱାଦନକ୍ଷମ ରସନାବିଶିଷ୍ଟ ରସିକ ମାନବ ହେବାହିଁ ଭଲ । ଏହା ବୋଧହୁଏ ସମସ୍ତେ ସ୍ୱୀକାର କରିବେ । ତେବେ ମହାମାନବତ୍ୱର ପୂର୍ଣ୍ଣ ଆସ୍ୱାଦନଟା ଉତ୍କଳୀୟତ୍ୱ ସଙ୍ଗରେ ଖାପ ନ ଖାଇବ ବା କାହିଁକି ? ଉତ୍କଳୀୟ ମହାମାନବଟା ସୁନାର ପଥର ବାସନ ବା ଶଣବପାଣ ପରି ବର୍ତ୍ତମାନ ପରିସ୍ଥିତିରେ ଜଣା ପଡ଼ିବାର କଥା ; କାରଣ ଆମ୍ଭମାନଙ୍କ ଜାତୀୟତାବୋଧ ଭୀଷଣ ଅଭିବଳକାଳୀ ମତିଚ୍ଛନ୍ନତାଦୋଷରୁ । ମହାପ୍ରାଣୀଙ୍କ ପରି ମହାମାନବଙ୍କ ଜମ୍ବୁଦ୍ୱୀପରେ ବାସ କରି ଏବଂ ଭାରତ-ଗୌରବ ସୁଭାଷଚନ୍ଦ୍ରଙ୍କ ଜନ୍ମଭୂମି ଉତ୍କଳରେ ଜନ୍ମଗ୍ରହଣ କରି ଏପରି ବୁଦ୍ଧିବିପର୍ଯ୍ୟୟର ପରିଚୟ ଦେବା ଭାରି ଦୁଃଖର କଥା ଏବଂ ବୈଦେଶିକ-ତାର ଅଭିନୟଟା ଯେ ଗୋଟାଏ ସଂକ୍ରାମକ ବ୍ୟାଧିରୂପରେ ପ୍ରବେଶ କରି ଆର୍ଯ୍ୟସମାଜର ମେରୁଦଣ୍ଡଖନ ଏବଂ ଅନ୍ତଃସାରଶୂନ୍ୟ କରି ଦେବାକୁ ବସିଲାଣି, ଉଦାରପନ୍ଥୀ ଜନନାୟକମାନେ ଏହା ପ୍ରତି ଦୃଷ୍ଟିପାତ କରୁ ନ ଥିବାର ଦେଖି ରଜୁବିଶ୍ୱାସୀ ଓ ସରଳହୃଦୟ ଲୋକେ ଭାରି ବ୍ୟସ୍ତ ହୋଇ ପଡ଼ିଲେଣି ।

ଏହି ସମ୍ପର୍କରେ ଆହୁରି ଗୋଟିଏ କଥା ଆମ୍ଭମାନଙ୍କର ସର୍ବଦା ସ୍ମରଣ ରଖିବା ଉଚିତ । ସୁସଭ୍ୟଭାରତର ମହୋଜ୍ଜ୍ୱଳ ଗୌରବାନ୍ୱିତ ଅତୀତରେ କଥା ଦୂରେ ଥାଉ, ମହାପ୍ରାଣଙ୍କ ପରି ମହାମାନବଙ୍କ ଆଦର୍ଶ

ଚରିତରୁ ତାଙ୍କର ବିଶାଳ ହୃଦୟବତ୍ତା, ଧର୍ମପ୍ରାଣତା ଓ ପ୍ରଗାଢ଼ ଈଶ୍ୱର-ବିଶ୍ୱାସ ଓ ସତ୍ୟନିଷ୍ଠା ବାଦ ଦେଇ ମହାମାନବତ୍ୱର ଉତ୍ତୁଙ୍ଗ ଆଦର୍ଶ କଳ୍ପନା କରିବା ବାତୁଳତା ମାତ୍ର । ଏପରି ସ୍ଥଳରେ ଆମ୍ଭମାନଙ୍କର ସୁବର୍ଣ-ମହିମାର ଗର୍ବକୁ ଖର୍ବ କରି ଖାରବେଳ ପ୍ରଭୃତି ଦିଗ୍‌ବିଜୟୀ ବୀରବୃନ୍ଦ ତଥା କୋଣାର୍କ ଭୁବନେଶ୍ୱର ପ୍ରଭୃତି କାରୁକାର୍ଯ୍ୟଖଚିତ ଦେବାଳୟଶ୍ରେଣୀର ନିପୁଣ ନିର୍ମାଣମାନଙ୍କ ମୁଖରେ କଳଙ୍କକାଳିମା ବୋଳି ନିଜର ଜାତୀୟତା ପ୍ରତି ଏପରି ଅଶ୍ରଦ୍ଧାଶୀଳ ହେବା ସମୀଚୀନ କି ?

ତେବେ ଏତିକି କୁହାଯାଇ ପାରେ, ଆଧୁନିକ ଜାତୀୟ ଚରିତ୍ର କେବଳ ଅବର୍ଜନାକୀର୍ଣ୍ଣ ହୋଇ ପଡ଼ିଥିବାରୁ ବୈଦେଶିକ ହେଉ ବା ଦେଶୀୟ ହେଉ ଆମ୍ଭମାନଙ୍କର ଆଦର୍ଶକୁ ଉଚ୍ଚ କରିବାକୁ ଗଲେ ପ୍ରତ୍ୟେକ ସଭ୍ୟତାର ସାର୍‌ଂଶକୁ ବରଣ କରିବାହିଁ ଶ୍ରେୟସ୍କର । ପାଶ୍ଚାତ୍ୟ ସଭ୍ୟତାରେ ବରଣୀୟ ଓ ଆଦରଣୀୟ ବସ୍ତୁ ବିଷୟ ଅଛି ଓ ବର୍ଜନୀୟ ମଧ୍ୟ ବହୁବିଷୟ ଅଛି । ଆମ୍ଭମାନଙ୍କର ଆଧୁନିକ ଜାତୀୟ ଚରିତ୍ରର ସଙ୍କୀର୍ଣ୍ଣତା ଓ ଅନୁଦାରତାର ମୂଳୋତ୍ପାଟନ କରିବାକୁ ଗଲେ ପାଶ୍ଚାତ୍ୟ ସଭ୍ୟତାର ଆଲୋକର ସାହାଯ୍ୟ ନେବାହିଁ ବାଞ୍ଛନୀୟ ; କିନ୍ତୁ ଜାତୀୟତା-ବୋଧକୁ ବିସର୍ଜନ ଦେଇ ସାମାଜିକ ଅବର୍ଜନାର ନିରାକରଣ ବାହାନାରେ ସେମାନଙ୍କ ଚରିତ୍ରର ଅମାର୍ଜନୀୟ ଦୋଷାବହ ଅଂଶଗୁଡ଼ାକ ଆମଦାନୀ କରିବାହିଁ ବଡ଼ ଦୁଃଖର କଥା । ପ୍ରତିବେଶୀ ବଙ୍ଗ ସମାଜର ସଙ୍କୀର୍ଣ୍ଣତାକୁ ଲକ୍ଷ୍ୟ କରି ରବୀନ୍ଦ୍ର ଦୁଃଖ କରି କହିଛନ୍ତି—

"—କୋଟି ସନ୍ତାନେରେ ହେ ମୁଗ୍‌ଧା ଜନନି
ରେଖେଛ ବାଙ୍ଗାଲୀ କୋ'ରେ ମାନୁଷ କରନି ।"

ମନୁଷ୍ୟତ୍ୱ ହରାଇ କେବଳ ବଙ୍ଗାଳୀତ୍ୱର ସଙ୍କୀର୍ଣ୍ଣତା ରୂପ ଅନ୍ଧକୂପ ମଧ୍ୟରେ ପଡ଼ି ରହିବାହିଁ ଜାତିବିଂଶପର ଶୋଚନୀୟ ପରିଣାମ ଅଟେ । ଆମ୍ଭମାନଙ୍କ ଜାତୀୟ ଚରିତ୍ରରେ ସଙ୍କୀର୍ଣ୍ଣତା କିଛି କମ୍ ନୁହେ । ସେହି ସଙ୍କୀର୍ଣ୍ଣତା ବିଦୂରିତ ନ ହେବାଯାଏ ଦେଶସେବା, ସ୍ୱାର୍ଥତ୍ୟାଗ ଓ

ସତ୍ୟନିଷ୍ଠା ପ୍ରଭୃତିର ବାହ୍ୟାନୁଶୀଳନରେ କୌଣସି ଜାତିର ସମୂହ କଲ୍ୟାଣ ସାଧିତ ହୋଇ ନ ପାରେ ।

ଜାତୀୟତାବୋଧ ଅଭାବରୁ ଅତି ନୀଚ ସଙ୍କୀର୍ଣ୍ଣ ମନୋବୃତ୍ତିର ଦାସତ୍ୱ କରି ଦେଶସେବକ ଆଜି ମନ୍ତ୍ରୀ ପ୍ରସାଦ ସେବନର ଭୂମିକାରୂଢ଼ ହୋଇ "ପ୍ରାପ୍ତି ମ ଯେନ କେନ ପ୍ରକାରେଣ" ନୀତିର ଯେପରି ସୂତ୍ରରୁ ଅଭିନୟରେ ଦକ୍ଷତା ଅର୍ଜନ କରି ବସିଲେଣି, ହୁଏ ତ କେତେ ଭବିଷ୍ୟତରେ ପ୍ରେମ-ପ୍ରାବଲ୍ୟରୁ ଦେଶମାତୃକାଙ୍କୁ ଏକ ବେଳକେ ଉଦରସ୍ଥ କରି ଭକ୍ତଙ୍କ ଭାଷାରେ ଗାଇ ବସିବେ—

"ମାଗୋ, ଏବାର ଆମି ତୋମାୟ୍ ଖାବ ।"

ଏବଂ ଘରେ ଘରେ ଦ୍ୱାରେ ଦ୍ୱାରେ କପଟ ସ୍ୱାର୍ଥତ୍ୟାଗର ଅଭିନୟ ଦେଖି ମନେ ହୁଏ ଯେପରି କପଟ ସ୍ୱାର୍ଥତ୍ୟାଗଟା ଦୈନନ୍ଦିନ ମଳମୂତ୍ର ତ୍ୟାଗ ପରି ଗୋଟାଏ ଅତି ସାଧାରଣ ବିଷୟ । ତ୍ୟାଗବ୍ରତର ଗୁରୁତ୍ୱ ଉପଲବ୍ଧି କରିବା ତେଣୁ ଅତି ଅସମ୍ଭବ ହୋଇ ପଡ଼ିଅଛି । ବସ୍ତୁତଃ କାମିନୀ-କାଞ୍ଚନର ମୋହ ତ୍ୟାଗ କରିବା ଆଧୁନିକ କଳହତ ଜୀବ ପକ୍ଷରେ ଭାରି ଦୁଃସାଧ୍ୟ ଏବଂ ପରିଶେଷରେ ପ୍ରତିଷ୍ଠାର ତୀବ୍ର ଲାଳସା ପରିତ୍ୟାଗ କରିବା ଏକାବେଳକେ ଅସମ୍ଭବ ବୋଇଲେ ଚଳେ । କୋଟିକରେ ଗୋଟିଏ ପକ୍ଷରେ ତାହା ସମ୍ଭବପର ହେବାର ପ୍ରମାଣ ଏପର୍ଯ୍ୟନ୍ତ ମିଳ ନାହିଁ । ତେଣୁ ମହାତ୍ୟାଗର ଅଭିନୟ କେବଳ କପଟତାର ନାମାନ୍ତର ମାତ୍ର ହୋଇଥାଏ । ଉତ୍କଟ ନୈତିକ ଅବନତିର ଯୁଗରେ ସତ୍ୟନିଷ୍ଠା ବା ସତ୍ୟାଗ୍ରହର ମର୍ମଗ୍ରହଣ କରିବାଭଳି ଲୋକ ଆଜି ମୁଷ୍ଟିମେୟ । ସୁବିଧାବାଦୀ ସମାଜର ମେରୁଦଣ୍ଡହୀନ ଜୀବନରେ ସତ୍ୟାଗ୍ରହର ମାନଦଣ୍ଡ ପ୍ରୟୋଗ ହାସ୍ୟାସ୍ପଦ । ଗୈରିକବଜାର ଓ କଳାବଜାରର ବହୁଳ ପ୍ରସାର ଏ ଯୁଗର ସତ୍ୟନିଷ୍ଠା ସାକ୍ଷ୍ୟ ପ୍ରଦାନ କରୁଅଛି । ସ୍ୱାଧୀନତା ପ୍ରାପ୍ତିର ଆନୁଷଙ୍ଗିକ ଜାତୀୟ ଅନୁଷ୍ଠାନରୂପେ ଏମାନଙ୍କର ଅଭ୍ୟୁଦୟ ଦେଶରେ ସଙ୍କାମିତ ହୋଇ ପଡ଼ୁଛି । ନୈତିକ ବଳହୀନ ସମାଜ ଓ ଆଧ୍ୟାତ୍ମିକ ଶକ୍ତିଶୂନ୍ୟ ଦେଶ କେବଳ ଯୋଜନାବହୁଳ ଶାସନପଦ୍ଧତିଦ୍ୱାରା ଉନ୍ନତି

ଥାରେ ବୋଲି ମୋର ବିଶ୍ୱାସ ନାହିଁ । ସ୍ୱାଧୀନତାର ଗୁରୁତ୍ୱ ଉପଲବ୍ଧି ନ ହେବାରୁ ଲୋକେ ଉଚ୍ଛୃଙ୍ଖଳତା ବରଣ କରି ବସିଲେଣି ; ତେଣୁ ସ୍ୱାଧୀନତାଲୁଅର ବିଷମୟ ଫଳସ୍ୱରୂପ ଦେଶ ଆଜି ନିପୀଡ଼ିତ ଓ ନିଷ୍ପେଷିତ ହୋଇ ହାହି ହାହି ଡାକ ଛାଡ଼ୁଛି । ଚିର ଈପ୍ସିତ ଏବଂ ଅତି ଦୁର୍ଲ୍ଲଭ ସ୍ୱାଧୀନତା-ରତ୍ନଟି ବହୁମୂଲ୍ୟ ପ୍ରାଣବ୍ୟୟରେ କରତଳଗତ କରି ଆଜି ଦେଶବାସୀ ହାହାକାର କରୁଥିବାର ଦେଖି ବାବାଜୀଙ୍କ ସଙ୍ଗରେ ସ୍ୱର ମିଳାଇ କହିବାକୁ ଇଚ୍ଛା ହୁଏ—"ଉଲ୍‌ଟା ବୁଝିଲେ ରାମ" । ଥରେ ଜଣେ ବାବାଜୀ ଦୁମ୍‌ଦୁମିଆ ଖରାବେଳେ ପଦବ୍ରଜରେ ଯାଉଥିବା ବେଳେ ପାଦୁକାବିହୀନ ପଦଦ୍ୱୟରେ ଉତ୍ତପ୍ତ ରାଜପଥର ଅଗ୍ନିକଣାବତ୍ ବାଲୁକାସ୍ପର୍ଶରେ ଭୀଷଣ କଷ୍ଟ ପାଇ ମନେ ମନେ କହୁଥିଲେ "ଘୋଡ଼ା ଏକଠୋ ଦେ ଦୋ ରାମ୍" । କିଛିଦୂର ଯାଇ ଦେଖିଲେ, ଜଣେ ମୁସଲମାନ୍ ଭଦ୍ରଲୋକ ରାସ୍ତାଧାରସ୍ଥ ବୃକ୍ଷମୂଳରେ ତାଙ୍କୁ ଆହ୍ୱାନ କରୁଛନ୍ତି । ସେ ସେଠାରେ ଉପସ୍ଥିତ ହୁଅନ୍ତେ ଦାରୋଗା ସାହେବ ତାଙ୍କୁ ସଦ୍ୟପ୍ରସୂତ ଘୋଟକ ଶାବକଟି ସ୍କନ୍ଧରେ ବହନପୂର୍ବକ ଦୂରସ୍ଥ ଦାରୋଗାବାସରେ ପହଞ୍ଚାଇଦେବାକୁ ଆଦେଶ ଦେଲେ । ଦାରୋଗା ଆସନ୍ନପ୍ରସବା ଘୋଟକୀ ଆରୋହଣ କରି କର୍ତ୍ତବ୍ୟାନୁରୋଧରେ ଗସ୍ତରେ ଯାଇଥିଲେ । ପଥି ମଧ୍ୟରେ ବାବାଜୀ ମହାରାଜଙ୍କ କରୁଣ ପ୍ରାର୍ଥନାରୂପ ବେତାର ସମ୍ବାଦର ଅତି ଉତ୍ସୁକ ଜବାବରୂପେ ଘୋଟକୀଟିର ସନ୍ତାନ ଜାତ ହେଲା ଏବଂ ବିଧର୍ମୀ ଦାରୋଗା ସାହେବଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି ବାବାଜୀ ମହାରାଜ ଅଗତ୍ୟା ସେହି ସଦ୍ୟଜାତ ବାଳଗୋପାଳଟିକୁ ସ୍କନ୍ଧରେ ବସାଇ ପୂର୍ବବତ୍ ପଦବ୍ରଜରେ ଗମନ କରିବାକୁ ଲାଗିଲେ ଏବଂ ମନେ ମନେ ରାମଜୀଙ୍କୁ ଧନ୍ୟବାଦ ବୋଧହୁଏ ଦେଲେ, କିନ୍ତୁ ମନେ ମନେ ଭାବିଲେ "ରାମଜୀଙ୍କର ଟିକିଏ ବୁଝିବାର ଭୁଲ ହୋଇଗଲା—ଘୋଡ଼ା ମାଗୁଥିଲି, ମୁଁ ତାହା ଉପରେ ଚଢ଼ିବି ବୋଲି; କିନ୍ତୁ ରାମଜୀ ଉଲଟା ବୁଝିବାରୁ ଘୋଡ଼ାଟି ମୋ ଉପରେ ଚଢ଼ିବାର ବ୍ୟବସ୍ଥା କଲେ ।" ଆମ୍ଭମାନଙ୍କର କୌଣସି ବାସନା ସେହିପରି ଆମ୍ଭମାନଙ୍କର

ମନୋମତ ପୂର୍ତ୍ତିଲାଭ କରେ ନାହିଁ ? ମାଗିଲ ପୁତ୍ର, ପାଇଲ ଔରଙ୍ଗଜେବ । ମାଗିଲ ଭ୍ରାତା, ମିଳିଲ କଂସ ; ମାଗିଲ ପିତା, ପାଇଲ ହିରଣ୍ୟକଶିପୁ ; ମାଗିଲ ମନ୍ତ୍ରୀ, ମିଳିଲେ ଶକୁନି ; ଖୋଜିଲ ସହକର୍ମୀ—ମିଳିଲ ନରପିଶାଚ ଇୟାଗୋ ; ମାଗିଲ ଦାସୀ—ଦେଲେ ମନ୍ଥରା ଇତ୍ୟାଦି ।

ସୁତରାଂ ଅସୀମ ବାସନାର ବଶବର୍ତ୍ତୀ ହୋଇ ମାନବସମାଜ ଇଷ୍ଟଦେବ ସମ୍ମୁଖରେ "ଧନଂ ଦେହି, ପୁତ୍ରଂ ଦେହି" ଇତ୍ୟାଦି ନାନା ବାଞ୍ଛନୀୟ ଓ ଅବାଞ୍ଛନୀୟ ବସ୍ତୁ ପାଇଁ କର ପତାଇ ବସିଥାଏ ; କିନ୍ତୁ ପ୍ରାପ୍ତି ପରେ ସେଥିରୁ କ୍ଷଣିକାଏ ଆନନ୍ଦ ପାଇଥିବା ଲୋକ ବିରଳ । ତେବେ ଆପାତମଧୁର କ୍ଷଣଭଙ୍ଗୁର ଏବଂ ପରିଣାମରେ ମହା ଦୁଃଖପ୍ରଦ ସୁଖ ବା ସୁଖାଭାସର ପଛରେ ନ ଧାଏଁ କିଏ ? ଦୁର୍ବାସନାର କବଳ ହେବାଟା ମାନବହୃଦୟର ଗୋଟିଏ ସ୍ୱାଭାବିକ ଦୌର୍ବଲ୍ୟ ; ତେଣୁ ସେ ସବୁବେଳେ ଶଂସିତ ବାବାଜୀ ମହାରାଜଙ୍କ ପରି କହିବାକୁ ବାଧ୍ୟ ହୁଏ "ଉଲଟା ବୁଝିଲେ ରାମ୍ ।" ଏଠା ରାମଜୀଙ୍କ ଉଲଟା ବୁଝାମଣା-କି ସମାଜେ ବାବାଜୀଙ୍କ ଉଲଟା ବୁଝାମଣା ବିଚାର କରି ଦେଖିବା ଉଚିତ । କପିଳବସ୍ତୁର ସ୍ୱନାମଧନ୍ୟ ରାଜକୁମାର ଏହାର ସୁସମାଧାନ ସମ୍ବଳିତ ସିଦ୍ଧାନ୍ତର ଅନ୍ୱେଷଣରେ ନିରଞ୍ଜନାତୀରବର୍ତ୍ତୀ ବୋଧିଦ୍ରୁମ ପାଦଦେଶରେ ସମାଧିସ୍ଥ ହୋଇ ସ୍ଥିର କଲେ ଯେ, କାମନାର ବିନାଶରେହିଁ ନିର୍ବାଣ ମୁକ୍ତିଲାଭ ହୋଇ ପାରେ । କାରଣ କାମନାର ବିଶୃଙ୍ଖଳତାବଶତଃ କାମ୍ୟବସ୍ତୁ ପ୍ରାପ୍ତି ପରେ ମଧ୍ୟ ପରମ ପଦଲାଭର ଆଶା ସୁଦୂରପରାହତ ହୋଇଥାଏ ।

ସେଥିପାଇଁ ବର୍ତ୍ତମାନ ଅମ୍ଭମାନଙ୍କର ଦଶା ସ୍ୱାଧୀନତା ପ୍ରାପ୍ତି ପରେ ବାବାଜୀଙ୍କ ଦଶାଠାରୁ ଅଧିକ ଶୋଚନୀୟ ହୋଇ ପଡ଼ିଅଛି । ଚିର ଈପ୍‌ସିତ ଦୁର୍ଲ୍ଲଭ ରତ୍ନଟି ଅମ୍ଭମାନଙ୍କ ଭାଗ୍ୟକୁ ଗୋଟିଏ ଅପଦେବତାର ମାରାତ୍ମକ ଅଭିଶାପ ରୂପରେ ବିଭୀଷିକାପ୍ରଦ ହୋଇପଡ଼ିଛି । ତାହା କେବଳ ଅମ୍ଭମାନଙ୍କ ଅଯୋଗ୍ୟ ପଣରୁ—ଅର୍ଥାତ୍ ଅମ୍ଭମାନଙ୍କ

ଦେଶାତ୍ମବୋଧ ନ ଥିବାରୁ ଆମ୍ଭେମାନେ ଆମ୍ଭମାନଙ୍କ ବ୍ୟକ୍ତିଗତ ଜୀବନର ଐହିକ ସୁଖ-ସ୍ୱାଚ୍ଛନ୍ଦ୍ୟକୁ ଜୀବନର ପରମ ପୁରୁଷାର୍ଥ ସ୍ଥାନରେ ବରଣ କରି ଭୀରୁ ଅସମର୍ଥ ଓ ନୀଚ ସ୍ୱାର୍ଥପରାୟଣ ହୋଇ ପଡ଼ିଅଛୁଁ ।

ଜାତୀୟତାବୋଧ ଥିଲେ ମନୁଷ୍ୟ ଦେବତା ହୁଏ ନାହିଁ ସତ୍ୟ, ସେ ନରରୂପ ପଶୁ ନ ହୋଇ ବାସ୍ତବିକ ମନୁଷ୍ୟପଦବାଚ୍ୟ ହୁଏ । ପୂର୍ବରେ କହିଛି, ପାଶ୍ଚାତ୍ୟ ସଭ୍ୟ ଦେଶମାନଙ୍କରେ ସାଧାରଣ ପୁସ୍ତକାଳୟମାନଙ୍କରେ ଖୁବ ଚାଲୁ ବ୍ୟବହାର କରାଯାଏ ନାହିଁ । ଐହିକସୁଖସର୍ବସ୍ୱ ସେ ଦେଶରେ କଅଣ ଚୋର ଡକାଏତ ନାହାନ୍ତି ? ସେ ଦେଶରେ ଲୋକେ କଅଣ କାମିନୀକାଞ୍ଚନ ଲୋଭର ବଶବର୍ତ୍ତୀ ନୁହନ୍ତି ? ତେବେ ସେ ଦେଶର ଲୋକମାନଙ୍କ ପ୍ରଗାଢ଼ ଦେଶାତ୍ମବୋଧ ଥିବାରୁ ଓ ସେମାନେ ସମୂହ ଜାତିର ମଙ୍ଗଳମୟ ଅନୁଷ୍ଠାନ ଗୁଡ଼ିକର ଉପକାରିତା ବୁଝି ଥିବାରୁ ସେମାନେ ଚୋର ଡକାଏତ ହେଲେ ମଧ୍ୟ ସେ ସବୁ ପବିତ୍ର ଅନୁଷ୍ଠାନରେ ହସ୍ତକ୍ଷେପ କରନ୍ତି ନାହିଁ । ପରନ୍ତୁ ଆମ୍ଭମାନଙ୍କ ଧର୍ମପ୍ରାଣ ଦେଶରେ କପଟ ବାବାଜୀ ବୈଷ୍ଣବ ଭେକଧାରୀ ଧର୍ମଧ୍ୱଜୀମାନେ ଗଞ୍ଜିକାସେବନ ସୌକର୍ଯ୍ୟାର୍ଥେ ଦେବମନ୍ଦିରରେ ସିନ୍ଧି ଗର୍ତ୍ତ କରି ଶ୍ରୀଠାକୁରଙ୍କ ଶ୍ରୀଅଙ୍ଗରୁ ବହୁମୂଲ୍ୟ ଅଭରଣ ଚୋରି କରିବାଟା ଖୁବ୍ ବିରଳ ନୁହେ । ବନ୍ୟାପରିପ୍ଲୁତ, ଦୁର୍ଭିକ୍ଷପୀଡ଼ିତ କିମ୍ବା ସ୍ୱଦେଶବିତାଡ଼ିତ ଲୋକମାନଙ୍କର ସାହାଯ୍ୟକଳେ ଯେଉଁ ସବୁ ସଦନୁଷ୍ଠାନ ସବୁ ଦେଶରେ ପ୍ରତିଷ୍ଠିତ ହୁଏ, ସେଗୁଡ଼ିକ ସ୍ଥାନେ ସ୍ଥାନେ ଲୁଣ୍ଠିମୃଦ୍ଧାଷାପ୍ରାପ୍ତ ନିଷ୍ଠାପର ଦେଶସେବକମାନଙ୍କର ଆତ୍ମସେବାର ଉପକରଣ ରୂପରେ ପ୍ରତିଷ୍ଠାଲାଭ କରିବାର ମଧ୍ୟ ଶୁଣାଯାଏ । ତାହାର ବିଶେଷ ନିର୍ଭରଯୋଗ୍ୟ ପ୍ରମାଣ ମିଳିବା କଠିନ ହେବାରୁ ସେଗୁଡ଼ିକୁ କେବଳ ଅପ୍ରବାଦ ରୂପରେ ଗ୍ରହଣ କରି ହୁଏ । ଯାହାହେଉ, ଏହିପରି ବ୍ୟକ୍ତିଗତ ସ୍ୱତନ୍ତ୍ରତା କେବଳ ଜାତୀୟତାବୋଧର ଅଭାବରୁ ସମ୍ଭବ ହୁଏ । ସୁତରାଂ ଦେଶର ସଦ୍ୟଲବ୍ଧ ସ୍ୱାଧୀନତାରୁ ବ୍ୟକ୍ତିଗତ ସ୍ୱାଧୀନତା ମାତ୍ର ମନେ କରି ଲୋକେ ବ୍ୟକ୍ତିଗତ ସୁଖସ୍ୱାଚ୍ଛନ୍ଦ୍ୟକୁ ମୁଖ୍ୟ କରି

ଓ ସମାଜ ବା ଦେଶର ଦାବୀକୁ ତାଚ୍ଛିଲ୍ୟ କରି ବସିବାରୁ ଘୋର ଉଚ୍ଛୃଙ୍ଖଳତାର ସୃଷ୍ଟି ହୋଇଅଛି । ପ୍ରତ୍ୟେକେ ନିଜ ନିଜ ସ୍ୱାର୍ଥରେ ଦୌଡ଼ ପା; କେହି ଅପରର ନ୍ୟାଯ୍ୟ ଦାବୀପ୍ରତି ଭ୍ରୂକ୍ଷେପ ନ କରିବାରୁ ଦେଶ ପ୍ରତି ବା ଦଶ ପ୍ରତି ତାହାର କୌଣସି କର୍ତ୍ତବ୍ୟ ଅଛି ବୋଲି କାହାରି ଧାରଣା ନାହିଁ । ପେଟ ପୋଷ, ନାହିଁ ଦୋଷ—ଏହା ଲୁସିମୃତି-ପୀଷାର ବୀଜମନ୍ତ୍ର ହେଲଣି ।

ଏପରି ବିପର୍ଯ୍ୟସ୍ତ କୁଚଗ୍ରସ୍ତ ସମାଜ ଯେ ଚିରକାଳ ବ୍ୟାଧିଗ୍ରସ୍ତ ହୋଇ ପଡ଼ି ରହିବ, ଏଥିରେ ସନ୍ଦେହ ନାହିଁ । ଏହି ମାରାତ୍ମକ କୁଚ-ବିପର୍ଯ୍ୟୟର ସଂକ୍ରାମକତା ଆମ୍ଭମାନଙ୍କ ଜାତୀୟ ଚରିତ୍ରକୁ ଦୂଷିତ କରି ଦେବାରୁ ଜାତୀୟ ଜୀବନର ପ୍ରତ୍ୟେକ କର୍ମକ୍ଷେତ୍ରରେ ତାହାର ବିଷମୟ ଫଳ ପ୍ରତ୍ୟକ୍ଷୀଭୂତ ହୋଇପଡ଼ୁଛି । ବିଦ୍ୟାପୀଠମାନଙ୍କର ଉଚ୍ଚତର କ୍ଷେତ୍ରରେ ଉକ୍ତ ବିଷବୃକ୍ଷଟି ଖୁବ୍ ବିଶାଳ ହୋଇ ପଡ଼ୁଛି । ଶୁଣାଯାଏ ମୈଥିଳୀ ଭାଷାର ଅଧ୍ୟାପକତ୍ୱ ପାଇଁ ଜଣେ ପାଶ୍ଚାତ୍ୟ ଶିକ୍ଷାପ୍ରାପ୍ତ ଯୁବକଙ୍କୁ ନିର୍ବାଚନ କରାଗଲା; ତାହାର କାରଣ ସେ ଯେ ପାଶ୍ଚାତ୍ୟ ବିଶ୍ୱ-ବିଦ୍ୟାଳୟରେ ମୈଥିଳୀ ଭାଷାର ବିଶିଷ୍ଟ ଅନୁଶୀଳନର ସୁବିଧା ପାଇଥିଲେ ତାହା ନୁହେଁ, କେବଳ ତାଙ୍କର ସୁଗାଢ଼ ବିଦ୍ୟାନୁରାଗର ପରିଚୟ ମିଳିଲା ତାଙ୍କ ଏତାଦୃଶ କଳାପାଣି ପାରି ହେବା ଧୃଷ୍ଟତାରୁ । ସେହିପରି ସଂସ୍କୃତ ବିଦ୍ୟାର ମଧ୍ୟ ଦେଶୀୟ ବିଶ୍ୱ-ବିଦ୍ୟାଳୟପ୍ରଦତ୍ତ ଉପାଧି ଉପରେ ବିଦେଶୀ ବିଶ୍ୱବିଦ୍ୟାଳୟର ଅନୁ-ମୋଦନମୁଦ୍ରା ନ ପଡ଼ିବା ଯାଏଁ ସେଗୁଡ଼ିକର ଆଦର ବଢ଼େ ନାହିଁ । ଏହି ଦେଶରହିଁ ଶିକ୍ଷା ସମାପ୍ତ କରି ୰ ବ୍ରଜେନ୍ଦ୍ରନାଥ ଶୀଲ, ୰ ଉପେନ୍ଦ୍ରନାଥ ମୈତ୍ର, ୰ ବାଳଗଙ୍ଗାଧର ତିଳକ ଏବଂ ୰ ପଣ୍ଡିତ ରମାବତାର ଶର୍ମା, ୰ ରାସବିହାରୀ ଘୋଷ ଏବଂ ୰ ଆଶୁତୋଷ ମୁଖୋପାଧ୍ୟାୟ ପ୍ରଭୃତି ସମଗ୍ର ପୃଥିବୀ ମଧ୍ୟରେ ଅଦ୍ୱିତୀୟ ପଣ୍ଡିତ ହୋଇ ଥିଲେ । ତେଣୁ କେବଳ କେତୋଟି ବିଶିଷ୍ଟ ବିଷୟକୁ ଛାଡ଼ି ପ୍ରତ୍ୟେକ ବିଷୟରେ ଶିକ୍ଷା ସମାପ୍ତି ପାଇଁ ପାଶ୍ଚାତ୍ୟ ବିଶ୍ୱବିଦ୍ୟାଳୟର ଅନୁଗ୍ରହର

ପ୍ରତୀକ୍ଷା କରି ପରମୁଖାପେକ୍ଷୀ ହୋଇ ବସିବାଟା ଭାରି ଲଜ୍ଜାର କଥା । ଗୋଟାଏ ଅପ୍ରିୟ ସତ୍ୟ ନ କହି ରହି ହେବ ନାହିଁ, ଯେଉଁମାନେ ଦେଶୀୟ ବିଶ୍ୱବିଦ୍ୟାଳୟରେ ତୃତୀୟ ଶ୍ରେଣୀର ମେଧା, ମନୀଷା ବା ପ୍ରତିଭାର ଅଭ୍ରାନ୍ତ ପରିଚୟ ପ୍ରଦାନପୂର୍ବକ ବିଦେଶୀ ବିଶ୍ୱବିଦ୍ୟାଳୟରେ ପଦାର୍ପଣ ମାତ୍ର କରି ଫେରନ୍ତି, ସେମାନେ ଏ ଦେଶକୁ ଆସି ସର୍ବଜ୍ଞ ଚୂଡ଼ାମଣିର ଆସନ ଅଳଙ୍କୃତ କରି ଅକାଳକୁଷ୍ମାଣ୍ଡର ଅଭିନୟ କରନ୍ତି । ପୁଣି ଅକାଳକୁଷ୍ମାଣ୍ଡର ଦୁର୍ଲଭ ଦୃଷ୍ଟିରେ ସେମାନଙ୍କ ମୂଲ୍ୟ ମଧ୍ୟ ନିର୍ଦ୍ଧାରିତ ହୋଇଥାଏ । ଶୁଣାଯାଏ ସ୍ପର୍ଶମଣିର ସ୍ପର୍ଶରେ ଲୌହ ମଧ୍ୟ ସୁନା ହୋଇଯାଏ । ଆମ୍ଭମାନଙ୍କର ଏହି ସୁପରୀକ୍ଷିତ ଅୟସ୍କାନ୍ତ ମଣିଗୁଡ଼ିକ କେଉଁ ସ୍ପର୍ଶମଣିର ଅମୃତସ୍ପର୍ଶ ଲାଭ କରି ଫେରନ୍ତି, ତାହା କେବଳ ସେମାନଙ୍କର ଗ୍ରାହକଚୂଡ଼ାମଣି ଠକ୍କୁର ଉପଜୀବୀମାନଙ୍କୁହିଁ ଗୋଚର; ଜନସାଧାରଣ କିନ୍ତୁ ସେମାନଙ୍କ ପୋଷାକ ପରିଚ୍ଛଦ ପ୍ରଭୃତି ବହିରଙ୍ଗ ଆଚାରବ୍ୟବହାରର ଚାକଚକ୍ୟ ଛଡ଼ା ସେମାନଙ୍କର ପ୍ରତିଭାର ଦୀପ୍ତି ଦ୍ୟୁତିରେ ବା ପାଣ୍ଡିତ୍ୟର ଦେଦୀପ୍ୟମାନତ୍ୱରେ ବିଶେଷ ଦ୍ରଷ୍ଟବ୍ୟ କିଛି ଲକ୍ଷ୍ୟ କରନ୍ତି ନାହିଁ । ଏହି ପଣ୍ଡିତ ସାହିତ୍ୟରଥୀମାନେ ଶବ୍ଦଭେଦୀର ସନ୍ଧାନରେ ସୁପ୍ରସିଦ୍ଧ ପାର୍ଥ ହୋଇ କେଉଁ ଅମୋଘ ବ୍ରହ୍ମାସ୍ତ୍ରରେ ତୂଣୀର ପୂର୍ଣ୍ଣ କରି ଫେରନ୍ତି ତାହା ଭଗବାନଙ୍କୁ ଗୋଚର । ମାତ୍ର ସ୍ଥିରଲକ୍ଷ୍ୟ ହୋଇ ଲକ୍ଷ୍ୟବେଧକାଳରେ ଏମାନଙ୍କର ଦକ୍ଷତା ଲକ୍ଷ୍ୟ କରି ଲୋକେ ବିଲକ୍ଷଣ ଉପହାସ କରନ୍ତି । ପରିଶେଷରେ ସ୍ୱଦେଶର ଅଜ୍ଞାତକୁଳଶୀଳ ଅଜ୍ଞାତବାସୀ ଦୀନ ହୀନ ଭିକ୍ଷୁକବେଶୀହିଁ ଲକ୍ଷ୍ୟଭେଦ କରି ସଭାର ଗୌରବରକ୍ଷା କରିବାକୁ ହୁଏ ଏବଂ ପ୍ରୟୋଜନ ହେଲେ, ବିପକ୍ଷ ପକ୍ଷର ଲକ୍ଷ ଲକ୍ଷ ଲକ୍ଷ୍ୟଭ୍ରଷ୍ଟ ସମକକ୍ଷ ଯୋଦ୍ଧା ସଙ୍ଗରେ କକ୍ଷା କରି ଆତ୍ମରକ୍ଷା କରିବାକୁ ମଧ୍ୟ ହୁଏ । ପାଶ୍ଚାତ୍ୟ ଶିକ୍ଷାଦୃପ୍ତ ଏତାଦୃଶ ସୁଦକ୍ଷ ଶିକ୍ଷକ ମଣ୍ଡଳୀଙ୍କ ଦ୍ୱାରା 'ସୁରକ୍ଷିତ ଶିକ୍ଷାବିଭାଗର ଅନ୍ତର୍ଭୁକ୍ତ ଶିକ୍ଷାକେନ୍ଦ୍ର ଗୁଡ଼ିକରେ ପ୍ରଚଳିତ ଯୋଜନାବହୁଳ ଶାସନପ୍ରଣାଳୀର ପରିଦର୍ଶକସଙ୍କୁଳ ଆଧୁନିକ ଶିକ୍ଷାପଦ୍ଧତି ସୁଦକ୍ଷ ଶିକ୍ଷକ ବିରଳତାରୁ ଉପରି ପକ୍ଷାଘାତଗ୍ରସ୍ତ

ହେବାରୁ ବସିଲଣି, ତାହା କେହୁ ଲକ୍ଷ୍ୟ କରି ଉର୍ଦ୍ଧ୍ୱପକ୍ଷଙ୍କ ନିରପେକ୍ଷ ଦୃଷ୍ଟି ଆକର୍ଷଣ କରୁ ନାହାନ୍ତି ସତ୍ୟ, କିନ୍ତୁ ଥରେ ପରୀକ୍ଷା କରି ଦେଖିଲେ ତାହା ପ୍ରତ୍ୟକ୍ଷୀଭୂତ ହେବ । ସେ ଦେଶରେ ବିଦ୍ୟାଳୟମାନଙ୍କରେ ଛାତ୍ର ଛାତ୍ରୀମାନଙ୍କର ଶିକ୍ଷାଦାନର ଗୁରୁଭାର ଉପରି ବହନ କରାଯାଏ, ଟିକିଏ ଦେଖାଯାଉ । ସେ ଦେଶରେ ଛାତ୍ରଛାତ୍ରୀମାନଙ୍କୁ ସେମାନଙ୍କର ପାଠ୍ୟ ପୁସ୍ତକାଦି ଘରକୁ ନେଇ ଯିବାକୁ ଦିଆଯାଏ ନାହିଁ । କାରଣ ଶିକ୍ଷକ-ଶିକ୍ଷୟିତ୍ରୀମାନେ ସେମାନଙ୍କର ଅଧ୍ୟୟନର ଭାର ସମ୍ପୂର୍ଣ୍ଣ ବହନ କରୁଥିବା ସ୍ଥଳରେ ସେମାନେ ଘରେ ଯାଇ ଅଯଥା ଅତିରିକ୍ତ ପରିଶ୍ରମ ସ୍ୱୀକାର ପୂର୍ବକ ନିଜର ଦେହ ଓ ମନର ସ୍ୱାସ୍ଥ୍ୟହାନି ଘଟାଇବେ, ଏହି ଆଶଙ୍କାରେ ହିଁ ଏପରି ବିଧି ବ୍ୟବସ୍ଥା ସେସବୁ ଶିକ୍ଷାଦାନ ପୀଠମାନଙ୍କର ହୋଇଥାଏ । ଆଉ ଆମ ଦେଶର ଛାତ୍ର ଛାତ୍ରୀ ପ୍ରତ୍ୟେକଙ୍କ ପାଇଁ ପୁଷ୍ଟାଏ କି ଛଅଟା ଗଣ୍ଠେଇ ଟିଯକ ନ ରଖିଲେ ବିଦ୍ୟାଳୟରେ ସେମାନଙ୍କର ନିନ୍ଦାଘୋଷ ଏକାବେଳକେ ଅଚଳ ଓ ସମୟ ସମୟରେ ରସାତଳଗାମୀ ହୋଇଯାଏ । ପୁଣି ଏହି ଗଣ୍ଠେଇ ଶିକ୍ଷକମାନଙ୍କର ଜୀବନଟା ମଧ୍ୟ ଭାରୀ ଯୋଜନାବହୁଳ ହୋଇପଡ଼ିଥିବାରୁ ସେମାନେ ଛାତ୍ର-ଛାତ୍ରୀ-ମାନଙ୍କୁ ବହୁଳ ପରିମାଣରେ ଏଡ଼ିଶ କରି ଅନାଛଡ଼ ଦେଲାପ୍ରାୟ ସଦାବ୍ରତ ତ ଖୋଲି ବସିଥାଆନ୍ତି, ସେଥିରେ ଉଭୟ ପକ୍ଷର କୁଆଡ଼େ ଭାରି ସୁବିଧା ହୁଏ । ସମୟ ସୁବିଧା ଓ ସୁବର୍ଣ୍ଣର ବୃଥା ଅପବ୍ୟୟ ହୁଏ ନାହିଁ । କେହି କେହି ଶିକ୍ଷକ ଛାତ୍ରକୁ ଘରେ ଜାରି ରଖିବା ପାଇଁ କର୍ମଯୋଜନାର ବନ୍ଦୋବସ୍ତ କରି ଦେଇ ( Home task ) ନିଜେ ଫୁରସତମତେ ସେଗୁଡ଼ିକ ଉପରେ କୃପାଦୃଷ୍ଟିର ନାମାନ୍ତର ରୂପ ଦୋଷଦୃଷ୍ଟିପାତ ପୂର୍ବକ ଛାତ୍ରଛାତ୍ରୀଙ୍କର ପୃଷ୍ଠଦେଶରେ ତଦନୁଯାୟୀ ସାମୟିକ ଶାସନବୃଷ୍ଟି କରତଃ ପରମତୃପ୍ତି ଲାଭ କରନ୍ତି । କେହି କେହି ଛାତ୍ରଛାତ୍ରୀମାନଙ୍କୁ କାର୍ଯ୍ୟରେ ନିଯୁକ୍ତ କରାଇ "ସମାଜ, ମାତୃଭୂମି" ପ୍ରଭୃତିର ସେବାରେ ନିଜର ଉର୍ବର ମସ୍ତିଷ୍କଟି ଗୃହଜନା କରୁ କରୁ ଦେଶ ଓ ଦଶର କଥା ଭାବି ଭାବି ଅକୃତକାର୍ଯ୍ୟ ଛାତ୍ରଛାତ୍ରୀମାନଙ୍କୁ ପୁନଃ ଚେଷ୍ଟା କରିବାକୁ ଅଦେଶ

ଦେଇ ହାତବନ୍ଧା ଘଡ଼ିଟି ଦେଖୁ ଦେଖୁ ବାହାର ପଡ଼ନ୍ତି । ଏପରି ସବୁରି ଶିକ୍ଷକଙ୍କ ସାହାଯ୍ୟଦାନାର୍ଥେ ପୁଣି ଆଉ ଗୋଟିଏ ଯୋଡ଼ିଏ ଅତି-ସବୁରି ବା ଉପଶିକ୍ଷକ ନିଯୁକ୍ତ କରିବାର ଅଶୁ ପ୍ରୟୋଜନ ମଧ୍ୟ ହେଲେ ହୋଇ ପାରେ । ଏହି ଦୁର୍ମୂଲ୍ୟ ଦିନରେ ବିଦ୍ୟାରୂପ ଅମୂଲ୍ୟ ଧନ ଅର୍ଜନ କରିବାକୁ ହେଲେ ଅଭିଭାବକମାନଙ୍କୁ ସେଥିପାଇଁ ଅର୍ଥାଗମର ନାନା ନବ ପନ୍ଥା ସର୍ଜନ କରିବାକୁ ହେବ ଏବଂ ଅନ୍ନଚିନ୍ତା ବସ୍ତ୍ରଚିନ୍ତା ପ୍ରଭୃତି ସର୍ବବିଧ ଦୁଶ୍ଚିନ୍ତାତଡ଼ି ବର୍ଜନ କରି ଏକନିଷ୍ଠ ହୋଇ ଏକାବେଳକେ ନିଶ୍ଚିନ୍ତ ହେବାକୁ ହେବ । କାରଣ ଏପରି କଷ୍ଟବ୍ୟୟରେ ଅର୍ଜିତ ଏହି ଅର୍ଥକଷ୍ଟ ବିଦ୍ୟାରୂପ ଅମୂଲ୍ୟଧନରୁ କଞ୍ଚନ୍ନାଜ ଲବ୍ଧ ହେଲେ, ମନୁଷ୍ୟର ଚତୁର୍ବର୍ଗ ପ୍ରାପ୍ତି ଏକାବେଳକେ ସ୍ୱତଃସିଦ୍ଧ । କେବଳ ବାକି ରହିବ ପଞ୍ଚମ-ପୁରୁଷାର୍ଥ ପ୍ରେମ । ସେଇଟା ତ ନିତ୍ୟସିଦ୍ଧ, ତାହାପାଇଁ ପୁଣି ସାଧନାର ପ୍ରୟୋଜନ କଅଣ ? ସେତ ସ୍ୱତଃସ୍ଫୂର୍ତ୍ତି ହୃଦୟବୃତ୍ତି ମାତ୍ର । ବେଳ କାଳ ଉଣ୍ଡି ତାହାର ଉନ୍ମେଷ ଅନିବାର୍ଯ୍ୟ । ଏହି ଅବାଧ ମିଳାମିଶାର ଯୁଗରେ ସେଥିପାଇଁ ଉର୍ବର କ୍ଷେତ୍ରର ମଧ୍ୟ ଅଭାବ ନାହିଁ ।

ଆମ ଦେଶର ଏତାଦୃଶୀ ପରସ୍ମୈପଦୀ ଶିକ୍ଷାପ୍ରଣାଳୀ ସଙ୍ଗରେ ପାଶ୍ଚାତ୍ୟ-ଦେଶର ତାଦୃଶୀ ଅସ୍ୱନେପଦୀ ପଦ୍ଧତିର ପାର୍ଥକ୍ୟ ପ୍ରତି କାହାରି କୃପା-କଟାକ୍ଷ ପଡ଼ ନାହିଁ । ସେ ଦେଶର ଶିକ୍ଷକ ଶିକ୍ଷୟିତ୍ରୀ ତଥା ସମୃଦ୍ଧ ଶିକ୍ଷାକ୍ଷେତ୍ର ଛାତ୍ରଛାତ୍ରୀମାନଙ୍କର ସମୂହ ବୋଝତକ ଆପଣା ଆପଣା ଶିରରେ ବହନ-କ୍ଷମ ଥିବା ସ୍ଥଳରେ ଆମ ଦେଶର ଶିକ୍ଷକ ଶିକ୍ଷୟିତ୍ରୀମାନେ ସବୁ ବୋଝତକ ଆପଣା ଶିରରୁ ଉତ୍ତାରି ପରଉପରେ ଲଦି ଦେଇ ଅଛନ୍ତି; ତାହାର ଫଳ ମଧ୍ୟ ତଦନୁରୂପ ହେବାର କଥା ।

ପ୍ରାଚୀନ ଉତ୍କଳରେ ନିରକ୍ଷର ଜନତାର ଜ୍ଞାନଚକ୍ଷୁର ଉନ୍ମେଷ ସଙ୍ଗେ ସଙ୍ଗେ ତାହାର ନୀରସ କର୍କଶ କର୍ମପିଷ୍ଟ ଦୁର୍ବହ ଜୀବନକୁ ଟିକିଏ ହେଲେ ସରସ ଓ ଉର୍ବର କରିବାର ପ୍ରକୃତ ଚେଷ୍ଟା ହେଉଥିବାର ଭୂରି ଭୂରି ପ୍ରମାଣ ମିଳେ । କେତେଗୁଡ଼ିଏ ସଦନୁଷ୍ଠାନ କେବଳ ଜନସାଧାରଣର ହୃଦୟ ଓ ମନର ଉତ୍କର୍ଷକୁ ଲକ୍ଷ୍ୟ କରି ପ୍ରତିଷ୍ଠିତ ହୋଇଥିବାର

ଜଣାଯାଏ । ଆଜି ଭାରତର ପ୍ରତ୍ୟେକ ଅଞ୍ଚଳରେ ଏବମ୍ବିଧ ସଦନୁଷ୍ଠାନ-ମାନଙ୍କ ପଦଚିହ୍ନ ଅଦ୍ୟାପି ଦେଖିବାକୁ ମିଳେ । ପାଶ୍ଚାତ୍ୟ ପ୍ରେମ-ବନ୍ୟାର ଭୀଷଣ ଆବର୍ତ୍ତସଙ୍କୁଳ ପ୍ରବାହରେ ମଧ୍ୟ ସେଗୁଡ଼ିକର ସମ୍ପୂର୍ଣ୍ଣ ଲୋପ ହୋଇ ନାହିଁ । ପ୍ରାଚୀନପନ୍ଥୀ ସଙ୍ଗୀତଚର୍ଚ୍ଚାର ନିଦର୍ଶନସ୍ୱରୂପ ଉତ୍କଳର ସୁପ୍ରସିଦ୍ଧ "ଗୋଟିପ" ନୃତ୍ୟ ଏବଂ "ଛଉ" ନୃତ୍ୟର ପୁରାଣ ମହିମା ଆଜି ମଳିନ ପଡ଼ିଅଛି । ହାବ ଭାବ, କଟାକ୍ଷ, ଅଙ୍ଗଭଙ୍ଗୀର ମନୋହର ସମାବେଶଦ୍ୱାରା ସଙ୍ଗୀତର ସୌନ୍ଦର୍ଯ୍ୟ ମାଧୁର୍ଯ୍ୟକୁ ସୁନ୍ଦରରୂପେ ପରିବେଷନ କରି ଓ ନୃତ୍ୟକଳା, ସଙ୍ଗୀତକଳା ଏବଂ ଅଭିନୟକଳାର ସୁନ୍ଦରସମନ୍ୱୟସାଧନପୂର୍ବକ ଗୋଟିପନୃତ୍ୟ ଏକ ସମୟରେ ଖୁବ୍ ଜନପ୍ରିୟ ଥିଲା । ଓଡ଼ିଶାର ଛାନ୍ଦବନ୍ଦୀ ସଙ୍ଗୀତର ପଟାନ୍ତର ଭାରତର ଅନ୍ୟତ୍ର ନାହିଁ । ଯେଉଁ ସବୁ ଯୁଗରେ ଉତ୍କଳର ପ୍ରାଚୀନ କବିମାନେ କାବ୍ୟରସ-ପରିବେଷଣ କରି ନୃତ୍ୟଗୀତ ଓ କାବ୍ୟକଳାର ତ୍ରିବେଣୀ-ସଙ୍ଗମର ସୃଷ୍ଟି କରୁଥିଲେ ତାହା ଉତ୍କଳର ଉତ୍କୃଷ୍ଟ କଳାକୃଷ୍ଟିର ଅଭ୍ରାନ୍ତ ପରିଚୟ ପ୍ରଦାନ କରୁଥିଲା । ଶ୍ରୀ ଶ୍ରୀ ବ୍ରଜମଣ୍ଡଳର ଶ୍ରୀ ରାସଲୀଳାର କଳା ସୌଷ୍ଠବ ଅନେକଟା ଏହି ଶ୍ରେଣୀର ଥିଲା । ସେଠାରେ ମଧ୍ୟ ଆଧୁନିକତାର ସହସ୍ର ଧକ୍କା ବାଜିବାରୁ ତାହାର ପୂର୍ବ ଗୌରବ ଆଉ ନାହିଁ । ଆମ୍ଭମାନଙ୍କର ରୁଚିବିପର୍ଯ୍ୟୟର ମାରାତ୍ମକ ନିଦର୍ଶନରୂପେ 'ଗୋଟିପ ନୃତ୍ୟ'ଟି ଅତି ଅବହେଳିତ ଏବଂ ଶ୍ରୀହୀନ ହୋଇ ପଡ଼ିଛି ଏବଂ ଶ୍ରୀ ବ୍ରଜମଣ୍ଡଳର ରାସମଣ୍ଡଳୀ ଗୁଡ଼ିକର ଦଶା ଖୁବ ଆଶାପ୍ରଦ ନୁହେଁ । ମୁଁ ନିଜ ଜୀବନରେ ଅନୁଭବ କରିଛି, ସଙ୍ଗୀତକଳା ସଙ୍ଗରେ ନୃତ୍ୟକଳା ଏବଂ ଅଭିନୟକଳାର ମଧୁର ସମନ୍ୱୟଦ୍ୱାରା ମନୁଷ୍ୟହୃଦୟ ଉପରେ କିପରି ଅଦ୍ଭୁତ ପ୍ରଭାବ ବିସ୍ତାର କରାଯାଇ ପାରେ । ଏପରି କି ଏହି ପୂତିଗନ୍ଧମୟ ପଞ୍ଚଭୂତଦ୍ୱାରା ଗଠିତ ରକ୍ତମାଂସର ଶରୀର ଉପରେ ମଧ୍ୟ ସେ ଦୁର୍ନିବାର ପ୍ରଭାବର ସୂଚନା ଦେଖିବାକୁ ମିଳେ । ପ୍ରତ୍ୟେକ ଶିରା ପ୍ରଶିରା ଓ ସ୍ନାୟୁମଣ୍ଡଳୀରେ ତାହାର କ୍ରିୟା ଜଣା ପଡ଼ିଯାଏ । ଯୋଗ-ଶାସ୍ତ୍ରର କୁଣ୍ଡଳିନୀ ଶକ୍ତି ଜାଗରଣର କଥାଟା କପୋଳକଳ୍ପିତ ବା

କଷ୍ଟକଳ୍ପନା ବୋଲି ଅବିଶ୍ୱାସ ହୁଏ ନା । ଅସ୍ମମାନଙ୍କର ପରମାରାଧ୍ୟ ପ୍ରଭୁପାଦ ୰ ଶ୍ରୀ ମୋହନସୁନ୍ଦର ଦେବ ଗୋସ୍ୱାମୀ ମହୋଦୟ ଉକ୍ତ ବ୍ରଜମଣ୍ଡଳସୁଲଭ ରାସଲୀଳାର ଅନୁବର୍ତ୍ତନ କରି କଳାର ଉଲାର୍ମ ପୂର୍ଣ୍ଣ୍ୟର ପରିଚୟ ଦେଇଥିଲେ । ଏହି ରାଜନୀତିପ୍ରଧାନ ବାତାବରଣକୁ ବରଣ କରି ତାହାର ପୁନରାବର୍ତ୍ତନ ଅସମ୍ଭବ ହୋଇ ପଡ଼ିଅଛି ।

ଉତ୍କଳର ସୁପ୍ରତିଷ୍ଠିତ ଅଉ ଗୋଟିଏ ବିଶିଷ୍ଟ ଅନୁଷ୍ଠାନଟି ଯିଏକି ପର ନ ଯଶସ୍ୱୀ ନ ତେଜସ୍ୱୀ ହୋଇ କେବଳ ମାତ୍ର ଛପି ରହିଛି । ତାହାର କଳାକୃଷ୍ଟିର ସୃଷ୍ଟି ପ୍ରତି କାହାରି ଦୃଷ୍ଟି ନାହିଁ । ସେ ହେଉଛି ଅସ୍ମମାନଙ୍କର ସ୍ୱନାମଧନ୍ୟ ପାଲା ଗାୟକମାନଙ୍କର କଳାକୁଞ୍ଜ । ସେମାନେ ଏକାଧାରରେ ପୁରାଣପଣ୍ଡା, ଆଶୁକବି, କାବ୍ୟାଚାର୍ଯ୍ୟ, ମହାମହୋପାଧ୍ୟାୟ ପଣ୍ଡିତଶିରୋମଣି, ନୃତ୍ୟ, ଗୀତ ଓ ଅଭିନୟକଳାନିପୁଣ ସୁଦକ୍ଷ ବିଜ୍ଞାଣୀ । ସେମାନେ ନିରକ୍ଷର ଜନତାର କି ପ୍ରକୃତ କଲ୍ୟାଣସାଧନ-ବ୍ରତରେ ନିଯୁକ୍ତ ହୋଇ ଯୁଗଯୁଗାନ୍ତର ଧରି ସେମାନଙ୍କ ସେବାରେ ଜୀବନ ଉତ୍ସର୍ଗ କରୁଅଛନ୍ତି, ଟିକିଏ ଧୀରସ୍ଥିରଚିତ୍ତରେ ବିଚାର କରି ଦେଖିବା ଉଚିତ । କାରଣ ସେମାନେ ପାରିଶ୍ରମିକ ବା ପାରିତୋଷିକ ରୂପେ ଯାହା କିଛି ପାଆନ୍ତି ସେହି କୃଷ୍ଟାଲ୍ପିଷ୍ଟ ବଦାନ୍ୟତାର ବିନିମୟରେ ସେମାନଙ୍କ ଦାନର ମୂଲ୍ୟ ଅବଧାରଣ କରିବା ବାତୁଳତା ମାତ୍ର । ବେଦ, ପୁରାଣ, ସାହିତ୍ୟ, କାବ୍ୟ, ଅଳଙ୍କାରାଦି ବିବିଧ ଶାସ୍ତ୍ରସମୁଦ୍ର ମନ୍ଥନପୂର୍ବକ ମୋହିନୀ ମୂର୍ତ୍ତି ଧାରଣ କରି ଅମୃତରସାବଳୀ ପରିବେଶନ ଦ୍ୱାରା ଏହିମାନେହିଁ ଜନତାର ମୁମୂର୍ଷୁ ପ୍ରାଣରେ ମୃତସଞ୍ଜୀବନୀଧାରା ପ୍ରବାହିତ କରିଅଛନ୍ତି । ଏମାନେହିଁ ଉତ୍କଳର ବାଣୀପୀଠର ପଟ୍ଟ-ପୁରୋହିତରୂପେ ଜନସାଧାରଣର ଅଭିନନ୍ଦନ ପାଇ ଆସୁଛନ୍ତି । ଏପରି ସହସ୍ରମୁଖୀ ଅମୃତ-ନିର୍ଝରିଣୀର ସନ୍ଧାନ ଅନ୍ୟତ୍ର ବିଡ଼ମ୍ବନା ମାତ୍ର । ବଙ୍ଗଦେଶର ତଥାକଥିତ 'କବିର ଗାନ' ଅବିକଳ ଏପରି ନୁହେ । ଉପେନ୍ଦ୍ର, ଦୀନକୃଷ୍ଣ ପ୍ରଭୃତିଙ୍କ ଧାତ୍ରୀରୂପିଣୀ ଉତ୍କଳଜନନୀଙ୍କ ପବିତ୍ର କୋଳରେ ଏବଂ ମା ସାରଳାଙ୍କ ଅନୁକମ୍ପାରେ ଯାହା ସମ୍ଭବ, ତାହା

ଅନ୍ୟତ୍ର କିପରି ସମ୍ଭବ ହେବ ? ଏହିମାନଙ୍କର ପରିବେଶନ-ସୌନ୍ଦର୍ଯ୍ୟରୁ ହିଁ ଉପେନ୍ଦ୍ରପ୍ରତିଭାର ଉଜ୍ଜ୍ୱଳ କିରଣ ଦିନେ ଦେଶମୟ ବ୍ୟାପି ଯାଇଥିଲା । ପରବର୍ତ୍ତୀ ଯୁଗରେ ସହସ୍ର ସହସ୍ର କବିଜ୍ୟୋତିରିଙ୍ଗଣ-ମାନେ ଯେଉଁ ଅନଳ୍ପବିସ୍ତାରପୂର୍ବକ ଗାୟକ ବା ଗାୟକଙ୍କ ପୃଷ୍ଠପୋଷକରୂପେ ଉତ୍କଳର ଜନସାଧାରଣଙ୍କ ଅଜ୍ଞାନାନ୍ଧକାର ଦୂର କରିବାର ଚେଷ୍ଟା କରି ଆସୁଅଛନ୍ତି ସେମାନେ ନାନା ଭାବରେ ଉପେନ୍ଦ୍ର-କାବ୍ୟକୁଞ୍ଜ ପାଖରେ ଚିରଋଣୀ ଅଛନ୍ତି । ଏହା ଯେ ଉତ୍କଳ ବାଣୀପୀଠର ଗୋଟିଏ ବିଶିଷ୍ଟ ଅବଦାନ ଓ ଅନୁଷ୍ଠାନଭାବରେ ଦେଶର ପ୍ରଭୂତ ମଙ୍ଗଳ ସାଧନ କରେ, ତାହା ଭୁଲିଗଲେ ଘୋର ଅବିମୃଷ୍ୟକାରିତା ହେବ । ମୁଁ ଅନ୍ୟୂନ ପଚାଶ ବର୍ଷତଳେ ଲବ୍ଧପ୍ରତିଷ୍ଠ ଗାୟକ ଶ୍ରୀ ଗୋପୀନାଥ ଯୋଗୀଙ୍କ ମୁହଁରୁ 'ପ୍ରାଣସଙ୍ଗିନୀ ରେ ନେହାନନ୍ଦ ପସର' ଗୀତଟି ଶୁଣିଥିଲି । ସେମାନେ ସହୋଦରଦ୍ୱୟ ଏକରକମ ସମବୟଃ, ସମାକୃତି, ସମବର୍ଣ୍ଣ ଓ ସମକଣ୍ଠ ଥିବାରୁ ସେମାନେ ମିଳି ସଙ୍ଗୀତର ରସଟିକୁ କିପରି ମୂର୍ତ୍ତିମାନ୍ କରିଥିଲେ, ତାହା ମୋର ଏ ଜନ୍ମରେ ଭୁଲିବା ଅସମ୍ଭବ । ନିରକ୍ଷର ଗାୟକ ୮ ସମ୍ପଣ୍ଡା ଅଣୁକଣ ଥିଲେ : ଏବଂ ରସପରିବେଷଣରେ ଭାରି ନିପୁଣ ଥିଲେ । ତାଙ୍କର ସ୍ୱରଚିତ ମହିଷାସୁର ପାଲାର ଅଭିନୟ ଥରେ ଯେ ଆସ୍ୱାଦନ କରିଛି, ସେ ତାହା ଜନ୍ମଜନ୍ମାନ୍ତରରେ ଭୁଲିବ କି ନା ସନ୍ଦେହ । ଜଣେ ନିରକ୍ଷର ଗାୟକ ମା ସାରଳାଙ୍କ କୃପାରୁ ଅନବଦ୍ୟ ପଦ୍ୟ ଯୋଜନାଦ୍ୱାରା ଅନର୍ଗଳ ରସବୃଷ୍ଟି କରୁଥିବାର ଦେଖି ମୁଁ ଅବାକ୍ ହୋଇଗଲି । ଶ୍ରୋତୃମଣ୍ଡଳୀ ତଦର୍ପିତ ପ୍ରାୟ ଶୁଣି ଅସ୍ଥିର ।

ଜାତୀୟତା ଅଭାବରୁ ଅସ୍ପୃହା-ଜ୍ୱରର ପ୍ରସାର ଏପରି ବଢ଼ି ଯାଇଛି ଯେ ବୃଦ୍ଧପର୍ଯ୍ୟନ୍ତୁ ଆମ୍ଭମାନଙ୍କର ପ୍ରାଚୀନ ସଦନୁଷ୍ଠାନଗୁଡ଼ିକ ଅନ୍ତଃସାରଶୂନ୍ୟ ହୋଇ ପଡ଼ିଲାଣି । ଆମ୍ଭମାନଙ୍କର ପ୍ରାଚୀନପନ୍ଥୀ ଯାତ୍ରା ଦଳଗୁଡ଼ିକର ଦଶା ଭାରି ଶୋଚନୀୟ ହୋଇ ଯାଇଛି । ନା ଅଛି ସେମାନଙ୍କର ରସବୋଧ, ନା ଅଛି ସେମାନଙ୍କ ସୌନ୍ଦର୍ଯ୍ୟଜ୍ଞାନ, କି

କଳାନୁଭୂତ । ଲୋମହର୍ଷଣକାରୀ ଘଟଣାବହୁଳ ତର୍ଜନଗର୍ଜନ ଓ ଅଶ୍ଳୀଳତାହିଁ ଅଭିନୟର ଅଙ୍ଗୀଭୂତ ହୋଇ ପଡ଼ିଛି । ଯାତ୍ରାଦଳର ଅଭିନୟଦ୍ୱାରାହିଁ ପୁରାଣ, ଶାସ୍ତ୍ର, ଦର୍ଶନ ଓ କାବ୍ୟର ରସ ଦେଶର ଜନତାର ହୃଦୟଭୂମିକୁ ସ୍ପର୍ଶ କରି ତାକୁ ଉର୍ବର ଓ ସରସ କରୁଥିଲା । ଆଜି ହୃଦୟକୁ ସ୍ପର୍ଶ କରିବାଭଳି ରସସୃଷ୍ଟି ବା ରସପୁଷ୍ଟି କାହିଁ ନାହିଁ ସେମାନଙ୍କ ନୀରସ କର୍କଶ ବାଗାଡ଼ମ୍ବରରେ । ଏହାର ତୁଳନାରେ ବଙ୍ଗଦେଶର ଜାତୀୟ ବୈଶିଷ୍ଟ୍ୟରୂପୀ ରସକୀର୍ତ୍ତନର ସ୍ଥାନ ଉଚ୍ଚ ଅଛି । ଗୀତ, ମାଥୁର, ଗୋଷ୍ଠ, ଅଭିସାର ପ୍ରଭୃତି ଶ୍ରେଣୀବଦ୍ଧ ପାଲାଦ୍ୱାରା ସେମାନେ ବୈଷ୍ଣବ ପଦାବଳୀର ସୁଧାମଧୁର ରସ ପରିବେଷଣ କରି ଜନତାର ହୃଦୟକୁ ପ୍ରେମାନନ୍ଦଧାରାରେ ଅଭିଷିକ୍ତ କରି ଦିଅନ୍ତି । ଆମ ଦେଶର ଯାତ୍ରାଭିନୟରେ ସେପରି ରସପରିବେଷଣ ପୂର୍ବ ପରି ହୁଏ ନାହିଁ । ଜନସାଧାରଣର ଅଧୋଗାମୀ ବୃତ୍ତିଗୁଡ଼ିକ କ୍ରମେ କ୍ରମେ ଊର୍ଦ୍ଧ୍ୱଗାମୀ କରିବାର ଚେଷ୍ଟା ତ ଦୂରର କଥା, ବରଂ ସହସ୍ର ଅପଚେଷ୍ଟାଦ୍ୱାରା ସେଗୁଡ଼ିକ ଅଧିକତର ଅଧୋଗାମୀ କରି ସେଗୁଡ଼ିକର ଅଧଃପତନର ପଥକୁ ଅତିସୁଗମ କରି ଦିଆଯାଉଅଛି । ଏପରି ରୁଚିବିପର୍ଯ୍ୟୟରୂପ ପଙ୍କଗାଡ଼-ଗ୍ରସ୍ତ ସମାଜରେ କଳାକୃତିର ଉନ୍ମେଷ ସୁଦୂର ପରାହତ ଓ ତାହାର ଆଦର ଅଭ୍ୟର୍ଥନା ଏକାବେଳକେ ଅସମ୍ଭବ । ଜାତୀୟତା ଅଭାବରୁ ରୁଚିବିପର୍ଯ୍ୟୟର ଏହାଠାରୁ ବଳିଷ୍ଠ ନିଦର୍ଶନ କଣ ଥାଇ ପାରେ ?

ରୁଚିବିପର୍ଯ୍ୟୟହିଁ ଉଲ୍ଲିଖିତ ସଦନୁଷ୍ଠାନ ଗୁଡ଼ିକର ଅଧଃପତନର କାରଣ ବୋଲିଯାଇ ପାରେ । ଯାତ୍ରାଦଳ ଗୁଡ଼ିକର ପ୍ରାଥମିକ ଉଦ୍ଦେଶ୍ୟ କଅଣ—ଦେଶସେବା ନା ଅର୍ଥସେବା । ଏ କଥାଟି ବିଚାର କରି ଦେଖାଯାଉ । ସର୍ବପ୍ରଥମରେ ଏପରି ସଦନୁଷ୍ଠାନଗୁଡ଼ିକ ପ୍ରତିଷ୍ଠିତ ହୋଇ-ଥିଲା ଦେଶର ଜନତାର କଲ୍ୟାଣସାଧନ ଉଦ୍ଦେଶ୍ୟରେ । ସେମାନଙ୍କ ମାନସିକ, ନୈତିକ ଏବଂ ଆଧ୍ୟାତ୍ମିକ ଉନ୍ନତିକୁ ଲକ୍ଷ୍ୟ କରି ସେଗୁଡ଼ିକର ସୃଷ୍ଟି । ସୁତରାଂ ଏକପ୍ରକାର ସର୍ବବୋଧଗମ୍ୟ ପ୍ରଣାଳୀଦ୍ୱାରା ଜନତାର ଜନମନର ଉନ୍ମୀଳନ ସଙ୍ଗେ ସଙ୍ଗେ ତାହାର ହୃଦୟକୁ ମଧ୍ୟ ସରସ ଓ

ରଙ୍ଗ ଦେଖିବା ପାଇଁ ଗାୟକଦଳର ତଥା ଅଭିନେତୃମଣ୍ଡଳର ସୃଷ୍ଟି ହେଲା। ଏହାହିଁ ମୁଖ୍ୟ ଉଦ୍ଦେଶ୍ୟ। ସୁତରାଂ ଯେତେବେଳେ ଲୋକେ ତାକୁ ଜୀବିକାର୍ଜ୍ଜନର ଗୋଟିଏ ଗୋଟିଏ ପନ୍ଥାରୂପେ ଗ୍ରହଣ କଲେ ସେତେବେଳେ ଧନାର୍ଜ୍ଜନହିଁ ହେଲା ତାହାର ଅନ୍ୟ ଗୋଟିଏ ଆନୁଷଙ୍ଗିକ ଉଦ୍ଦେଶ୍ୟ ବା ଗୌଣ କାରଣ। କିନ୍ତୁ ଦୁର୍ଭିକ୍ଷପୂର୍ବ ସୂଚନା ମିଳିଲା ଯେତେବେଳେ ଗୌଣ କାରଣକୁ ମୁଖ୍ୟ କରି ମୁଖ୍ୟ କାରଣକୁ ଗୌଣ କରି ଦେଖାଗଲା ଏବଂ ପରିଶେଷରେ ଯାହା ମୁଖ୍ୟ ଥିଲା ସେବେ ତାକୁ କ୍ରମେ କ୍ରମେ ଭୁଲିଯିବାକୁ ବସିଲେ, ଅର୍ଥାତ୍ ଧନାଗମହିଁ ହେଲା ଏକମାତ୍ର ଉଦ୍ଦେଶ୍ୟ। ତେଣୁ ଯେନ ତେନ ପ୍ରକାରେଣ ଜନତା ମୁଣ୍ଡରେ ଚଟା କାଟି କିଛି ରୋଜଗାରର ଉପାୟ କରି ପାରିଲେ ଏକାବେଳକେ କାର୍ଯ୍ୟସିଦ୍ଧି। ଏପରି ସଙ୍କୀର୍ଣ୍ଣ ମନୋବୃତ୍ତିର ପ୍ରସାର ବୃଦ୍ଧି ସଙ୍ଗେ ସଙ୍ଗେ ଅଭିନେତୃଦଳର ଅଧଃପତନର ସୂତ୍ରପାତ ହେଲା। ଜନତା ପକ୍ଷରେ ରସାତଳଗାମୀ ହେଉ ଓ ତାହାର ମାନସିକ ତଥା ହୃଦୟବୃତ୍ତିର ଅନୁଶୀଳନ ହେଲେ କେତେ ନ ହେଲେ କେତେ, ବରଞ୍ଚ କଲେ ସେମାନଙ୍କ ଅଧୋଗାମୀ ମନୋବୃତ୍ତି ଉପରେ ପ୍ରଭାବ ବିସ୍ତାର କରି କିଛି ଅର୍ଜ୍ଜନର ଉପାୟ ସର୍ଜ୍ଜନା କରାଯାଇ ପାରେ, ତାହାହିଁ ହେଲା ବିଚାର୍ଯ୍ୟ। ତେଣୁ ବ୍ୟବସାୟର କ୍ରମେ କ୍ରମେ ମାତ୍ରା ଅତିକ୍ରମ କରିବାକୁ ଅଭିନୟଗୁଡ଼ିକ କ୍ରମେ ଜଘନ୍ୟ ଓ କଦର୍ଯ୍ୟ ହୋଇ ପଡ଼ିଲା। ସନ୍ନିପାତ ରୋଗୀ ଯେପରି ତୃଷ୍ଣାତିଶଯ୍ୟରୁ କେବଳ ଜଳ ପାଇଁ ବ୍ୟାକୁଳ ହେଉଥାଏ, ସେହିପରି ଅଶିକ୍ଷିତ ଜନତା ସ୍ୱାଭାବିକ ହୃଦୟଦୌର୍ବଲ୍ୟର ବଶବର୍ତ୍ତୀ ହୋଇ ଅଖାଦ୍ୟ, କୁଖାଦ୍ୟ, ମେଧ୍ୟ ଅମେଧ୍ୟ ଲୋଡ଼ନ୍ତି। ଜନପ୍ରିୟ ହେବା ଲାଳସାରେ ଚିକିତ୍ସକ ରୋଗୀର ଯଥେଷ୍ଟ ପାନୀୟର ସୁବନ୍ଦୋବସ୍ତ କରି ଯେପରି ତାକୁ ସର୍ବରୋଗର କବଳରୁ ଆଶୁମୁକ୍ତିଦାନର ବ୍ୟବସ୍ଥା କରେ ସେହିପରି ଅଭିନେତୃଦଳ ଜନତାର ଦୂଷିତମନୋବୃତ୍ତିର ଅନୁବର୍ତ୍ତନପୂର୍ବକ ତାହାର ମାନସିକ ଓ ଆଧ୍ୟାତ୍ମିକ ଅପଥ୍ୟର ବ୍ୟବସ୍ଥା କରି ତାହାର ସର୍ବନାଶର ପନ୍ଥା ଅତି ସୁଗମ କରିଦିଏ। କାରଣ ଯେନ ତେନ-

ପ୍ରକାରେଣ ଜନତାର ମନୋରଞ୍ଜନ କରି ନିଜର କୋଷବୃଦ୍ଧି କରିବାହିଁ ଯେତେବେଳେ ଏକମାତ୍ର ଉଦ୍ଦେଶ୍ୟ, ସେତେବେଳେ ଜନତାର ରୁଚିକୁ କ୍ରମେ କ୍ରମେ ମାର୍ଜିତ କରି ତାହାର ସର୍ବବିଧ ଉନ୍ନତିର ସହାୟତା କରିବା କଥା ସେମାନଙ୍କ ଧାରଣାକୁ ସ୍ପର୍ଶ କରେ ନାହିଁ । ତେଣୁ ଆମ୍ଭମାନଙ୍କର ଜାତୀୟତାବୋଧ ଅସ୍ତିବପ୍ରସୂତ ଏହି ସୁଚି-ବପର୍ଯ୍ୟୟରୁ ଦେଶସେବା ଉଦ୍ଦେଶ୍ୟରେ ପ୍ରତିଷ୍ଠିତ ସଦନୁଷ୍ଠାନଟି ଗୋଟିଏ ଅସ୍ୱସେବାର ଉପକରଣ ହୋଇ ପଡ଼ିଛି—ସେ ଟିଏ ଲୁଭଜନକ ଯୌଥ କାରବାର କହିଲେ ଚଳେ । ଏ ବ୍ୟବସାୟରେ ମଧ୍ୟ କଳାବଜାରର ସ୍ଥାନ ଅଛି । ପ୍ରତ୍ୟେକ ନାଟ୍ୟସଂଘରେ କେହି କେହି ବନ୍ଧା କବି ଥାଆନ୍ତି । ସେମାନେ ନାଟକ ଲେଖନ୍ତି, ପ୍ରହସନ ଲେଖନ୍ତି, ଗୀତ ମଧ୍ୟ ଲେଖନ୍ତି—ଯଦିଚ ତାଙ୍କର ଚୌଦପୁରୁଷ ଭିତରେ କେହି ହେଲେ ଭୁଲରେ କେବେ ଏପରି ଦୁଷ୍କର୍ମ ପୂର୍ବରେ କରି ନ ଥିବେ; କିନ୍ତୁ ମା ସାରଳାଙ୍କ ସଙ୍ଗରେ କୌଣସି ସମ୍ପର୍କ ନାହିଁ । କାରଣ ଏପରି ସ୍ୱାଧୀନତା ଯୁଗରେ ସୁବୁଣ୍ଡା-କାଳିଆ କବିଙ୍କ ପରି ମା ସାରଳାଙ୍କ ପରାଧୀନତା ସ୍ୱୀକାର କରିବାକୁ ସେମାନେ ନାରାଜ । ପୁଣି ନାଟ୍ୟକଳା ବା ଅଭିନୟକୁ ଜନପ୍ରିୟ କରିବାର ଯେତେ ପ୍ରକାରର ଅପେକ୍ଷା ଥାଇ ପାରେ, ତାହାର ଆବଶ୍ୟ ନଆସାଏ; ତାହା କଳାନୁମୋଦିତ ହେଉ ବା ନ ହେଉ, ଜନାନୁମୋଦିତ ହେଲେହିଁ ଯଥେଷ୍ଟ ହେଲା—କାରଣ ତାହାହେଲେହିଁ ତ ଉଦ୍ଦେଶ୍ୟ ସିଦ୍ଧି । ତେଣୁ ଅନୁଜ୍ଞାପତ୍ର (Permit) ଖଣ୍ଡେ ପାଇଁ ମା ସାରଳାଙ୍କ-ଠାରେ ଅଧା ପଡ଼ୁଛନ୍ତି କିଏ ? ସେଠା ତ ସେପରି ଅପରିହାର୍ଯ୍ୟ ନୁହେଁ ।

ଜନପ୍ରିୟ ନ ହେଲେ ଅଭିନୟର ସମସ୍ତ ଉଦ୍ଦେଶ୍ୟ ପଣ୍ଡ ହୋଇଯିବ, ଏହା ଧ୍ରୁବ ସତ୍ୟ । କିନ୍ତୁ ଜନରଞ୍ଜନର ପ୍ରଣାଳୀଟି କଳାନୁମୋଦିତ ନ ହେଲେ ମଧ୍ୟ ତାହାର ଫଳ ବିପରୀତ ହେବ । ଯେପରି, ଜଣେ "ଚଟୁଳ ଚଟୁପଟୁ" କପଟବେଶୀ ବନ୍ଧୁ ବନ୍ଧୁର ମନୋରଞ୍ଜନ କରି ନିଜର କୁଭିସନ୍ଧ ପ୍ରୟୋଗ ଦ୍ୱାରା ବନ୍ଧୁର ସର୍ବନାଶ କରି ଶୋଷଣକୌଶଳଦ୍ୱାରା ନିଜର ସ୍ୱାର୍ଥସିଦ୍ଧି କରି ନିଏ; କିନ୍ତୁ ସେ ପ୍ରକୃତ ବନ୍ଧୁ ସେ ମଧ୍ୟ ବନ୍ଧୁର

ମଙ୍ଗଳକାମନାରୁ ମୁଖ୍ୟ କରି ବନ୍ଧୁର ମନୋରଞ୍ଜନର ଚେଷ୍ଟା କରେ, କାରଣ ବନ୍ଧୁର ମନ ରଖି କଥା କହି ନ ଜାଣିଲେ ଉପଦେଶଦ୍ୱାରା ବନ୍ଧୁକୁ ସତ୍‌ପଥକୁ ଆଣିବେ କପରି ? ତେଣୁ ପ୍ରକୃତ ବନ୍ଧୁର ମନୋରଞ୍ଜନ ପ୍ରଣାଳୀଟି ବନ୍ଧୁର ମଙ୍ଗଳରେ ନିଯୁକ୍ତ ହେବାରୁ ଓ କପଟ ବନ୍ଧୁର ମନୋରଞ୍ଜନଟି ବନ୍ଧୁର ସର୍ବନାଶର ପଥ ସୁଗମ କରିଦେବାରୁ, ଉଭୟ ମଧ୍ୟରେ ସ୍ୱର୍ଗ ନରକର ପ୍ରଭେଦ ଦେଖାଯାଏ । ସେହିପରି ବିପର୍ଯ୍ୟସ୍ତ ରୁଚିଗ୍ରସ୍ତ ରୋଗୀର ସାନ୍ନିପାତିକ ଦଶା ଦୃଷ୍ଟିରେ ତାକୁ ମନରଖା ସେବନ ନ କରାଇ ରୋଗୀର ରୁଚିର ଅନୁବର୍ତ୍ତନ କରି ତାର ଔଷଧସେବନର ବ୍ୟବସ୍ଥା କଲେ, ଚିକିତ୍ସକ ରୋଗୀର ଖୁବ ମନୋରଞ୍ଜନ କରିବେ ନିଶ୍ଚୟ; କିନ୍ତୁ ତାହାର ରୁଚିବିପର୍ଯ୍ୟୟପ୍ରସୂତ ମୋହଭଞ୍ଜନ କରି ପାରିବେ କି ? ମୂର୍ଖ ରୋଗୀ ଅନ୍ତରେ ଅକାଳମୃତ୍ୟୁ ବରଣ କଲେ ତାହାର ମହାନିଦ୍ରା-ଭଞ୍ଜନ ତ ଏକାବେଳକେ ଅସମ୍ଭବ । ତେଣୁ କଳାନୁମୋଦିତ ନ ହେଲେ ମନୋରଞ୍ଜନଟା ସ୍ୱୟଂ ମାରାତ୍ମକ ହୋଇପଡ଼େ । କଳାହିଁ ସୌନ୍ଦର୍ଯ୍ୟର ଉପାସନା; ସୁତରାଂ ସତ୍ୟଶିବକୁ ସୁନ୍ଦର କରି ଉପସ୍ଥାପିତ କରେ ବୋଲି କଳାହିଁ ଜନରଞ୍ଜନର ପ୍ରକୃଷ୍ଟ ପନ୍ଥା । ସୁତରାଂ ନୃତ୍ୟକଳା ସଙ୍ଗୀତକଳା ଓ କାବ୍ୟକଳାର ମନୋହର ତ୍ରିବେଣୀସଙ୍ଗମରୂପୀ ନାଟ୍ୟାଭିନୟଦ୍ୱାରା ଜନରଞ୍ଜନ ନ ହେଲେ, ଆଉ ହେବ କାହିଁରେ । କିନ୍ତୁ ଜନରଞ୍ଜନର ବ୍ୟପଦେଶରେ କଳେ ବଳେ କୌଶଳେ ଜନତାର ମେରୁଦଣ୍ଡଭଞ୍ଜନର ବ୍ୟବସ୍ଥା କରି ଅଳ୍ପେ ଅଳ୍ପେ ତାହାର ହୃତ୍‌ପିଣ୍ଡର ରକ୍ତଟିକ ଶୋଷଣପୂର୍ବକ ରୁଧିରରଞ୍ଜିତ ହୋଇ ଜନସାଧାରଣର ନୟନରେ ପ୍ରେମାଞ୍ଜନ ବୋଳିଦେବାହିଁ ହେଲା ଯୁଗଧର୍ମ । ମୁଁ ଏଠାରେ ସାଧାରଣ ଯାତ୍ରାଦଳର ଅଧଃପତନର କଥା କହିଲି । କିନ୍ତୁ କଳିକାର ପ୍ରାତଃସ୍ମରଣୀୟ ଭକ୍ତମାତାଙ୍କ ରଚିତ କୃଷ୍ଣଲୀଳା ଗୀତାଭିନୟର ଅତି ମନୋରମ ଅଭିନୟ ଯେ ଦେଖିଛି ସେ ମୁକ୍ତକଣ୍ଠରେ ସ୍ୱୀକାର କରିବ ଯେ ସଙ୍ଗୀତର ମାଧୁର୍ଯ୍ୟ ସଙ୍ଗରେ କାବ୍ୟକଳାର ସୌନ୍ଦର୍ଯ୍ୟ ମିଶିଲେ ଅଭିନୟ ଜନପ୍ରିୟ ହୋଇ ଏ ଯୁଗରେ ମଧ୍ୟ ଲଳିତକଳାର ଶୀର୍ଷସ୍ଥାନ ଅଧିକାର କରି ପାରେ ।

ଅର୍ଥାଗମକୁ ମୁଖ୍ୟ କରି ଦେଶ ପ୍ରତି ନଜର ରଖିବାକୁ ଗୌଣ କରି ଦେଖିବାଟା ଆମ୍ଭମାନଙ୍କ ବୁଦ୍ଧିବିପର୍ଯ୍ୟୟର ନାମାନ୍ତର ମାତ୍ର। ଥରେ ମୋର ଚିକିତ୍ସକବନ୍ଧୁଙ୍କୁ ପଚାରିଲି, 'କିପରି ଚାଲିଛି'? ସେ କହିଲେ, "ଭଲ ନୁହେଁ ଭାଇ"। ମୁଁ କହିଲି "ଶୁଣି, ବଡ଼ ଖୁସି ହେଲି"। ସେ ଚମକି ପଡ଼ି କହିଲେ (କାରଣ ସେ ମୋଠାରୁ ପ୍ରତ୍ୟାଶିତ ଓ ସହାନୁଭୂତିଟିକ ନ ପାଇ କ୍ଷୁଣ୍ଣ ହେଲେ) "କାହିଁକି ଖୁସି ହେଲ ?" ମୁଁ କହିଲି—"ତୁମର ବ୍ୟବସାୟ ଭଲ ଚାଲୁ ନାହିଁ ଶୁଣି ଖୁସୀ ହେବାର ତ ଯଥେଷ୍ଟ କାରଣ ଅଛି। ତୁମର ବ୍ୟବସାୟ ଭଲ ନ ଚାଲିବା ମାନେ ଦେଶରେ ରୋଗ ବ୍ୟାଧିର ପ୍ରାଦୁର୍ଭାବ କମ୍। ସେଥିରେ ତୁମ ଛଡ଼ା କିଏ ଖୁସି ନ ହେବ। ବସନ୍ତ ଓ ମ୍ୟାଲେରିଆ ପ୍ରଭୃତି କୌଣସି ମାରାତ୍ମକ ରୋଗର ପ୍ରାଦୁର୍ଭାବ ହେଲେ ତୁମର ସୁଖର ସୀମା ରହନ୍ତା ନାହିଁ। ତେଣୁ ଅନୁମାନ କରୁଛି, ତୁମେ ସବୁବେଳେ ବସି ଦେଶର ଅମଙ୍ଗଳ କାମନାରେ ତ୍ରିନାଥମେଳା ମାନସିକ କରୁଥିବ।" ଚିକିତ୍ସକବନ୍ଧୁଟି ଭାରି ଅପ୍ରତିଭ ହୋଇ ପଡ଼ିଥିଲେ; ବେଶୀ କିଛି କହି ପାରିଲେ ନାହିଁ। ଅବଶ୍ୟ ମୋର ବିଶ୍ୱାସ, କୌଣସି ଚିକିତ୍ସକ ଜ୍ଞାତସାରରେ ଦେଶର ଏପରି ଅମଙ୍ଗଳ କାମନା କରୁ ନ ଥିବେ; କାରଣ ଡାକ୍ତରମାନେ ତ ପୁଣି ମନୁଷ୍ୟ। ସେହିପରି ଓକିଲମାନେ ମଧ୍ୟ ଅଧିକରଣ ପୀଠରେ ବସି ଦେଶରେ ମାଲିମକଦ୍ଦମା ବଢ଼ୁ ବୋଲି କ'ଣ ମନେ ମନେ କାମନା କରନ୍ତି ? ବୋଧହୁଏ କରନ୍ତି ନାହିଁ, କାରଣ କାମନା କରନ୍ତୁ ବା ନ କରନ୍ତୁ, ଦେଶରେ ରୋଗ ବ୍ୟାଧି ଯେପରି ପ୍ରବଳ ବେଗରେ ବଢ଼ିଚାଲିଛି, ମାଲିମକଦ୍ଦମା ମଧ୍ୟ ସେହିପରି ବଢ଼ି ଚାଲିଛି। ତେଣୁ ସେମାନଙ୍କୁ ଦେଶର ଅମଙ୍ଗଳକାମନା କରିବାକୁ ଦରକାର ପଡ଼େ ନାହିଁ। ତାହା ନ ହେଲେ ଉଦରପୋଷଣର ଦୋହାଇ ଦେଇ ସେମାନେ (ଅର୍ଥାତ୍ ଡାକ୍ତରମାନେ ରୋଗବୃଦ୍ଧିର ଓ ଓକିଲମାନେ କଳହବୃଦ୍ଧିର ଉପାୟ ସୃଷ୍ଟି କରି) ଦେଶର ଅମଙ୍ଗଳକାମନା କଲେ କରି ପାରନ୍ତେ। କିନ୍ତୁ ଶୁଣାଯାଏ, ପୂର୍ବକାଳରେ ସରକାର ତରଫରୁ ଚିକିତ୍ସକ ( ବୋଧହୁଏ ବ୍ୟବହାରଜୀବ ମଧ୍ୟ ) ନିଯୁକ୍ତ ହୋଇ ଦେଶର ସେବାରେ ଲାଗୁଥିଲେ।

ସେମାନେ ରୋଗୀଙ୍କଠାରୁ କିଛି ପାରିତୋଷିକ ପାଉ ନ ଥିଲେ; ସୁତରାଂ ରୋଗବୃଦ୍ଧିରେ ସେମାନଙ୍କ ପରିଶ୍ରମବୃଦ୍ଧି ଅବଶ୍ୟମ୍ଭାବୀ ଜାଣି ଦେଶର ସାଧାରଣ ସ୍ୱାସ୍ଥ୍ୟବୃଦ୍ଧି ପାଇଁ ତଥା ଜନସାଧାରଣଙ୍କ ହିତ ପାଇଁ ରୋଗ ପ୍ରତିଷେଧକ ନାନା ଉପାୟ କରୁଥିଲେ । ସୁତରାଂ ସେମାନେ ସର୍ବଦା ଦେଶର ମଙ୍ଗଳକାମନା କରିବାକୁ ବାଧ ହୋଇ ପଡ଼ୁଥିଲେ । ମୁଁ ଥରେ ଗୋଟିଏ ଚିକିତ୍ସକଙ୍କ ସାଧୁତା ପ୍ରତି ଖୁବ୍ ସନ୍ଦିହାନ ହେବାକୁ ବାଧ ହୋଇଥିଲି—ମୋର ମନେ ହେଲା, ତାଙ୍କର ବ୍ୟବସାୟଟି ଭଲ ଚଳୁ ନ ଥିବାରୁ ସେ ଗୋଟିଏ ରୋଗୀ ପାଇ ତାକୁ ମଣ୍ଡାମାଣିକ୍ୟ କରି ତାର ସଙ୍ଗମୁଖରୁ ସହଜରେ ଛାଡ଼ିବାକୁ ରାଜି ହୁଅନ୍ତି ନାହିଁ । ଅବଶ୍ୟ ତାଙ୍କର ପ୍ରେମପ୍ରାବଲ୍ୟରୁ ନୁହେଁ; ତାଙ୍କର ବ୍ୟବସାୟବୁଦ୍ଧିରେ ସେ ସେପରି କରନ୍ତି, ସେଥିରେ ଦୋଷଟା ଏକାବେଳକେ ତାଙ୍କର ନୁହେଁ । ଦେଶର ଅର୍ଥନୈତିକ ପରିସ୍ଥିତି ଏପରି ଜଟିଳ ହୋଇପଡ଼ୁଛି ଯେ ଆତ୍ମରକ୍ଷା କରିବା ମନୁଷ୍ୟ ପକ୍ଷରେ କଠିନ ହୋଇ ପଡ଼ୁଛି । ଶୋଷଣ ନ କଲେ ପୋଷଣ ଅସମ୍ଭବ ହୋଇପଡ଼ୁଛି । ଏଥିପାଇଁ ଦାୟୀ କିଏ ? ସମାଜ ନା ମୁଁ । ମନେ ରଖିବା ଉଚିତ୍, ଅର୍ଥହିଁ ଅନର୍ଥର ମୂଳ । ମୁଁ ଥରେ ଶୁଣିଲି, "ଜଣେ ଶିକ୍ଷକ କୁଆଡ଼େ ବିଦ୍ୟାଳୟରେ ଭଲ ପଢ଼ାନ୍ତି ନାହିଁ ଅର୍ଥାତ୍ ଜାଣି ଶୁଣି ସମସ୍ତ ବିଶଦଭାବରେ ପ୍ରାଞ୍ଜଳ କରି ବୁଝାଇ ଦିଅନ୍ତି ନାହିଁ—କାରଣ ପିଲାମାନେ ସବୁ ବୁଝିଗଲେ ଆଉ ଘରୋଇ ଭାବରେ ପଢ଼ିବାକୁ ତାଙ୍କ ପାଖକୁ ଆସିବେ ନାହିଁ ।" କଥାଟା ମୋର ମନକୁ ରୋଚିଲା ନାହିଁ; କାରଣ ଯେ ଶିକ୍ଷକ ବିଦ୍ୟାଳୟରେ ଭଲ ପଢ଼ାଏ ନାହିଁ ତାହା ପାଖକୁ ପିଲାଏ ଘରୋଇ ଭାବରେ ପଢ଼ିବାକୁ ଆସିବେ କାହିଁକି ? ଅବଶ୍ୟ ବିଶେଷ ଦାୟରେ ନ ପଡ଼ିଲେ । କଥାଟା ସତ୍ୟ ନ ହେଲେହେଁ ଏପରି ଦୋଷାରୋପର ସମ୍ଭାବନାଟାହିଁ ଗୋଟାଏ ନୈତିକ ବା ଆଧ୍ୟାତ୍ମିକ ଅନ୍ତରର ସୂଚନା ଦିଏ; ତେଣୁ ବେଳହୁଁ ପ୍ରତିଷେଧକ ଟୀକାର ବ୍ୟବସ୍ଥା ନ କଲେ ରୋଗଟି ଯାପ୍ୟଭାବରେ ରହି ଅପଚାର ପାଇଲେ ପ୍ରକଟ ହୋଇ ପଡ଼ି ପାରେ । ଏଥିରୁ ଦେଖାଯାଉଛି ବୃତ୍ତିବିପର୍ଯ୍ୟୟରୁ ଧନାଗମକୁ ମୁଖ୍ୟ କରି

କର୍ତ୍ତବ୍ୟକୁ ଗୌଣ କରି ସମସ୍ତେ ଲକ୍ଷ୍ୟଭ୍ରଷ୍ଟ ହେବାକୁ ବସିଲେଣି । ଦେଶ-ସେବାର ବ୍ୟପଦେଶରେ ଆତ୍ମସେବାର ଚେଷ୍ଟାହିଁ ସାର ହୋଇ ପଡ଼ୁଛି । ଏ ଦିଗରେ ରାଜସରକାରଙ୍କର କରିବାର ଅନେକ ଅଛି । ଏପରି ଦୁର୍ନୀତି-ବିପର୍ଯ୍ୟୟର ଗତିରୋଧ କରିବାହିଁ ସର୍ବାଦୌ ସମୀଚୀନ ହେବ । ଦୈନନ୍ଦିନ ଜୀବନର ପ୍ରତ୍ୟେକ ସ୍ତରରେ ଏହାର ବିଷମୟ ଫଳ ଦେଖିବାକୁ ମିଳୁଅଛି । ପ୍ରଗାଢ଼ ଜାତୀୟତାବୋଧର ଉନ୍ମେଷହିଁ ଏହାର ଏକମାତ୍ର ପରିପୋଷକ ଅଟେ । ସ୍ୱାଧୀନତା ଲକ୍ଷ୍ମୀଙ୍କର ଶୁଭ-ଗମନରେ ଆମ୍ଭମାନଙ୍କର ଦେଶାତ୍ମବୋଧର ଅଭିବ୍ୟକ୍ତି କ୍ଷୀଣ ପରିଲକ୍ଷିତ ହୋଇପଡ଼ୁଛି । ତେବେ ହତାଶ ହେବାର ଉଚିତ ନୁହେଁ । ଗୋପବନ୍ଧୁ, ସୁଭାଷଚନ୍ଦ୍ର ପ୍ରଭୃତି ତ୍ୟାଗବୀରଙ୍କ ଜନ୍ମଭୂମିରେ ଜନ୍ମଗ୍ରହଣ କରି ଆଶାବାଦୀ ହେବାହିଁ ସମୀଚୀନ । ମହାତ୍ମା, ମହାପୁରୁଷ, ମହାବୀର ଏବଂ ମହାପ୍ରଭୁଙ୍କର ପଦାଙ୍କିତ ଭୂମିରେ ଜନ୍ମଗ୍ରହଣ କରିବାଟା କସ୍ମିନ୍ କାଳେ ନିରର୍ଥକ ହୋଇ ନ ପାରେ । ତେଣୁ ଆଶାବାଦୀ ହୋଇ ଏବଂ ଅତୀତର ଗୌରବମୟ ସ୍ମୃତିକୁ ହୃଦୟରେ ଜାଗରୂକ ରଖି ଜାତିର ଜୀବନକୁ ପ୍ରଗାଢ଼ ଦେଶାତ୍ମବୋଧରେ ଅନୁପ୍ରାଣିତ କରିବାକୁ ହେବ । ସେ ଦିଗରେ ଦେଶବ୍ୟାପୀ ସମବେତ ଚେଷ୍ଟା ନ ହେବା ଯାଏ ପ୍ରାପ୍ତ ସ୍ୱାଧୀନତାର ପୂର୍ଣ୍ଣ ଆସ୍ୱାଦନ ସମ୍ଭବପର ହେବ ନାହିଁ ।

ପ୍ରକାଶଥାଉ କି ସ୍ଥଳବିଶେଷରେ ବ୍ୟକ୍ତିଗତ ଦୃଷ୍ଟି ପ୍ରତି ଦୃଷ୍ଟାନ୍ତ ଦର୍ଶାଇଥିଲି ପରି ମନେ ହେଲେହେଁ ମୁଁ କିନ୍ତୁ ବ୍ୟକ୍ତିବିଶେଷଙ୍କୁ ଲକ୍ଷ୍ୟ କରି କିଛି କହି ନାହିଁ । କାରଣ ବ୍ୟକ୍ତିଗତ କୁତ୍ସାରଟନାରେ ବା କଅଣ ଲାଭ ହେବ । ଦେଶାତ୍ମବୋଧ ଅଭାବରୁ ଆମ୍ଭମାନଙ୍କର କିପରି ଦୁର୍ନୀତିବିପର୍ଯ୍ୟୟ ହୋଇଅଛି ଓ ତଜ୍ଜନିତ ଦୃଷ୍ଟିକୋଣର ମଧ୍ୟ କି ପରିବର୍ତ୍ତନ ହୋଇଅଛି ତାହାର ଦୃଷ୍ଟାନ୍ତ ଦେବାକୁ ଯାଇ କାହାରି କାହାରି ବିଶିଷ୍ଟ ମତବାଦର ନିରପେକ୍ଷ ସମାଲୋଚନା ପର୍ଯ୍ୟବେକ୍ଷଣ କରିଅଛି ମାତ୍ର ।

ଶ୍ରୀ ଅନନ୍ତମସ୍ତୁ ଧର୍ମମସ୍ତୁ

---

# ପାଟିପ୍ପଣୀ

ପୃ ୧୪—ଧା ୯-୧୦—କବିମାନେ ସାଧାରଣତଃ ମାନବ ଚରିତ୍ରଚିତ୍ରଣକୁ ମୁଖ୍ୟ କରି ତଦାନୁଷଙ୍ଗିକ ପ୍ରାକୃତିକ ବର୍ଣ୍ଣନାକୁ ଗୌଣ କରନ୍ତି । ରାଧାନାଥ କବି ଓ୍ୱାର୍ଡ଼ସ୍‌ୱାର୍ଥଙ୍କ ପରି ପ୍ରାକୃତିକ ବର୍ଣ୍ଣନାକୁ ମୁଖ୍ୟ କରି ଅନେକ କବିତା ଲେଖିଛନ୍ତି । ଏତିକି ମୋର ବକ୍ତବ୍ୟ । ତାଙ୍କ ପୂର୍ବରୁ ପ୍ରାକୃତିକ ବର୍ଣ୍ଣନାକୁ ମୁଖ୍ୟ କରି କେହି ଲେଖିଥିବାର ଅନ୍ତତଃ ମୋତେ ଜଣା ନାହିଁ । (ଓଡ଼ିଆ ଭାଷାରେ) । ଚରିତ୍ରଚିତ୍ରଣର ପୋଷକରୂପେ ପ୍ରାକୃତିକ ବର୍ଣ୍ଣନାର କଥା ସ୍ୱତନ୍ତ୍ର ।

ପୃ ୧୯—ଧା ୩-୪—ଏଠାରେ ଦୀନକୃଷ୍ଣଙ୍କୁ ଉପେନ୍ଦ୍ର ଭଞ୍ଜଙ୍କ ପରବର୍ତ୍ତୀ ବୋଲି ଧାରଣା କରିବାର କୌଣସି କାରଣ ନାହିଁ । ପୋପଙ୍କର ପୂର୍ବବର୍ତ୍ତୀ ଡ୍ରାଇଡେନଙ୍କୁ ପୋପଙ୍କ କାବ୍ୟ-ମାର୍ଗର (classical school) କବି-ସମ୍ପ୍ରଦାୟରେ ପରିଗଣିତ କରାଯାଏ । ତାହାର କାରଣ, ପୋପୀୟ କାବ୍ୟମାର୍ଗର ବୈଶିଷ୍ଟ୍ୟର ବହୁତ୍ ସୂଚନା ଡ୍ରାଇଡେନଙ୍କ କାବ୍ୟକଳାରେ ମଧ୍ୟ ଅତି ସୁସ୍ପଷ୍ଟ ।

ଉପେନ୍ଦ୍ର ଶୈଳୀ—ଯମକବହୁଳ ଓ ଅଦରସାତ୍ମକ ଦୀନୁ ଅନୁପ୍ରାସ-ମଞ୍ଜୁଳ ହେଲେହେଁ ଲଳିତ ପଦ-ସଙ୍କୁଳ ଅଟେ ।

ପୃ ୨୮—୧ ଧା—ସେହିପରି ଭଞ୍ଜଙ୍କ ଅନୁପ୍ରାସପ୍ରଧାନ ପଂକ୍ତି ଯଥା :—
ରସିକ ହସ୍ତର କରେ ଦୀପଦାନ କାର୍ତ୍ତିକରେ ପ୍ରଦୀପେ
ସ୍ନାନ ମକରେ ଯେହୁ ନ କରେ" ଇତ୍ୟାଦି ଇତ୍ୟାଦି ।

ପୃ ୬୩—ଧା ୨୧—ରାଧାନାଥଙ୍କ ପୃଷ୍ଠପୋଷକ ଓ ଉପେନ୍ଦ୍ର ଭଞ୍ଜଙ୍କ ପୃଷ୍ଠ-
ପୋଷକଙ୍କ ମଧ୍ୟରେ ଯେଉଁ ବିରୋଧ ହୋଇଥିଲା,
ତାହା ଇନ୍ଦ୍ରଧନୁ ଓ ବିଜୁଳିରେ ପ୍ରକାଶିତ ହୋଇଥିଲା ।

ପୃ ୬୪—ଧା ୫-୧୩—ନୋବେଲ ପୁରସ୍କାରର ହିରଣ୍ମୟ ରଶ୍ମିସମ୍ପାତରେ
ରବୀନ୍ଦ୍ର କାବ୍ୟକଳାର ଅପକର୍ଷକୁ ମଧ୍ୟ ସେମାନେ
(ବିରୋଧୀ ଦଳର ହୋଇ ସୁଦ୍ଧା) ଉତ୍କର୍ଷ ବୋଲି
ଆସ୍ଫାଳନ କଲେ ଏବଂ ତାଙ୍କର ଉତ୍କର୍ଷମାନ ଉକ୍ତ
ରଞ୍ଜନକରଣରେ ସେମାନଙ୍କ ଚକ୍ଷୁକୁ ଛାୟା ଅତି-
ରଞ୍ଜିତ ବୋଧ ହେଲା ।

ପୃ ୭୨— ରାଣାପ୍ରତାପଙ୍କ ଅଟୋପ (ଗର୍ବ) ସେ ଦେଶମାତୃକା
ପୀଠରେ ପ୍ରାଣ ପର୍ଯ୍ୟନ୍ତ ବିସର୍ଜନ ଦେବେ ।

ପୃ ୭୭—ଧା ୧-୩—ପ୍ରେମପ୍ରାବଲ୍ୟରୁ ଯେଉଁ ଯେଉଁ ପ୍ରେମାନ୍ଧ କବିମାନେ
ନିଜ କାବ୍ୟକଳାର ଅଙ୍ଗସୌଷ୍ଠବ ପ୍ରତି ଦୃଷ୍ଟି ନ
ଦେଇ କଥିତ୍ ନବୀନତାର ଆମଦାନି କରି ସତେ
ଯେପରି ଗଣ୍ଡ ଛିଣ୍ଡାଇ ପରି ପ୍ରାଚୀନତାର ସମସ୍ତ ନିଗଡ଼-
ମାନ ଗଡ଼ଗଡ଼ କରିବାକୁ ବସି ଉଦ୍ଧାପ୍ନମାନ କବି
ବୋଲାଉଛନ୍ତି ।

ପୃ ୭୭—ଧା ୩-୯—(ରୁଷିଆର Karl Marxଙ୍କ ନିରୀଶ୍ୱରବାଦ) ଦାରୁ-
ବ୍ରହ୍ମରୂପୀ ସ୍ୱୟଂ ବୈକୁଣ୍ଠନାଥଙ୍କ ତଥା ଏକାମ୍ରକାନନସ୍ଥ
ନୀଳକଣ୍ଠଙ୍କ ଲୀଳାସ୍ଥଳୀର ଉପକଣ୍ଠମାନଙ୍କରେ ଏହି
ନବୀନ ନାସ୍ତିକବାଦର କୃଷ୍ଣାଗ୍ନି ପ୍ରଜ୍ୱଳିଲେ
ଉତ୍କଣ୍ଠିତ କାବ୍ୟକଣ୍ଠମାନେ ।

ପୃ ୭୮—ଧା ୨—ମହାକବିସୁଲଭ ପ୍ରତ୍ୟୁତ୍ପନ୍ନମତିତ୍ୱ ପ୍ରଭୃତି—
କାଳିଦାସଙ୍କର—
"ସ୍କନ୍ଧଂ ନ ବାଧତେ ରାଜନ୍ ଯଥା "ବାଧତି" ବାଧତେ ।"

ଯେପରି କାଳିଦାସ ରାଜାଙ୍କର ପରସ୍ମୈପଦୀ “ବାଧତି”କୁ ଆତ୍ମନେପଦୀ ‘ବାଧତେ’ରେ ପରିଣତ କରି ରାଜାଙ୍କ ହୃଦୟରଞ୍ଜନ କରିଥିଲେ, ଏହି ନାଟ୍ୟକାରମାନେ ସେହିପରି ପରସ୍ମୈପଦୀ ଦୃଶ୍ୟକାବ୍ୟ ରଚନାକୁ ଆତ୍ମନେପଦୀ କବିତାରେ ପରିଣତ କରି ଜନରଞ୍ଜନରେ ସିଦ୍ଧହସ୍ତ ହୋଇ ପଡ଼ିଛନ୍ତି ।

ପୃ ୭୯—ଧା ୩—“ବୈଦେହୀ ବିଳାସ” ନାମକ କାବ୍ୟଗ୍ରନ୍ଥ ପ୍ରଣୟିତା ଜନୈକ ସ୍କୁଲ ଶିକ୍ଷକ ବର୍ତ୍ତମାନ ପରଲୋକଗତ । ନାମକରଣ ପ୍ରଭୃତି ବହିରାବରଣରୁ ଉପେନ୍ଦ୍ରଶୈଳୀର କାବ୍ୟ ବୋଲି ମନେ ହେଲେହେଁ ଏହା ଯୁଗମାର୍ଗାନୁଲଭ ଭାଷା, ଭାବ ଓ ଛନ୍ଦର “ସମନ୍ୱୟରେ” ଖାସ୍ ଉପାଦେୟ କାବ୍ୟଗ୍ରନ୍ଥ ଅଟେ । ପ୍ରତିଭାଶାଳୀ କବିଙ୍କ କବିଦୃଷ୍ଟି ଖାସ୍ ସ୍ପଷ୍ଟ ।

ପୃ ୭୯—ଧା ୧୪—ଚନ୍ଦ୍ରୋଦ୍ଧାର ନାମକ କାବ୍ୟର କବି ଜନୈକ ଚିକିତ୍ସା-ବ୍ୟବସାୟୀ । ସ୍ୱର୍ଗତ କାନ୍ତକବି ପ୍ରମୁଖ ବହୁ ସାହିତ୍ୟିକଙ୍କଠାରୁ ଉଚ୍ଚପ୍ରଶଂସାପ୍ରାପ୍ତ କାବ୍ୟ ଗ୍ରନ୍ଥ । ବର୍ଣ୍ଣନାରେ ମୌଳିକତା ଅଛି ଓ କଳ୍ପନାବିଳାସରେ ବୈଚିତ୍ର୍ୟ ଅଛି ।

ପୃ ୨୦୬—ଧା ୨୨—କଥାମହାବୀରମାନେ—ଯେଉଁମାନଙ୍କ ବୀରତ୍ୱ କେବଳ କଥାରେ ( ବାକ୍‌ଶୂରତ୍ୱରେ ) ନ୍ୟସ୍ତ—କାର୍ଯ୍ୟରେ ନୁହେ । କଥାରେ କହନ୍ତି, “ମୁହିଁ ନରେନ୍ଦ୍ର, ପିଠି ମୋ ଅରକ୍ଷିତ”—‘ଚଯ୍ୟନ୍ତୀର’ “ବାଙ୍ଗ୍ମୟ ଲୁପେ” ଏବଂ ବଙ୍ଗଳାର “କଥାର ନବାବ” ।

ମହାରାଜା ଶ୍ରୀରାମଚନ୍ଦ୍ର ଉତ୍କଳ ସ୍କୁଲବୁକସଟ୍ ପ୍ରେସ, କଟକ—୧୦୦୦—୧୯୫୩

# ଶୁଦ୍ଧିପତ୍ର

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୬ — | ୬ | କଳା-ସୁନୈପୁଣ୍ୟ | କଳାନୈପୁଣ୍ୟ |
| ୧୩ — | ୨ | ଘଟଣାର ବଷୟମନ | ଘଟଣାମାନ |
| ୧୪ — | ୧୨ | ଭକ୍ତ | ଭକ୍ତମାନେ |
| ୧୫ — | ୨୫ | ଅଜ | ଅଜସ୍ର |
| ୪୯ — | ୬ | ପିତାମାତାଙ୍କ ଗୁରୁ | ପିତା (ହେଲେ) ମାତାଙ୍କ ଗୁରୁ |
| ୫୪ — | ୧୫ | ଉପଧା-ରୂପ | ଉପଧା-ମଣ୍ଡିତ |
| ୫୯ — | ୨୫ | ଶୋଭନୀୟ କ ନା ? | ଶୋଭନୀୟ କ ନା, |
| " — | ୨୭ | ଅନ୍ତେବାସୀମାନଙ୍କ ପକ୍ଷରେ | ଅନ୍ତେବାସୀମାନଙ୍କ ପକ୍ଷରେ ? |
| ୬୦ — | [illegible] | ମହାପ୍ରଭୁ ପ୍ରେମଧର୍ମ । ପ୍ରଶ୍ନର | ମହାପ୍ରଭୁ ପ୍ରେମଧର୍ମ-ପ୍ରଶ୍ନର |
| ୭୭ — | ୨୫ | ଗୌରବରେ ଭୈରବପତନ | ଗୌରବରେ ଭୈରବ ପତନ |
| ୮୧ — | ୧୪ | କଳାସବିଳାସ | କଳାବିଳାସ |
| ୮୫ — | ୧ | ରୂଢ଼ | ଗୂଢ଼ |
| ୮୭ — | ୧୮ | ସ୍ୱରୂପରେ | ସ୍ୱରୂପର |
| ୮୭ — | ୧ | ଭାବପ୍ରକାଶ ହେଦରେ | ଭାବ ପ୍ରକାଶ ଭେଦରେ |
| ୯୧ — | ୧୪ | (A man of letters) ପ୍ରସଙ୍ଗରେ | a man of letters. ଏ ପ୍ରସଙ୍ଗରେ |
| ୯୨ — | ୧ | ବାଣୀ-ବରପୁତ୍ର କବି-ଭକ୍ତଗାଥାଙ୍କ | ବାଣୀବରପୁତ୍ର କବି ଭକ୍ତଗାଥାଙ୍କ |

